| | |
|---|---|
| ଡାକ୍ତର ପ୍ରହ୍ଲାଦ ଚରଣ ସ୍ୱାଇଁ | ଡକ୍ଟର ଜୟନ୍ତ କୁମାର ଦାସ |
| ଶ୍ରୀ ଅରୁଣ କୁମାର ପଣ୍ଡା | ଶ୍ରୀ ମହେନ୍ଦ୍ର ନାଥ ପଟ୍ଟନାୟକ |
| ଶ୍ରୀ ଗୌରହରି ଖୁଣ୍ଟିଆ | ଡକ୍ଟର ରବୀନ୍ଦ୍ର ନାଥ ମିଶ୍ର |
| ଶ୍ରୀମତୀ ଉର୍ମିଳା କାନୁନ୍‌ଗୋ | ଶ୍ରୀ ଦେବସ୍ନାନ ଦାସ |
| ଅଧ୍ୟାପକ କୃଷ୍ଣ ଚରଣ ମହାନ୍ତି | ପ୍ରଫେସର ଡଃ ବାସୁଦେବ ସାହୁ |
| ଅଧ୍ୟାପିକା ଡଃ ସୁଲୋଚନା ଦାସ | ଶ୍ରୀ କିଶୋର ଚନ୍ଦ୍ର ମହାପାତ୍ର |
| ଶ୍ରୀମତୀ ଜ୍ୟୋସ୍ନା ପରିଜା | ଡକ୍ଟର ପ୍ରସନ୍ନ କୁମାର ସ୍ୱାଇଁ |
| ଶ୍ରୀ ଅଲେଖ ଚନ୍ଦ୍ର ମଲ୍ଲିକ | ଡାକ୍ତର ଉମାକାନ୍ତ ନନ୍ଦ |
| ଶ୍ରୀ ରମେଶ ଚନ୍ଦ୍ର ଜେନା | ଶ୍ରୀ ପୀତାମ୍ବର ମିଶ୍ର |
| ଶ୍ରୀ ରବୀନ୍ଦ୍ର ନାଥ ଦାସ | ଇଞ୍ଜିନିୟର କ୍ଷୀରୋଦ ଚନ୍ଦ୍ର ମହାପାତ୍ର |
| ଡଃ ନଟବର ଶତପଥୀ | ଡଃ ଅର୍ଚ୍ଚନା ନାୟକ |
| ଶ୍ରୀ ରଣଧୀର ଦାସ | ଶ୍ରୀ ତପନ କୁମାର ବେହେରା |
| ଡକ୍ଟର ରେଖା ମହାନ୍ତି | ଶ୍ରୀ ଗଣେଶ ପ୍ରସାଦ ପରିଜା |
| ଶ୍ରୀ ସଞ୍ଜୀବ ଚନ୍ଦ୍ର ହୋତା | ଶ୍ରୀ ରାହାସ ରାୟ |
| ଶ୍ରୀମତୀ ବୀଣା ମହାପାତ୍ର | ଶ୍ରୀ ଶିଶିର ଦାସ |
| ଶ୍ରୀ ରମାକାନ୍ତ ପ୍ରଧାନ | ଶ୍ରୀ ବସନ୍ତ କୁମାର ରାୟ |
| ଶ୍ରୀମତୀ ଅଗସ୍ତି କାନୁନ୍‌ଗୋ | ଶ୍ରୀ ନୀହାର ରଞ୍ଜନ ମହାପାତ୍ର |
| ଶ୍ରୀ ଅମରେଶ ପଟ୍ଟନାୟକ | ଡକ୍ଟର ନିତ୍ୟାନନ୍ଦ ନାୟକ |
| ଶ୍ରୀ ଅମିତାଭ ସ୍ୱାଇଁ | ଇଞ୍ଜିନିୟର ପ୍ରେମାନନ୍ଦ ବିଶୋୟୀ |
| ଶ୍ରୀମତୀ ସବିତା ପ୍ରଧାନ | ଶ୍ରୀ ରମେଶ ଚନ୍ଦ୍ର ମହାନ୍ତି |
| ଶ୍ରୀ ନିଶାକର ଦାଶ | ଡାକ୍ତର ରାଧାଶ୍ୟାମ ଜେନା |
| ଶ୍ରୀ ଗୋବିନ୍ଦ ଚରଣ ପାତ୍ର | ଡାକ୍ତର ବିଶ୍ୱଜିତ୍ ଦାସମହାପାତ୍ର |
| ଶ୍ରୀ ଦୁର୍ଗା ଚରଣ କୁଅଁର | ଶ୍ରୀ ରାମଚନ୍ଦ୍ର ସ୍ୱାଇଁ |
| ଶ୍ରୀ ଚନ୍ଦ୍ର ଶେଖର ପ୍ରଧାନ | ଡକ୍ଟର ଜ୍ଞାନଚନ୍ଦ୍ର କର |
| ଶ୍ରୀ ଅର୍ଜୁନ ଦାଶ | ଶ୍ରୀ ରବିନାରାୟଣ ସେନାପତି |
| ଅଧ୍ୟାପକ ନିର୍ମଳଚନ୍ଦ୍ର ପହି | ଡକ୍ଟର ବିଜୟ କୁମାର ଶତପଥୀ |
| ଡକ୍ଟର ରାଜେନ୍ଦ୍ର ପ୍ରସାଦ ମହାନ୍ତି | ଶ୍ରୀ ଶାରଦା ପ୍ରସନ୍ନ ନାୟକ |
| ଡକ୍ଟର ଶରତ୍ କୁମାର ମହାନ୍ତି | ଅଧ୍ୟାପିକା ଶ୍ରୀମତୀ ପ୍ରତିତୀ ମହାପାତ୍ର |
| | ଶ୍ରୀ ଦୁଃଖୀଶ୍ୟାମ ପାଣିଗ୍ରାହୀ |



# ମାନସିଂହ ମାନସ

( ପ୍ରଥମ ଖଣ୍ଡ )


ଲେଖକ :

**ଅଧ୍ୟାପକ ଶ୍ରୀଚରଣ ମହାନ୍ତି** ଏମ୍. ଏ., ଏମ୍. ଫିଲ୍,

ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗ

ସରକାରୀ ମହାବିଦ୍ୟାଳୟ, ରାଉରକେଲା



ପ୍ରକାଶକ :

**ଶ୍ରୀ ମନମୋହନ ମହାନ୍ତି**

ଗ୍ରାମ—ଗଜପୀଠ, ପୋ. ଆର୍. କେ. ପାଟଣା

ଜି: କଟକ

# ମାନସିଂହ ମାନସ—୧

**ଶ୍ରୀଚରଣ ମହାନ୍ତି**, ଏମ୍. ଏ. ଏମ୍. ଫିଲ୍
ଅଧ୍ୟାପକ ଓଡ଼ିଆ ବିଭାଗ, ସରକାରୀ ମହାବିଦ୍ୟାଳୟ-ରାଉରକେଲା

ପ୍ରକାଶକ :
**ଶ୍ରୀ ମନମୋହନ ମହାନ୍ତି**
ଗ୍ରାମ—ଗଜପୀଠ, ପୋ: ଆର୍. କେ. ପାଟଣା
ଥାନା—ପାଟକୁରା, ଜି. କଟକ

ମୁଖ୍ୟ ପରିବେଷକ :
**କଟକ ଲେଖକ ସହଯୋଗ ସମିତି ଲି:**, ପିଠାପୁର କଟକ-୧
ପ୍ରଥମ ମୁଦ୍ରଣ—**୧୯୮୩ ବସନ୍ତ ପଞ୍ଚମୀ**
ମୂଲ୍ୟ—**ଅଠର ଟଙ୍କା** ମାତ୍ର

**Mansingh Manash—Part-I**

( A critical study on poet Mansingh )

*Written by* :
**Sricharan Mohanty**, M. A. M. Phil.
Lecturer in Oriya.
Govt. College-Rourkela

*Published by* ;
**Sri Manmohan Mohanty**
Vill—Gajapith, P. O. R. K. Patana
P. S. Patakura, Dist. Cuttack

*Sole distributor* :
**CUTTACK LEKHAK SAHAJOGA SAMITI Ltd.**
Pithapur, Cuttack-1
First Edition—**1983 Basanta Panchami**
Cover—Sri Lalatendu Rath (Rourkela)

*Printed by* :
**Ramachandra Mishra**
**DAGARO PRESS,**
Pithapur-Cuttack-1
Price—**Rs. 18-00**

# ଉତ୍ସର୍ଗ

ଇହଜଗତର ଆଉପଟୁ ଯାହାଙ୍କର ଅମୀୟ ଆଶିଷଧାର
ମୋର ଚିରନ୍ତନ କାମ୍ୟ
ସେଇ ମୋର

**ବାପା ଓ ବୋଉଙ୍କୁ**

ଚନ

# ସୂଚୀପତ୍ର





# କୃତଜ୍ଞତା ଜ୍ଞାପନ

ଏ ପୁସ୍ତକରେ ପ୍ରକାଶିତ ଆଲୋଚନାମାନଙ୍କ ମଧ୍ୟରୁ ତିନୋଟି ଆଲୋଚନା ମାନସିଂହ ସ୍ମାରକୀ ପ୍ରବନ୍ଧ ପ୍ରତିଯୋଗିତା ପାଇଁ ଲେଖାହୋଇ ଥିଲା ଓ ପୁରସ୍କୃତ ମଧ୍ୟ ହୋଇଥିଲା । ଏହି ପ୍ରତିଯୋଗିତାରୁ ମୁଁ ମାନସିଂହ ସାହିତ୍ୟ ପ୍ରତି ଆକୃଷ୍ଟ ହୋଇ ୧୯୭୫ ମସିହାରୁ କ୍ରମାଗତ ଭାବରେ ଏ ଯାବତ୍ ଅନୁସନ୍ଧାନ ଚଳାଇ ଆସୁଛି । ଏ ଦିଗରେ ପ୍ରେରଣା ଯୋଗାଇ-ଥିବାରୁ ଏ ଅନୁଷ୍ଠାନର ସଂଚାଳକ ଡଃ ସୂର୍ଯ୍ୟକାନ୍ତ ଦାସଙ୍କୁ କୃତଜ୍ଞତା ଜ୍ଞାପନ କରୁଛି । ମାନସିଂହ ସାହିତ୍ୟ ଆଲୋଚନା ପାଇଁ ଯେଉଁ ପୂଜ୍ୟ ଅଧ୍ୟାପକମାନେ ମୋତେ ସାହାଯ୍ୟ କରିଛନ୍ତି ସେମାନେ ହେଲେ ବିଶ୍ୱଭାରତୀ ଶାନ୍ତି ନିକେତନର ଡଃ ନରେନ୍ଦ୍ର ନାଥ ମିଶ୍ର, ଡଃ ଗଗନେନ୍ଦ୍ରନାଥ ଦାଶ ( ବର୍ତ୍ତମାନ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ) ଡଃ ଶ୍ୟାମସୁନ୍ଦର ମହାପାତ୍ର, ଡଃ ନୀଳାଦ୍ରିଭୂଷଣ ହରିଚନ୍ଦନ, ବାଣୀବିହାରର ଡଃ ନିତ୍ୟାନନ୍ଦ ଶତପଥୀ ଓ ପଞ୍ଚାୟତ କଲେଜ ବରଗଡର ଡଃ କିଶୋର ଚନ୍ଦ୍ର ମିଶ୍ର । ଏ ଅବସରରେ ସେମାନଙ୍କୁ କୃତଜ୍ଞତା ଜ୍ଞାପନ କରୁଛି ।

ଯେଉଁ ବନ୍ଧୁମାନେ ମୋତେ ଏ ଦିଗରେ ଯଥେଷ୍ଟ ପ୍ରେରଣା ତଥା ସାହାଯ୍ୟ ଯୋଗାଇଛନ୍ତି ସେମାନେ ହେଲେ, ଅଧ୍ୟାପକ ବିଜୟକୁମାର ଚୌଧୁରୀ, ଅଧ୍ୟାପକ ପଦ୍ମଲୋଚନ ମହାନ୍ତି, ଅଧ୍ୟାପକ ମଥୁରାନାଥ ହୋତା, ଅଧ୍ୟାପକ ଗୌରାଙ୍ଗଚରଣ ଦାଶ, ଶ୍ରୀ ଶୁଭେନ୍ଦୁ ନାରାୟଣ ମିଶ୍ର ଓ ଶ୍ରୀ ରମାକାନ୍ତ ଜେନା ।

ମାନସିଂହ ସାହିତ୍ୟ ଆଲୋଚନା ପାଇଁ ସ୍ୱର୍ଗତ ମାନସିଂହଙ୍କ ପତ୍ନୀ ଶ୍ରୀମତୀ ହେମଲତା ମାନସିଂହ ପ୍ରେରଣା ପ୍ରଦାନ କରିବା ସଙ୍ଗେ ସଙ୍ଗେ ବିଭିନ୍ନ ତଥ୍ୟ ଯୋଗାଇ ଦେଇଥିବାରୁ ଶ୍ରୀମତୀ ମାନସିଂହଙ୍କୁ ଗଭୀର କୃତଜ୍ଞତା ଜଣାଉଛି ।

ଲୋକରତ୍ନ ଡଃ କୁଞ୍ଜବିହାରୀ ଦାଶ ଓ ସଂଭୁରାନନ୍ଦଙ୍କ ନିକଟରୁ ମୁଁ ସଦାସର୍ବଦା ପ୍ରେରଣା ଲାଭ କରି ଆସୁଛି । ମୋର ଅନୁରୋଧ ରକ୍ଷାକରି ଡଃ ଦାଶ ଏ ପୁସ୍ତକର ମୁଖବନ୍ଧ ଲେଖିଥିବାରୁ ମୁଁ ଭକ୍ତିପୂର୍ଣ୍ଣ କୃତଜ୍ଞତା ଜଣାଉଛି ।

ପୁସ୍ତକର ମୁଦ୍ରଣରେ ଅଧ୍ୟାପକ ଶ୍ୟାମସୁନ୍ଦର ମିଶ୍ର ଶ୍ରୀଯୁକ୍ତ ରାମଚନ୍ଦ୍ର ମିଶ୍ର ଓ ଶ୍ରୀ ବିଜୟାନନ୍ଦ ସିଂହ ମୂଲ୍ୟବାନ ପରାମର୍ଶ ଦେଇଥିବାରୁ କୃତଜ୍ଞତା ଜ୍ଞାପନ କରିବା ସଙ୍ଗେ ସଙ୍ଗେ ଡଗର ପ୍ରେସ୍‌ର କର୍ମକର୍ତ୍ତା ତଥା କର୍ମଚାରୀବୃନ୍ଦ ମୁଦ୍ରଣରେ ସାହାଯ୍ୟ କରିଥିବାରୁ ଧନ୍ୟବାଦ ଜଣାଉଛି । ଏ ସଂକଳନରେ ଦୁଇଟି ପ୍ରବନ୍ଧ ପୂର୍ବରୁ ଝଙ୍କାର ଓ ମାନସିଂହ ପରିକ୍ରମାରେ ପ୍ରକାଶିତ ହୋଇଛି । ସଂପୃକ୍ତ ପତ୍ରିକା ଓ ପୁସ୍ତକର ସମ୍ପାଦକଙ୍କ ନିକଟରେ କୃତଜ୍ଞ ରହୁଛି ।

ଶ୍ରଦ୍ଧେୟା ଇନ୍ଦୁଶ୍ରୀ ମହାନ୍ତି ଓ ଶ୍ରଦ୍ଧେୟ ମୁରଲିଧର ବେହେରା ଏ ପୁସ୍ତକର ପାଣ୍ଡୁଲିପି ପ୍ରସ୍ତୁତିରେ ସାହାଯ୍ୟ କରିଥିବାରୁ ତାଙ୍କୁ ଧନ୍ୟବାଦ ଜଣାଉଛି ।

ଇଞ୍ଜିନିୟର ଶ୍ରୀ ଲଲାଟେନ୍ଦୁ ରଥ ପୁସ୍ତକର ପ୍ରଚ୍ଛଦ ଅଙ୍କନ କରି ଦେଇଥିବାରୁ କୃତଜ୍ଞତା ଜଣାଉଛି ।

ଶେଷରେ ମୋର ବଡ଼ଭାଇ ଶ୍ରୀ ମନମୋହନ ମହାନ୍ତି, ଯିଏ ତାଙ୍କର ସମସ୍ତ ସଦିଚ୍ଛା ନେଇ ମୋତେ ଗଢ଼ି ଆଣିଛନ୍ତି, ସେ ମୋର ଏଇ ପ୍ରଥମ ପୁସ୍ତକର ମୁଦ୍ରଣ ଖର୍ଚ୍ଚ ବହନ କରି ଆଲୋକକୁ ଆଣିବାକୁ ସାହାଯ୍ୟ କରିଥିବାରୁ ତାଙ୍କ ନିକଟରେ ଆଶୀର୍ବାଦ ଭିକ୍ଷାକରି ରହୁଛି ।

**ଲେଖକ**



# ମୁଖବନ୍ଧ

ଡକ୍ଟର ମାୟାଧର ମାନସିଂହ ଆଧୁନିକ ଓଡ଼ିଶାର ଶ୍ରେଷ୍ଠ ପ୍ରେମିକ-କବି । ଓଡ଼ିଆସାହିତ୍ୟରେ ରୋମାଣ୍ଟିକ୍ ଯୁଗକୁ ସେ ଅଧିକ ବିସ୍ତୃତ, ବ୍ୟାପକ ଓ ସର୍ବମୟ କରିଥିଲେ । ତାଙ୍କ କଳ୍ପନାର ରଙ୍ଗୀନ କୁହୁଡ଼ିରେ ରୂଢ଼, ରୁକ୍ଷ, ବାସ୍ତବ, ଅଧିକ ଶୋଭନମୟ ଓ ସୁନ୍ଦର ହୋଇଥିଲା । ତା ମଧ୍ୟରେ କାରୁଣ୍ୟର ମୃଦୁ ମୂର୍ଚ୍ଛନା ସ୍ୱାଭାବିକ ସୌନ୍ଦର୍ଯ୍ୟକୁ ଅଧିକ ଝଙ୍କୃତ ଓ ମୋହମୟ କରିଥିଲା ।

ମାନସିଂହଙ୍କ ମନ ଏକ କୁହୁକମଣ୍ଡଳ ଚଢ଼େଇ, ବହୁ ଆକାଶରେ ତାର ଗତି, ବିଚିତ୍ର ତାର ପ୍ରକୃତି, କିନ୍ତୁ ସର୍ବତ୍ର ସ୍ୱତନ୍ତ୍ର ତାର ପ୍ରକାଶ । କବିତା, ନାଟକ, ପ୍ରବନ୍ଧ, ଭ୍ରମଣକାହାଣୀ, ସମାଲୋଚନା ସର୍ବତ୍ର ତାଙ୍କ ନିଜସ୍ୱ ମୌଳିକତା ଅଭିବ୍ୟକ୍ତ ଓ ଆଶ୍ଚର୍ଯ୍ୟଭାବେ ପ୍ରଭାବଶାଳୀ । ଗ୍ରାମ, ନଗର, ନାରୀ, ନର, ବିବାହ, ପ୍ରେମ, ସାହିତ୍ୟ, ସଙ୍ଗୀତ, କଳା, ସ୍ଥାପତ୍ୟ, ସମାଜ, ଧର୍ମ, ସଂସ୍କୃତି, ଉତ୍କଳୀୟତା, ଭାରତୀୟତା ଓ ବିଶ୍ୱଜନୀନତା ସମ୍ପର୍କରେ ସେ ନିଜର ସ୍ୱତନ୍ତ୍ର ମତ ପ୍ରକାଶ କରିଆସିଛନ୍ତି । ତାହା ସର୍ବଜନଗ୍ରାହ୍ୟ ହେଉ ନ ହେଉ, ପାଠକକୁ ନବନବ ଭାବରେ ଭାବିତ କରେ, ପ୍ରତିଭାର ମାଧୁର୍ଯ୍ୟରେ ପ୍ଳାବନ କରେ ଓ କବିଙ୍କ ପ୍ରତି ଶ୍ରଦ୍ଧା ଓ ସମ୍ଭ୍ରମ ଭାବ ଜାଗ୍ରତ କରେ ।

ମାନସିଂହଙ୍କ ପ୍ରୀତିପୂର୍ଣ୍ଣ ମନକୁ ଭିନ୍ନ ଭିନ୍ନ କାଚରେ ଦେଖିଲେ ବିଭିନ୍ନ ରୂପ, ରଙ୍ଗ ଓ ରସରେ ଦେଖି ହୁଏ । କିନ୍ତୁ ଏହା ଏକ ଓ ଏକାନ୍ତ ନିଃସଙ୍ଗ ଭାବେ ଏକକ ! ପ୍ରୀତିରେ ପରିଚ୍ଛନ୍ନ, ସଂଜୀବିତ, ସ୍ୱଚ୍ଛନ୍ଦ, ଅନନ୍ୟମୟ, ମୌଳିକ ଏକ ବ୍ୟକ୍ତିତ୍ୱ ।

ଶ୍ରୀଚରଣ ମାନସିଂହଙ୍କ କବିମନକୁ ନାନା ଭାବେ ବିଶ୍ଳେଷଣ କରିଛନ୍ତି, ବିଭକ୍ତ ଓ ଖଣ୍ଡବିଖଣ୍ଡିତ କରି ଦେଖିଛନ୍ତି । କିନ୍ତୁ ଫଳ ସମାନ ।

ଇକ୍ଷୁ ଗୋଟାପଣେ ଖାଇଲେ ଯାହା, ଖଣ୍ଡ, ଖଣ୍ଡ କରି ଭାଙ୍ଗି ଖାଇଲେ ସେଇଆ । ମାନସିଂହ ସବୁଠି ମଧୁର, ସ୍ୱଭାବସୁନ୍ଦର ।

ଅଧ୍ୟାପକ ଶ୍ରୀଚରଣ ମହାନ୍ତି ବିଶ୍ୱଭାରତୀର ଜଣେ କୃତୀ ଛାତ୍ର, ମାନସିଂହ ସ୍ମାରକୀ ପୁରସ୍କାର ବିଜେତା, ଜଣେ ଏକନିଷ୍ଠ ଗବେଷକ ଓ ସମାଲୋଚକ । ତାଙ୍କ ରଚନା, ସରଳ, ପ୍ରାଞ୍ଜଳ । ମାନସିଂହଙ୍କ ମନକୁ ଜାଣିବାରେ 'ମାନସିଂହ ମାନସ' ଯଥାର୍ଥ ଭାବେ ସହାୟକ ହେବ, ଏହା ନିଶ୍ଚିତ ।

ତା ୯ । ୬ । ୮୩ କୁଞ୍ଜବିହାରୀ ଦାଶ



# ମାନସିଂହଙ୍କ କବିତାରେ ପ୍ରଣୟ ଚେତନା

"ପ୍ରେମ ନୁହେଁ ଦେହ-ଦେହେଁ ଭୋଗ ଅନ୍ୱେଷଣ,
ପ୍ରେମ, ଏକ ଆତ୍ମାପ୍ରତି ଅନ୍ୟର ବନ୍ଧନ ।
ପ୍ରେମ ପୂର୍ଣ୍ଣ-ସମର୍ପଣ ଏକ ଅନ୍ୟ ପାଇଁ
ପ୍ରେମ ଆନପାଇଁ ଦେବା ନିଜକୁ ହଜାଇ ।
ନୈରାଶ୍ୟ, କଷଣ, ଅଶ୍ରୁ ସାଥୀ ପ୍ରଣୟର,
ପ୍ରେମିକେ, ପୋଛନ୍ତି ଖାଲି ଅଶ୍ରୁ ଅନ୍ୟୋନ୍ୟର ।" (୧)

ପ୍ରେମର ଆବେଦନ ସର୍ବମୟ ଓ ଶାଶ୍ୱତ । ସୃଷ୍ଟିର ଶ୍ରେଷ୍ଠ ମାନବଠାରୁ ସାଧାରଣ କୀଟ ପତଙ୍ଗ ଏପରିକି ଉଦ୍‌ଭିଦ ଜଗତରେ ଏହି ପ୍ରବୃତ୍ତି ବିଦ୍ୟମାନ । ଏହାର ଆନ୍ୟନାମ ପ୍ରେମ ଓ ରୂପାନ୍ତରିତ ନାମ ପ୍ରଣୟ । ପ୍ରତ୍ୟେକ ଜୀବନରେ ଏକ ନିର୍ଦ୍ଦିଷ୍ଟ ସମୟ ଆସେ ଅନ୍ୟକୁ ସୁଖ ପାଇବାର, ଅନ୍ୟକୁ ସାଥୀକରି ମିଳିତ ହେବାର । ଏହାହିଁ ପ୍ରେମ-ପ୍ରଣୟ । ପ୍ରେମ ମନୁଷ୍ୟର ବିବିଧ ଚିତ୍ତବୃତ୍ତିର ମୂଳ ଉତ୍ସ ସ୍ୱରୂପ ବିଶ୍ୱର ସମସ୍ତ ସାହିତ୍ୟରେ ଏହି ଚେତନାର ଆଦ୍ୟ ପ୍ରକାଶ ହୋଇଥାଏ । ସେଥିପାଇଁ ଭୋଜରାଜ କହିଛନ୍ତି, "ଶୃଙ୍ଗାରୀ ଚେତ୍ କବିଃ କାବ୍ୟେଜାତଂ ରସମୟଂ ଜଗତ୍" । ସେକ୍‌ସପିଅରଙ୍କ ଭାଷାରେ "Never durst poet touch pen to write until his ink were tempered with Love's sigh."

---

୧- 'କମଳାୟନ' ପଞ୍ଚମ ସର୍ଗ ପୃ ୨୧୧ । ମାନସିଂହ ଗ୍ରନ୍ଥାବଳୀ ଦ୍ୱିତୀୟଖଣ୍ଡ (୧୯୭୦)

ପ୍ରେମରେ ନାନା ବିଭାବ ଓ ଭେଦ ହୋଇପାରେ । ଏହା ମାନବୀୟ, ଦିବ୍ଯ ବା ପ୍ରକୃତି ପ୍ରେମ । ସାହିତ୍ୟରେ ଏ ସମସ୍ତ ରୂପ ଗ୍ରହଣ କରିଥିଲେହେଁ, ନାୟକ ନାୟିକା ପ୍ରେମହିଁ ଅଗ୍ରାଧିକାର ପାଇଥାଏ । ବିଶ୍ୱର ସମସ୍ତ ସାହିତ୍ୟ ଭଳି, ଆମ ପ୍ରାଚୀନ ଭାରତୀୟ ସାହିତ୍ୟରେ ପ୍ରେମଚେତନା ଦେଖାଦେଇଛି । ବୃହଦାରଣ୍ୟକ ଉପନିଷଦର ପ୍ରଜାପତି ଏକୁଟିଆ ତୃପ୍ତି ବା ସନ୍ତୋଷ ଲାଭ କରିପାରିଲେ ନାହିଁ—"ସ ଦ୍ୱିତୀୟ ମୈଚ୍ଛତ୍ ।" (ଚତୁର୍ଥ ବ୍ରାହ୍ମଣ) ସେ ନିଜର ଦ୍ୱିତୀୟ ରୂପ କାମନା କଲେ । ଆପଣା ଶରୀର ମଧ୍ୟରୁ ଶତରୂପାଙ୍କୁ ଜନ୍ମ ଦେଲେ ଓ ଜୀବଜଗତର ସୃଷ୍ଟି ନିମିତ୍ତ ତାଙ୍କ ସହିତ ପ୍ରଣୟ ଲିପ୍ତ ହେଲେ ।" (୨) ପ୍ରତ୍ୟେକ ଦେବତାଙ୍କର ଶକ୍ତିରୂପିଣୀ ପତ୍ନୀର କଳ୍ପନା କରାଯାଇଛି । ତନ୍ତ୍ର ଉପାସନାର 'ପଞ୍ଚମ'କାରରେ ମୈଥୁନ, ଧର୍ମ, ଅର୍ଥ, କାମର ସାଧନାପରେ ହିଁ ମୋକ୍ଷ ଲାଭ ହୋଇଥାଏ । ଉପନିଷଦରୁ ଆରମ୍ଭ କରି ବାଲ୍ମୀକି, ବ୍ୟାସ, କାଳିଦାସ, ଶ୍ରୀହର୍ଷ, ଜୟଦେବ, ଇତ୍ୟାଦି କବିଙ୍କ କାବ୍ୟ ତଥା, ଅମରୁ ଶତକ, ଶୃଙ୍ଗାର ଶତକ, ଶୃଙ୍ଗାର ତିଳକ, ମେଘଦୂତ, ଚୌର ପଞ୍ଚାଶିକା ଭଳି ବହୁ ପ୍ରଣୟ ପ୍ରଧାନ ଗୀତିକାବ୍ୟ ଓ ଖଣ୍ଡ କାବ୍ୟରେ ପ୍ରେମର ଗୌରବ ବର୍ଣ୍ଣିତ ହୋଇଛି ।

**ଓଡ଼ିଆ ପ୍ରେମ କବିତା**—ନାୟକ ନାୟିକାଙ୍କ ପ୍ରେମ ସ୍ୱକୀୟା ଓ ପରକୀୟା ଏହି ଦୁଇ ଭାଗରେ ବିଭକ୍ତ । ପୃଥିବୀର ବିପୁଳ ସାହିତ୍ୟ ସୃଷ୍ଟିର ଉତ୍ସ ପ୍ରେମ । ପରକୀୟା ପ୍ରେମକୁ କେନ୍ଦ୍ର କରି ପୃଥିବୀର ବହୁ ସାର୍ଥକ ସାହିତ୍ୟ ସୃଷ୍ଟି ହୋଇଛି । ବୈଷ୍ଣବ ସାହିତ୍ୟର ରାଧାକୃଷ୍ଣ ପ୍ରେମ ତଥା ପୁରାଣର ପଞ୍ଚ ମହାସତୀଙ୍କ ଜୀବନରେ ଏହି ପ୍ରକାର ପ୍ରେମ ଦେଖାଦେଇଥିଲା ।

ସବୁ ସାହିତ୍ୟ ପରି ଗୀତି କବିତା ଓଡ଼ିଆ ସାହିତ୍ୟର ଏକ ଉନ୍ନତ ବିଭବ । ନାୟକ ନାୟିକାଙ୍କ ପ୍ରେମାନୁଭୂତିକୁ ଆଶ୍ରୟ କରି ଗୀତିକବିମାନେ କବିତା ରଚନା କରିଯାଇଛନ୍ତି । ଏହା ମଧ୍ୟରୁ ଅଧିକାଂଶ କବିତାରେ

**୨- 'ଅଶ୍ଳୀଳତା ବିପକ୍ଷରେ' ଡ଼ଃ କୃଷ୍ଣ ଚରଣ ବେହେରା ପୃ :୯୦ (୧୯୬୬)**

ବନ୍ଧୁପ୍ରେମ ଓ ମାନବୀୟ ପ୍ରେମଚେତନା ଦେଖାଯାଏ । ଏଥିରେ ଯେ ପ୍ରକୃତ ପ୍ରେମ, ବାତ୍ସଲ୍ୟ ପ୍ରେମ ବା ସ୍ୱଦେଶପ୍ରୀତି ନାହିଁ, ଏକଥା କୁହାଯାଇ ନ ପାରେ ।

ଓଡ଼ିଆ ସାହିତ୍ୟର ଆଦିରୂପ ବୌଦ୍ଧଗାନ ଦୋହାରେ ଦେହଜ ପ୍ରେମର ଚିତ୍ର ମିଳିଥାଏ । ସାଧକ, ଯୋଗିନୀ ବ୍ୟତୀତ କ୍ଷଣେମାତ୍ର ବଞ୍ଚି ପାରିବ ନାହିଁ । ତେଣୁ ସେ ତା'ର ମୁଖ ଚୁମ୍ବନରୁ ପଦ୍ମ ମଧୁପାନ କରିବା ପାଇଁ କହୁଛି :—

"ଜୋଇନି ତଇଂ ବିନୁ ଖନହିଂ ନ ଜୀବମି
ତୋ ମୁଖ ଚୁମ୍ବି କମଲ ରସ ପିବମି ।" । ୩ ।

ଅନ୍ୟ ଏକ ସ୍ଥାନରେ ଶବର ଶବରୀର ପ୍ରେମ ଚିତ୍ର ଦିଆଯାଇଛି ।

ତିଅଧାଉ ଖାଟ ପାଡ଼ିଲା
ସବରୋ ମହାସୁଖେ ସେଜ ଛାଇଲୀ,
ସବରୋ ଭୁଜଙ୍ଗ ନୈରାମଣି
ଦାରି ପେମ୍ହେ ରାତି ପୋହାଇଲୀ ।

ହିଅ ତାମ୍ବୋଲା ମହାସୁଖେ କାପୁର ଖାଇ,
ସୁନ ନୈରାମଣି କଣ୍ଠେ ଲଇଆ
ମହାସୁଖେ ରାତି ପୋହାଇ ।" । ୪ ।

---

(୩) ଗୁଣ୍ଡରୀ ପାଦନାମ୍ ପୃ ୩୧୮ ଆଶ୍ଚର୍ଯ୍ୟ ଚର୍ଯ୍ୟାଚୟ ଡ଼ଃ କରୁଣାକର କର ଓଡ଼ିଶା ସାହିତ୍ୟ ଏକାଡେମୀ ୧ମ ମୁଦ୍ରଣ

(୪) ଚର୍ଯ୍ୟା ନଂ-୨୮ ଶବର ବେଶ୍ୟା ପ୍ରେମଚର୍ଯ୍ୟା, ଶବରୀପାଦ ପୃ :୧୧୭ ଚର୍ଯ୍ୟାଗୀତିକା (୧୯୭୦) ଅଧ୍ୟାପକ ଡ଼ଃ ଖଗେଶ୍ୱର ମହାପାତ୍ର ।

କାହ୍ନୁପାଦଙ୍କର ଡୋମ୍ବୀଚର୍ଯ୍ୟାରେ ପରକୀୟା ପ୍ରେମର ଚିତ୍ର ରହିଛି । ଏହି କବିଙ୍କର ଅନ୍ୟ ଏକ କବିତାରେ ଦାମ୍ପତ୍ୟ ପ୍ରେମର ଚିତ୍ର ମଧ୍ୟ ମିଳେ ।

"ଅଇଣିସି ସୁରଅ ପ୍ରସଙ୍ଗେ ଜାଅ
ଜୋଇଣି ଜାଲେ ରଅଣି ପୋହାଅ
ଡୋମ୍ବି ଏର ସଙ୍ଗେ ଜୋଇଜେଇ ରତ୍ତୋ
ଖଣହନ ଛାଡ଼ଅ ସହଜ ଉନ୍ମତ୍ତୋ" । ୫ ।

ପ୍ରାଚୀନ ସାହିତ୍ୟରେ ପ୍ରାକ୍ ବିବାହ ପ୍ରେମର ଭୂରି ଉଦାହରଣ ରହିଛି । ମହାଭାରତର ଉଷା-ଅନିରୁଦ୍ଧ, ଶ୍ୟାମ୍ବ-ଲକ୍ଷଣା, ଦୁଷ୍ମନ୍ତ-ଶକୁନ୍ତଳା, କଳଞ୍ଜି-ଭୀମ, ହିଡ଼ମ୍ବା-ଭୀମ, ହାରାବତୀ-ଅର୍ଜ୍ଜୁନ, ସୁରେଖା-ପ୍ରଦ୍ୟୁମ୍ନ, ପରାଶର-ସତ୍ୟବତୀ, ବ୍ୟାସ-ଅମ୍ବିକା ଅମ୍ବାଳିକାଙ୍କ ପ୍ରଣୟକାହାଣୀ ସର୍ବଜନ-ବିଦିତ । ଏହି ପ୍ରେମ ମଧ୍ୟରୁ କେତେକ ପ୍ରାକ୍ ବିବାହ ଓ କେତେକ ଅବୈଧ ପ୍ରେମ । । ୬ ।

ସାରଳା ମହାଭାରତରେ କୃଷ୍ଣ ଓ ଦୂତିକାଙ୍କ ଅବୈଧ ପ୍ରେମଚିତ୍ର ଏଠାରେ ଦ୍ରଷ୍ଟବ୍ୟ—

"ଯମୁନା ତୀରରେ କଦମ୍ବ ବୃକ୍ଷେ ପୁଣି ଉଠି
ପରଦାରା ଅର୍ଥେ ହରି ଏସନେକ କଷ୍ଟି

× × ×

ରାଧା ବୋଲି ଦୂତୀକୁ ସେ ଦେବ କୋଳକରି
ମଦନ ଆରତେ କିଛି ବିଚାରି ନ ପାରି

---

(୫) ଚର୍ଯ୍ୟା ନଂ ୧୯ ଡୋମ୍ବି ବିବାହ ଚର୍ଯ୍ୟା-କାହ୍ନୁପାଦ ୧୭୬ ପୃ ଚର୍ଯ୍ୟା ଗୀତିକା

୬ – ସଂକ୍ଷିପ୍ତ ମାର୍କଣ୍ଡେୟ ବ୍ରହ୍ମପୁରାଣାଙ୍କ 'କଲ୍ୟାଣ' ଗୀତାପ୍ରେସ ଗୋରଖପୁର ।

ଦୂତୀ ପିନ୍ଧିବା ବସନ ପକାଇଲେ କାଢ଼ି
ଅନ୍ଧକାରେ ଦେବ କଲ୍କି ନ ପାରିଲେ ବାରି ।"

ପଞ୍ଚସଖା ସାହିତ୍ୟର ଅଧିକାଂଶ ପ୍ରେମଚିତ୍ର କେବଳ ରାଧାକୃଷ୍ଣ ଓ ରାମସୀତାଙ୍କୁ ନେଇ । ଜଗନ୍ନାଥ ଦାସଙ୍କ ଭାଗବତ ଓ ବଳରାମ ଦାସଙ୍କ ଦାଣ୍ଡୀ ରାମାୟଣରେ ଏହାର ପ୍ରକୃଷ୍ଟ ଉଦାହରଣ ମାନ ରହିଛି । ଦେବଦୁର୍ଲଭଙ୍କ ରହସ୍ୟମଞ୍ଜରୀର ପ୍ରେମ ଚିତ୍ରଣରେ ବାସ୍ତବବାଦୀ ଦୃଷ୍ଟିଭଙ୍ଗୀ ଦେଖାଯାଏ :—

ଯାହାର ମନ ଯହିଁ ରମିଥାଇ
ତହୁଁ ସମ୍ପତ୍ତି ତା'ର ବଡ଼ ନାହିଁ ।
ଧନ ଜନ ପଣ ସବୁ ବିଭଙ୍ଗ
ନିତ୍ୟହିଁ ଲୋଡ଼ଇ ତାହାର ସଙ୍ଗ ।
ସେ ପ୍ରାଣ ରୂପର
ବି-ଅର୍ଥ ଜୀବନ ତା ବିନୁ ତା'ର ।" । ୭ ।

କେତେକ କାଳ୍ପନିକ କାବ୍ୟକୁ ଛାଡ଼ିଦେଲେ, ରୀତିଯୁଗ ଶେଷ ପର୍ଯ୍ୟନ୍ତ ଯେତେ କାବ୍ୟ କବିତା ଲେଖାଯାଇଛି, ତାହା ମୁଖ୍ୟତଃ ରାଧାକୃଷ୍ଣ ଓ ରାମସୀତାଙ୍କୁ କେନ୍ଦ୍ର କରି । ତେଣୁ ଏହାର ପ୍ରେମଚିତ୍ର ନୈତିକତାର ବନ୍ଧନ ଓ ଧର୍ମର ଢ଼ାଙ୍କୁଣି ମଧ୍ୟରେ ବାନ୍ଧିହୋଇ ଯାଇଛି । କବି ସ୍ୱାଧୀନ ଭାବରେ ନିଜର ପ୍ରେମଚେତନା ପ୍ରକାଶ କରିବା ପାଇଁ ସୁବିଧା ପାଇ ନାହାନ୍ତି । ଅଭିମନ୍ୟୁ, କବିସୂର୍ଯ୍ୟ ଗୋପାଳକୃଷ୍ଣ ଓ ସମସାମୟିକ ବୈଷ୍ଣବ କବିଙ୍କ ରଚନାରେ ଏହାର ବ୍ୟତିକ୍ରମ ଦେଖାଦେଇଛି । କାବ୍ୟ କବିତାର ବାହ୍ୟରୂପ ରାଧାକୃଷ୍ଣ ହେଲେ ମଧ୍ୟ ଅନ୍ତଃସ୍ୱର ମାନବିକ ପ୍ରେମ, ପ୍ରଣୟ । ଗୋପାଳକୃଷ୍ଣଙ୍କ ପ୍ରେମ କିନ୍ତୁ ଅନ୍ୟମାନଙ୍କ ଅପେକ୍ଷା ଅଧିକ ବାସ୍ତବାଭିମୁଖୀ । ରାଧାକୃଷ୍ଣଙ୍କ ନାମ ପରିବର୍ତ୍ତେ ଯେ କୌଣସି ନାମ ବସାଇ ଦେଲେ ଏହା ସାର୍ଥକ ମାନବବାଦୀ ପ୍ରଣୟ କବିତା ହୋଇଯିବ ।

(୭) 'ରହସ୍ୟ ମଞ୍ଜରୀ, ୩ୟ ଛାନ୍ଦ ୪ର୍ଥ ପଦ ଦେବ ଦୁର୍ଲ୍ଲଭ ଦାସ

ରୀତିଯୁଗ ଓ ଅଳଙ୍କାର ଯୁଗର କାଳ୍ପନିକ କାବ୍ୟ ଗୁଡ଼ିକ ମୁଖ୍ୟତଃ ପ୍ରେମପ୍ରଧାନ । ଏଥିରେ ନାୟକ ନାୟିକାର ପ୍ରେମ ପ୍ରସଙ୍ଗ ମୁଖ୍ୟ । ପ୍ରେମର ବିଭିନ୍ନ ବିଭାବ ବର୍ଣ୍ଣନା କରିବାକୁ ଯାଇ କବି କେବଳ ନଗ୍ନ ଯୌନ ଶରୀର ପରିବେଷଣରେ ବ୍ୟସ୍ତ । ଏ କାବ୍ୟରେ ନାୟିକା ସବୁ ସମୟରେ ପ୍ରେମିକା । ନାୟକର କାମୋଦ୍ଦୀପନା ପାଇଁ ଯେତେଯେତେ ଉପାଦାନ ଆବଶ୍ୟକ, ସେହି ଉପାଦାନମାନଙ୍କରେ ସେ ଭୂଷିତା । ଆଦର୍ଶ ପ୍ରେମ ନାମରେ ଏକ ଉଲଙ୍ଗ ରତି ବିଳାସ, ନାରୀ ମାଂସ ଭୋଗର ଏକ ଦୁର୍ବାର କାମନା, ଏ ଯୁଗର କାବ୍ୟର ମୂଳ ଲକ୍ଷ୍ୟ । ଏ ପ୍ରେମ ମୁଖ୍ୟତଃ ଦେହ ପ୍ରତି ଦେହର, ମାତ୍ର ଆତ୍ମା ପ୍ରତି ଆତ୍ମାର ନୁହେଁ । ଅବଶ୍ୟ 'ଶଶିସେଣା' ପରି କେତେକ କାବ୍ୟରେ ଏହାର ବ୍ୟତିକ୍ରମ ଦେଖାଦେଇଛି । ଇନ୍ଦ୍ରିୟ ଓ ଅତୀନ୍ଦ୍ରିୟର ସୀମାରେଖା ସ୍ପଷ୍ଟ ଭାବରେ ହୃଦୟଙ୍ଗମ କରିପାରି ନ ଥିବାରୁ ରୀତି ଯୁଗର ବହୁ କବିଙ୍କ ଚିନ୍ତାଧାରା ବିକାରଗ୍ରସ୍ତ ହୋଇଛି ।

ରାଧାନାଥଙ୍କ ସମୟକୁ ଓଡ଼ିଆ ସାହିତ୍ୟରେ ନବଜାଗରଣ ବା ରେନେସାଁ ପ୍ରବେଶ କଲାଣି । ତେଣୁ ରାଧାନାଥ ଓ ତାଙ୍କ ପରବର୍ତ୍ତୀ କବିମାନଙ୍କର ପ୍ରେମଚେତନାରେ ପରିବର୍ତ୍ତନ ଦେଖାଯାଏ । ରାଧାନାଥଙ୍କ ପ୍ରେମ କେତେକ ସ୍ଥଳରେ ଅତିମାନୁଷିକତାରେ ବିଳୟ ଭଜିଛି, କେତେକ ସ୍ଥଳରେ ଅବାସ୍ତବ ହୋଇଛି । ଗଙ୍ଗାଧର ଓ ନନ୍ଦକିଶୋରଙ୍କ ପ୍ରେମ ଆଦର୍ଶବାଦ ଉପରେ ପ୍ରତିଷ୍ଠିତ । ବ୍ୟକ୍ତିଗତ ମାନସୀୟ ପ୍ରେମ ପରିବେଷଣ କରିବାକୁ କେହି ଆଗେଇ ଆସି ନାହାନ୍ତି । ଏ କ୍ଷେତ୍ରରେ ଫକୀର ମୋହନ କିନ୍ତୁ ବ୍ୟତିକ୍ରମ । "ଫକୀର ମୋହନଙ୍କ ପ୍ରେମ କବିତା ଓଡ଼ିଆ ସାହିତ୍ୟରେ ଏକ ସମ୍ପୂର୍ଣ୍ଣ ନୂତନ ବସ୍ତୁ । ଏଥିରେ ହୃଦୟ ବିନିମୟର ଚରମ ବ୍ୟକ୍ତିଗତ ଅନୁଭୂତିରୁ ସେ ପ୍ରକାଶ କରିଛନ୍ତି । ନିଜ ଜୀବନରେ ଘଟିତ ହୃଦୟ ବିଚ୍ଛେଦର ଏକ ଅନୁଭୂତ ନିରାବରଣ ଭାବରେ ପ୍ରକାଶ କରି ଫକୀର ମୋହନ କେବଳ କାବ୍ୟର ବିଷୟବସ୍ତୁରେ ଯେ ନୂତନତା ଆଣିଛନ୍ତି ତା' ନୁହେଁ ଆମର ସାମାଜିକ ଜୀବନରେ ପ୍ରଣୟ ଚେତନାର ଏକ ନୂତନ ଦୃଷ୍ଟିକୋଣ ଫେରାଇଛନ୍ତି ।" (୮)

(୮) ଆଧୁନିକ ଓଡ଼ିଆ କାବ୍ୟଧାରା (ଆଦ୍ୟ ଯୁଗ) ପୃ ୧୦୭, ୧୦୮ ପ୍ରଥମ ସଂସ୍କରଣ ଡଃ ନରେନ୍ଦ୍ରନାଥ ମିଶ୍ର, ବିଶ୍ୱଭାରତୀ ଗବେଷଣା ଗ୍ରନ୍ଥମାଳା

'ସତ୍ୟବାଦୀ' ଗୋଷ୍ଠୀର କବିଙ୍କର ପ୍ରେମଚିନ୍ତା ନୈତିକତା ଓ ଆଦର୍ଶବାଦର ନିଗୂଢ଼ ବନ୍ଧନରେ ଭାରାକ୍ରାନ୍ତ । ଏହାପରେ ଆସିଲେ ସବୁଜ ଗୋଷ୍ଠୀ । "ସବୁଜ ବୟସର ସବୁଜ ଭାବଧର, ସବୁଜ କବିମାନେ ଯେଉଁ ସବୁଜ ଯୁଗ ବାଡ଼ିଲେ, ସେଥିରେ ଇନ୍ଦ୍ରିୟ ସ୍ଥାନରେ ଅତୀନ୍ଦ୍ରିୟ, ନାରୀ ସ୍ଥାନରେ ପରି ଓ ବସ୍ତୁ ସ୍ଥଳରେ ଦୂରତ୍ୱର ଅନୁରକ୍ତି ସହ ରହସ୍ୟବାଦର ଭୂୟସୀ ଅବତାରଣା ପରିଦୃଷ୍ଟ ହେଲା ।" (୯)

ଏମାନେ କବିତା ଲେଖିଲେ—

ଯିବି ପଳାଇ ଦୂରେ ସୁଦୂରେ
ସ୍ୱପନ ଲୋକ ଗୋପନପୁରେ
ଗ୍ରହତାରକା ଏଡ଼ାଇ

ଯଉବନର ଝରଣା କୂଳେ
ମଳୟ ନାହିଁ ନିୟତ ବୁଲେ
କୁସୁମକେତୁ ଉଡ଼ାଇ ।

× × ×

ଚାଲ ସେ ପୁରେ ଯିବା ଗୋ ପ୍ରିୟେ
ଏ ମର ମରୁ ସହିବ କି ଏ
ମରୀଚିମୟ ଭବ ଏ

× × ×

ପ୍ରେମ ପୁରୁଣା ନହୁଏ ଯହିଁ
ଚାଲ ସେ ପୁରେ ଯିବା ଗୋ ସହି
ଚାଲ ସେ ପୁରେ ଯିବା ଗୋ ।" (୧୦)

(୯) କବି ମାନସିଂ ସାରସ୍ୱତ ସମୀକ୍ଷା — ଶ୍ରୀ ବୀରକିଶୋର ଦାସ

(୧୦) ସୃଜନ ସ୍ୱପ୍ନ — ଅନ୍ନଦା ଶଙ୍କର ରାୟ — ସବୁଜ କବିତା — ସ — କାଳିନ୍ଦୀ ଚରଣ ପାଣିଗ୍ରାହୀ ।

ମାନସିଂହ ହେଉଛନ୍ତି ଏ ଯୁଗର କବି; କିନ୍ତୁ ସେ କୌଣସି ଗୋଷ୍ଠୀ ବା ଧାରାର ନୁହନ୍ତି । ସେ ନିଜେ ଜଣେ 'ଏକକ' । କୌଣସି ନିର୍ଦ୍ଦିଷ୍ଟ ଗୋଷ୍ଠୀକୁ ସେ ଅନୁକରଣ କରିନାହାନ୍ତି ଓ ସେ ନିଜେ ଅନନୁକରଣୀୟ ହୋଇ ରହିଯାଇଛନ୍ତି ।

**ମାନସିଂହଙ୍କ ପ୍ରେମ କବିତା**—ଊନବିଂଶ ଶତକର ଶେଷ ଭାଗରେ ରେନେସାଁ ବା ନବଜାଗରଣ ଦେଖା ଦେଇଥିଲା ବୋଲି ପୂର୍ବରୁ କୁହାଯାଇଛି । ଏହା ଫଳରେ ଶିକ୍ଷା, ସଂସ୍କୃତି, ଧର୍ମ, ସାହିତ୍ୟ ଆଦିରେ ଏକ ଆଲୋଡ଼ନ ଦେଖାଦେଲା । ଏହି ପରିବର୍ତ୍ତନର ଧାରାକୁ ଓଡ଼ିଶାର ସାଧାରଣ ଲୋକମାନେ ବିଶେଷ ଗ୍ରହଣ କରିପାରିନଥିଲେ । ଯେଉଁମାନେ ପାଶ୍ଚାତ୍ୟ ଶିକ୍ଷାର ପ୍ରଭାବରେ ଆସିଲେ; ସେମାନଙ୍କ ଚିନ୍ତାଧାରାରେ ଏହି ପରିବର୍ତ୍ତନ ଦେଖାଦେଲା । ବିଂଶ ଶତକର ପ୍ରଥମ ଦଶକରେ ଉତ୍କଳ ସମ୍ମିଳନୀ ପ୍ରତିଷ୍ଠା, ସ୍ୱତନ୍ତ୍ର ଓଡ଼ିଶା ଗଠନ ପାଇଁ ଉଦ୍ୟମ ଲୋକମାନଙ୍କ ମନରେ ବେଶି ପ୍ରଭାବ ପକାଇ ପାରିଥିଲା । ପ୍ରାଚୀନତାର ମୋହ ଓ ଆଧୁନିକତାର ଆକର୍ଷଣ ଅଧିକାଂଶଙ୍କ ମନରେ ଏକ ଦୋଳାୟମାନ ଅବସ୍ଥା ସୃଷ୍ଟି କରିଥିବା ସ୍ୱାଭାବିକ ।

ଏହିପରି ଏକ ଐତିହାସିକ ପୃଷ୍ଠଭୂମିରେ କବି ମାୟାଧର ମାନସିଂହଙ୍କ ଜନ୍ମ, ଖ୍ରୀ ୧୯୦୫ ମସିହା ନଭେମ୍ବର ମାସ ୧୩ ତାରିଖରେ । କବିଙ୍କୁ ୧୨।୧୩ ବର୍ଷ ହେଲା ବେଳକୁ ପ୍ରଥମ ବିଶ୍ୱଯୁଦ୍ଧର ବିଭୀଷିକା ତାଙ୍କ କିଶୋର ମନରେ ପ୍ରଭାବ ପକାଇଥିବ । ବିଶେଷତଃ ଖ୍ରୀ ୧୯୧୬ ମସିହାର ପୁରୀଠାରେ ଅନୁଷ୍ଠିତ ଉତ୍କଳ ସମ୍ମିଳନୀ ତାଙ୍କୁ ଜାତୀୟ ପ୍ରେରଣା ଯୋଗାଇଥିଲା ବୋଲି କବି ନିଜେ ସ୍ୱୀକାର କରିଛନ୍ତି । (୧୧)

ଖ୍ରୀ. ୧୯୧୮ ମସିହାରୁ ଖ୍ରୀ. ୧୯୩୬ ମସିହା ମଧ୍ୟରେ ବିଭିନ୍ନ ଭାରତୀୟ ସାହିତ୍ୟରେ ଛାୟାବାଦ, ରହସ୍ୟବାଦ, ସବୁଜବାଦ ନାମରେ ଇଜମ୍ ବା ବାଦ ଚାଲିଲା । ତାହାହିଁ ପ୍ରକୃତରେ ରୋମାଣ୍ଟିସିଜମ୍ । ଖ୍ରୀ. ୧୯୧୩ରେ

---

(୧୧) **ଶିକ୍ଷା ଜୀବନର ଗାଥା**—ଡଃ ମାୟାଧର ମାନସିଂହ ।

କବି ରବୀନ୍ଦ୍ରନାଥ ନୋବେଲ ପୁରସ୍କାର ପାଇବା ପରେ ତାଙ୍କ ପ୍ରତିଭା ଗୃହଆଡ଼େ ବ୍ୟାପିଗଲା । କବି ମାନସିଂହ ରବୀନ୍ଦ୍ର ସାହିତ୍ୟର ଜଣେ ମୁଗ୍ଧ ପାଠକ । ବଙ୍ଗଳାର ସବୁଜ ଗୋଷ୍ଠୀର ପ୍ରଭାବ ମଧ୍ୟ ତାଙ୍କ ଉପରେ ପଡ଼ିଲା । ଏହି ପୃଷ୍ଠଭୂମି ଉପରେ ମାନସିଂହଙ୍କ ପ୍ରତିଷ୍ଠା । ଓଡ଼ିଆ ସାହିତ୍ୟ ବ୍ୟତୀତ ସେ ଇଂରାଜୀ ଓ ସଂସ୍କୃତ ସାହିତ୍ୟର ଗଭୀର ଅନୁଶୀଳନ କରିଥିଲେ ।

ସମସାମୟିକ ପରିବେଶ ତଥା ଅତୀତର ପରମ୍ପରା କବିମାନଙ୍କୁ ଉଦ୍‌ବୁଦ୍ଧ କରିଥାଏ । T. S. Eliot ଙ୍କ ଭାଷାରେ କହିବାକୁ ଗଲେ, "No author can claim himself to be absolutely original. The past tradition and the present development are bound to influence him when he sits down to write." ମାନସିଂହଙ୍କ କ୍ଷେତ୍ରରେ ମଧ୍ୟ ଏହି କଥା ପ୍ରଯୁଜ୍ୟ । ତାଙ୍କ ରଚନାର ପୃଷ୍ଠଭୂମି ସମ୍ବନ୍ଧରେ—ଅଧ୍ୟାପକ ଚିନ୍ତାମଣି ବେହେରା କହନ୍ତି—"ଦେଶର କଥା ଓ ଛନ୍ଦକୁ ଘେନି ମାନସିଂହଙ୍କ କାବ୍ୟ ଜୀବନର ହିଁ ଏ ଅପୂର୍ବାରମ୍ଭ । ପରେ କାବ୍ୟଜୀବନର ଗତିପଥରେ ବିଶ୍ୱକବି ରବୀନ୍ଦ୍ରନାଥଙ୍କ କାବ୍ୟାଦର୍ଶ, ସୁଫୀ ଓ ବୈଷ୍ଣବ କବିଙ୍କର ସୌନ୍ଦର୍ଯ୍ୟ ଚେତନା, ବାଲ୍ମୀକି ଓ କାଳିଦାସ ସାହିତ୍ୟର ପରମ୍ପରା ଓ ଭାରତୀୟ ସଂସ୍କୃତିର ଉପନିଷଦୀୟ ବ୍ରହ୍ମଚେତନା ଦ୍ୱାରା କବି ପ୍ରଭାବିତ ହୋଇଛନ୍ତି ଏବଂ ସେ ପ୍ରଭାବକୁ ନିଜର ଐନ୍ଦ୍ରଜାଲିକ ଶବ୍ଦ ସ୍ପର୍ଶରେ ସ୍ୱକୀୟ ସାରସ୍ୱତ ସମ୍ପଦରେ ପରିଣତ ମଧ୍ୟ କରିଛନ୍ତି । ଓଡ଼ିଆ ସାହିତ୍ୟର ପ୍ରଣୟୀ କବି ଭାବରେ ହିଁ ଏ ମାନସିଂହଙ୍କର ପ୍ରଥମ ପ୍ରତିଷ୍ଠା ।" (୧୨)

ମାନସିଂହଙ୍କ କାବ୍ୟ ପ୍ରତିଭା ସମ୍ବନ୍ଧରେ ଅଧ୍ୟାପକ ତାରିଣୀ ଚରଣ ଦାସ କହନ୍ତି—"ଏହା ପ୍ରଧାନତଃ ବେଦନା ଦ୍ୱାରା ପ୍ରେରିତ ଓ ବୌଦ୍ଧିକତା ଦ୍ୱାରା ନିୟନ୍ତ୍ରିତ । ଏହି ବେଦନାକୁ କ୍ରମଶଃ ଯୁବବେଦନା, ସାମାଜିକ ବେଦନା ଓ ଆତ୍ମବେଦନା – ଏହିପରି ତିନି ଭାଗରେ ବିଭକ୍ତ

(୧୨) 'ଓଡ଼ିଆ କାବ୍ୟ କବିତାର କ୍ରମ ବିକାଶ', 'ବିଦଗ୍ଧ ପାଠକ' ପୃ ୪୭ ଅଧ୍ୟାପକ ଚିନ୍ତାମଣି ବେହେରା ।

କରାଯାଇପାରେ । ଯୁବ ବେଦନାରୁ 'ଧୂପ,' 'ହେମପୁଷ୍ପ' ଓ ହେମଶସ୍ୟ ପ୍ରଭୃତିର ସାମାଜିକ ବେଦନାରୁ 'କମଳାୟନ' ତଥା କେତେକ ବ୍ୟଙ୍ଗ କବିତାର ଏବଂ ଆତ୍ମବେଦନାରୁ 'ଜୀବନଚିତା' ର ଜନ୍ମ ।" (୧୩)

ମାନସିଂହଙ୍କ କବିତାକୁ ମୁଖ୍ୟତଃ ଦୁଇ ଭାଗରେ ବିଭକ୍ତ କରାଯାଇପାରେ; ପ୍ରେମମୂଳକ ଓ ଆଧ୍ୟାତ୍ମିକ । ପ୍ରେମ କବିତାକୁ ଚାରି ଭାଗରେ ବିଭକ୍ତ କରାଯାଇପାରେ, ଦେଶପ୍ରେମ, କଳା ଓ ସଂସ୍କୃତିପ୍ରେମ, ପ୍ରକୃତି ପ୍ରେମ ଓ କାନ୍ତାପ୍ରେମ । କାନ୍ତାପ୍ରେମମୂଳକ କବିତାକୁ ମଧ୍ୟ ଦୁଇ ଭାଗରେ ବିଭକ୍ତ କରାଯାଇଛି; (କ) ସ୍ୱକୀୟା ବା ଦାମ୍ପତ୍ୟ ପ୍ରେମ, (ଖ) ପରକୀୟା ପ୍ରେମ। ଆଧ୍ୟାତ୍ମିକତାରୁ 'ଜୀବନଚିତା' (୧୯୫୬) 'ଅକ୍ଷତ', (ବିଭିନ୍ନ ସମୟର) 'ଜୀବନଚିତା' (୧୯୪୬) 'ସିନ୍ଧୁ ଓ ବିନ୍ଦୁ' (୧୯୬୭)ର କେତେକ କବିତା, ଦେଶ ପ୍ରେମରୁ ବାପୁତର୍ପଣ (୧୯୪୮) 'ମାଟିବାଣୀ', (୧୯୪୭) ସେ ଦିନର କବିତା, ସ୍ୱରାଜ୍ୟାଶ୍ରମ (୧୯୫୨-୫୬) କୋଣାର୍କ (୧୯୨୬)ର କେତେକ କବିତା । କଳା ଓ ସଂସ୍କୃତି ପ୍ରେମରୁ କୋଣାର୍କ, ମାଟିବାଣୀ, କୃଷ୍ଣର କେତେକ କବିତା; ପ୍ରକୃତି ପ୍ରେମରୁ ବିଭିନ୍ନ ପଲ୍ଲୀ କବିତା ଜନ୍ମନେଇଛି । କାନ୍ତାପ୍ରେମମୂଳକ କବିତାରୁ ମାନସିଂହଙ୍କ କବିଜୀବନର ଶ୍ରେଷ୍ଠ କୃତି 'ଧୂପ' (୧୯୩୧) 'ହେମପୁଷ୍ପ' (୧୯୩୩) 'ହେମଶସ୍ୟ' (୧୯୩୫) ଓ କେତେକ ସାମୟିକ କବିତା ଜନ୍ମଲାଭ କରିଛି ।

ଆଲୋଚ୍ୟ ପ୍ରବନ୍ଧରେ ମାନସିଂହଙ୍କ ପ୍ରେମକବିତାର ସମ୍ୟକ ଆଲୋଚନା ପାଇଁ ଏହାକୁ ସାତ ଭାଗରେ ବିଭକ୍ତ କରାଯାଇଛି (କ) ରୂପାନ୍ୱେଷଣ: ସୌନ୍ଦର୍ଯ୍ୟାନ୍ୱେଷଣ (ଖ) ତାରୁଣ୍ୟ ଚିତ୍ତବେଗ (ଗ) ଦେହ ବାଦିତା: ପ୍ରାକ୍‌ବିବାହ ପ୍ରେମ (ଘ) ଅଖଣ୍ଡ ସ୍ୱୟଂ ପ୍ରେମ: ବିବାହୋତ୍ତର ପ୍ରେମ (ଙ) ମିଳନାନନ୍ଦ (ଚ) ବିରହଶୋକୋଚ୍ଛ୍ୱାସ (ଛ) ଅନୁଶୋଚନା ।

---

**(୧୩) 'ମାନସିଂହଙ୍କ ଧୂପ' - ନୂତନ ସମୀକ୍ଷା — ଅଧ୍ୟାପକ ଭାରଣୀ ଚରଣ ଦାସ ।**

"ସାଧାରଣତଃ ତରୁଣ ବୟସର ଉଦ୍ଦାମ ଯୌବନର ଜୟଗୀତି ପ୍ରତ୍ୟେକ କବିଙ୍କ ଠାରୁ ସ୍ୱତଃ ନିସୃତ ହୋଇପଡ଼େ । ଏହି କବିତା ପ୍ରବାହର ଗତି ଅବାରିତ । ଏହା କୌଣସି ଦେଶ, ଜାତି ବା ସମାଜ ବନ୍ଧନକୁ ଭ୍ରୂକ୍ଷେପ କରେ ନାହିଁ । ଅଧିକାଂଶ କବିଙ୍କର ଏହି କବିତା-ଗୁଡ଼ିକର ନିବିଡ଼ ଅନୁଭୂତି ଯୋଗୁ ପ୍ରାଣସ୍ପର୍ଶୀ ଓ ଚିରନ୍ତନ ହୋଇ ଉଠେ । ଏହି ପ୍ରାଥମିକ କବିତା ସ୍ତରକୁ ପରବର୍ତ୍ତୀ କାଳରେ କବିମାନେ ନିଜ ରୁଚି ଅନୁଯାୟୀ ବିଭିନ୍ନ ଦିଗକୁ ଗତି ପରିବର୍ତ୍ତନ କରିଥାନ୍ତି ।" (୧୪) ସମାଲୋଚକମାନେ 'ଧୂପ'କୁ ମାନସିଂହଙ୍କର ଶ୍ରେଷ୍ଠ ପ୍ରେମକବିତା ସଙ୍କଳନ ଭାବରେ ସ୍ୱୀକାର କରିଥାନ୍ତି । 'ଧୂପ'ହିଁ ତାଙ୍କ ଯୌବନର ପ୍ରକୃତ ଉଦ୍‌ଗାର । ଏଥିରେ ସେ ନିଜକୁ ଯେପରି ସରଳ, ତରଳ ଭାବରେ ଢାଳି ଦେଇଛନ୍ତି, ତାଙ୍କ 'କମଳାୟନ' (୧୯୪୭) କିମ୍ବା 'କୃଶ'ରେ ତାହା ସମ୍ଭବ ହୋଇ ପାରି ନାହିଁ ।

'ଧୂପ'ର ଭାଷା, ରସ, ଛନ୍ଦ, ସେତେବେଳେ ପାଠକ ମହଲରେ ଅପୂର୍ବ ପୁଲକ ଆଣିଥିଲେ ମଧ୍ୟ କବି ବାରମ୍ବାର ରକ୍ଷଣଶୀଳ ସମାଲୋଚକ-ମାନଙ୍କରେ ଶରବ୍ୟ ହୋଇଥିଲେ । ଏହି ଅପବାଦରେ କବିଙ୍କ ଲେଖମା ସିନା ବନ୍ଦ ହେଲାନି, ମାତ୍ର ସେ ଅନ୍ତରରେ ଆଘାତ ପାଇଲେ । ତେଣୁ କିଛିଦିନ ପରେ ପ୍ରକାଶିତ 'ହେମ ଶସ୍ୟ'ର ମୁଖବନ୍ଧ କବିତାକାରରେ ଲେଖିଥିଲେ, "ମାୟାଧର ନାମରେ ଜଣେ କବି ଥିଲେ । ତାଙ୍କ କବିତା ଆଦର ପାଇଥିଲା । ରମ୍ୟ, ଲଳିତ କବିତା ଭାବରେ ଖ୍ୟାତି ଅର୍ଜନ କରିଥିଲା । ମାତ୍ର କେତେକ ତଥାକଥିତ ମାର୍ଜିତବାଦୀଙ୍କ ତାଡ଼ନାରେ ଜର୍ଜରିତ ହୋଇ କବି ସହର ଛାଡ଼ି ଚାଲିଗଲେ ନିଭୃତ ପଲ୍ଲୀକୋଳକୁ । ସେଠାରେ ସେ ଆତ୍ମହତ୍ୟା କଲେ । ମୁଁ ଯାଇଥିଲି କବିବନ୍ଧୁଙ୍କର ସେହି ନିଭୃତ ନିବାସକୁ । ଦେଖିଲି ଏଣୁ ତେଣୁ ଗୁଡ଼ାଏ କବିତା ଛିନ୍ନଭିନ୍ନ ହୋଇ

(୧୪) ସମାଲୋଚନା । ଦୃଷ୍ଟିରୁ ପୃ୬୭-୬୮
ଅଧ୍ୟାପକ ନୀଳାଦ୍ରି ଭୂଷଣ ହରିଚନ୍ଦନ

ପଢ଼ିଛି । କବିଙ୍କର ଲେଖାଗୁଡ଼ିକ ସଂଗ୍ରହ କରି ମୁଁ ଏ କବିତା ଗୁଚ୍ଛରେ ପ୍ରକାଶ କରୁଛି ।” (୧୫)

ବର୍ତ୍ତମାନ ପ୍ରଶ୍ନ ଉଠେ କବିଙ୍କର ଏ ଚିନ୍ତାଧାରାର ଉତ୍ସ କେଉଁଠାରୁ । ପୂର୍ବରୁ ଆଲୋଚିତ ହୋଇଛି ଯେ କବି ସଂସ୍କୃତ ସାହିତ୍ୟ ତଥା ପାଶ୍ଚାତ୍ୟ ସାହିତ୍ୟରେ ବିଶେଷ ଜ୍ଞାନଲାଭ କରିଥିଲେ । ଏହି ସମୟରେ ପାଶ୍ଚାତ୍ୟ ସାହିତ୍ୟରେ ଫ୍ରଏଡ଼ଙ୍କ ଯୌନତତ୍ତ୍ୱ ତଥା ବାସ୍ତବବାଦୀ ଚିନ୍ତାଧାରା ବିସ୍ତାର ଲାଭ କରିଥିଲା । କାଳ୍ପନିକ ଚିତ୍ର ପରିବର୍ତ୍ତେ ବ୍ୟକ୍ତିଗତ ବାସ୍ତବବାଦୀ ଚିତ୍ର ଦେବାକୁ ସାହିତ୍ୟିକମାନେ ଆଗେଇ ଆସିଥିଲେ । ପୁନଶ୍ଚ କବିଙ୍କର ବ୍ୟକ୍ତିଗତ ଜୀବନରେ ଦାରିଦ୍ର୍ୟ, ନିଃସଙ୍ଗତା ମଧ୍ୟ ଯଥେଷ୍ଟ ପ୍ରଭାବ ପକାଇଥିବ । ‘ଧୂପ’ର ଭୂମିକାରେ କବିଙ୍କ ମନ୍ତବ୍ୟ ଲକ୍ଷଣୀୟ:— “ଅନେକ ଭାବି ପାରନ୍ତି ଯେ ଏ କବିତାଗୁଡ଼ିକ ଅତ୍ୟନ୍ତ ବ୍ୟକ୍ତିଗତ । କିନ୍ତୁ ଆଜି ପଛକୁ ଅନାଇ ଲେଖକ ଦେଖୁଛି ଯେ ଏଥିରେ ବ୍ୟକ୍ତିର ସମ୍ପର୍କ ନିମିତ୍ତ ମାତ୍ର । ପ୍ରଥମ ଯୌବନରେ ବାପ—ମାଆ—ଭାଇ ଭଉଣୀଙ୍କ ଉପସ୍ଥିତି ସତ୍ତ୍ୱେ ଏକ ନିଃସଙ୍ଗତା ପ୍ରତ୍ୟେକ ଜୀବନରେ ଆସେ । ଏହା ପ୍ରାୟ ସାର୍ବଜନୀନ । ତେବେ ପିତୃ-ମାତୃ-ଭ୍ରାତୃହୀନ ଏକ ନିଃସଙ୍ଗ ତରୁଣକୁ ଯେଉଁମାନେ ସଖ୍ୟଦାନ କରି ତାକୁ ଅନୁଗୃହୀତ କଲେ, ତାଙ୍କର ମହିମ୍ନ ସ୍ତବ ଗାଇବା ତା ପକ୍ଷରେ କି ବିଚିତ୍ର ବ୍ୟାପାର ? ସେ ବୟସ ଓ ସେ ଅବସ୍ଥାରେ ଯେ କୌଣସି ତରୁଣ, ଯେ କୌଣସି ନର ବା ନାରୀର ସଖ୍ୟ ପାଇଁ ଉଚ୍ଛ୍ୱସିତ ହୋଇ ଉଠିବା ସ୍ୱାଭାବିକ । ତେଣୁ ଲେଖକ ଆଜି ଭାବୁଛି ଯେ ଏସବୁ କବିତା ପ୍ରକୃତରେ ବ୍ୟକ୍ତିନିରପେକ୍ଷ । ଏସବୁ ଏକ ନିଃସଙ୍ଗ ତରୁଣ ହୃଦୟ ଉପରେ ଅନ୍ୟ ହୃଦୟମାନଙ୍କର ପ୍ରତିକ୍ରିୟାର ଚିତ୍ର ମାତ୍ର ।” (୧୬)

---

୧୫—ମାନସିଂହ ପ୍ରତିଭା— ଡଃ ସଦାଶିବ ମିଶ୍ର, ଝଙ୍କାର ୨୫ଶ ବର୍ଷ ୮ମ ସଂଖ୍ୟା ପୃ ୭୬୭

୧୬ - ‘ଧୂପ’ ଭୂମିକା—ମାନସିଂହ ଗ୍ରନ୍ଥାବଳୀ ୧ମ ଭାଗ

କବି ମାନସିଂହ ସଂଭୋଗ ଶୃଙ୍ଗାର ଉପରେ ପ୍ରାଧାନ୍ୟ ଆରୋପ କରି ନାହାନ୍ତି । ତାଙ୍କର ପ୍ରେମାନୁଭୂତିରେ ଗଭୀର ଆତ୍ମତ୍ୟାଗର ଦୃଷ୍ଟାନ୍ତ ମିଳିଥାଏ । ଜୀବନରେ ନାନା ଝଡ଼, ଝଞ୍ଜା, ଅଶ୍ରୁ, ହାସ୍ୟ ମଧ୍ୟରେ ପ୍ରେମାନୁଭୂତି ହେଉଛି ମନୁଷ୍ୟର ସର୍ବଶ୍ରେଷ୍ଠ ଅନୁଭୂତି । ତାଙ୍କର ପ୍ରେମ କବିତା ଗୁଡ଼ିକରେ ସଂହତ ଭାଷା ପ୍ରୟୋଗ, ଉପଯୁକ୍ତ ଶବ୍ଦ ସଂଯୋଜନ ତଥା ଭାଷା ମାଧ୍ୟମରେ ଜୀବନ୍ତ ପରିବେଶର ଆଲେଖ୍ୟ ତାଙ୍କୁ ଓଡ଼ିଆ ସାହିତ୍ୟ ରାଜ୍ୟରେ ଏକକ କବି ଭାବରେ ପ୍ରତିଷ୍ଠିତ କରାଇ ପାରିଛି ।

**ରୂପ ନ୍ୱେଷଣ : ସୌନ୍ଦର୍ଯ୍ୟାନ୍ୱେଷଣ**—କବିମାନେହିଁ ରୂପର ଦାସ । ସାଧାରଣ ଜନଷରୁ ନୂତନତାର ସନ୍ଧାନ ନେବା କବିଙ୍କ ପ୍ରବୃତ୍ତି । ମାନସିଂହ ଜଣେ ରୂପପ୍ରାଣ କବି । ତାଙ୍କ ମହାପ୍ରୟାଣରେ ସଚ୍ଚିଦାନନ୍ଦ ରାଉତରାୟ ଲେଖିଥିଲେ, । "କବି ମାନସିଂହଙ୍କ ମୃତ୍ୟୁରେ ଆମ ଯୁଗର ସବୁଠୁଁ ବିଦଗ୍ଧ, ସବୁଠୁଁ ସୌନ୍ଦର୍ଯ୍ୟପ୍ରବଣ ଏକ ସ୍ପର୍ଶକାତର କବି ମାନସର ଅବସାନ ଘଟିଲା" । (୧୭) ସୌନ୍ଦର୍ଯ୍ୟାନ୍ୱେଷଣରେ ମାନସିଂହଙ୍କ ଦୃଷ୍ଟିକୋଣ ସ୍ୱତନ୍ତ୍ର, ମାର୍ଜିତ ଓ ଅନ୍ୟମାନଙ୍କ ଠାରୁ ଭିନ୍ନ ଥିଲା । ବ୍ରହ୍ମବାଦୀ ମଧୁସୂଦନ, ରୂପପ୍ରାଣ ରାଧାନାଥଙ୍କ ଠାରୁ ମାନସିଂହଙ୍କ ଦୃଷ୍ଟିକୋଣ ଅଧିକ ବାସ୍ତବାଭିମୁଖୀ ।

ସାଧାରଣ ମଣିଷର ଯୁବବେଦନା କେତେକ ଦୀର୍ଘଶ୍ୱାସ ଓ ହାହୁତାଶରେ ଶେଷ ହେଲାବେଳେ, କବିଙ୍କର ବେଦନା ଏକ ସାରସ୍ୱତ ରୂପ ନେଇଥାଏ । ଖୋର୍ଦ୍ଧାରେ ଅଧ୍ୟୟନ କାଳରେ କୌଣସି ଅସାଧାରଣ ସୁନ୍ଦରୀ ଇରାନୀ ବାଳିକାକୁ ଦେଖିଲା ପରେ ସୌନ୍ଦର୍ଯ୍ୟାନ୍ୱେଷୀ କବିଙ୍କର ବେଦନାର ପରିପ୍ରକାଶ "ଇରାନୀ କିଶୋରୀ" କବିତା । ସୌନ୍ଦର୍ଯ୍ୟମୁଗ୍ଧ କବି ତା'ର ଅତୀତ ଭବିଷ୍ୟତ ବିଷୟରେ କଳ୍ପନା ଜଳ୍ପନା କରିଛନ୍ତି । ତା'ର ଜୀବନରେ ଜରାକୁ ଦେଖିବାକୁ କବି ଇଚ୍ଛା ପ୍ରକାଶ କରି ନାହାନ୍ତି:—

୧୭- କବି ମାସ୍ତାଧର ମାନସିଂହ : ଏକ ସ୍ୱପ୍ନ ପ୍ରସ୍ଥାଣ
—ସଚ୍ଚିଦାନନ୍ଦ ରାଉତରାୟ । ଝଙ୍କାର ୨୫ଶ ବର୍ଷ ୮ମ ସଂଖ୍ୟା ପୃ ୭୬୧

"ତେଣୁ ଗୋ ବିଦେଶିନି
ଘନ-ନୀଳ-କେଶିନି
ଧବଳ-କେଶେ ଦେଖାପାଇଁ ମୋ
ତିଳେହେଁ ଅଭିଳାଷ ନାହିଁ ଗୋ ! (୧୮)

ଯୌବନର କବିଙ୍କ କାମନା:—
"ମୋ ପାଇଁ ଥାଅ ଚିର କିଶୋରୀ ସୁନ୍ଦରୀଳା,
ଅଧରେ ହଳାହଳ ନୟନେ ବାଣ-ଛଡ଼ା,
ଚରଣେ ଚିର ନାଟ
ମରମେ ପ୍ରୀତି-ହାଟ
ଅଙ୍ଗ ପ୍ରତି ଲୋମେ କଟାରି,
ହେ ସଖି ! ମୁଁ ସେ ରୂପ-ଭିଖାରୀ । (୧୯)

'ପ୍ରେମ ଓ ଜରା' କବିତାରେ ରୋମାଣ୍ଟିକ କବିଙ୍କର ଦାର୍ଶନିକ ଚିନ୍ତାଧାରାର କ୍ଷୀଣ ଆଭାସ ଦେଖା ଦେଇଛି । ପ୍ରେୟସୀର ଜବା ପୁଷ୍ପସମ ଆରକ୍ତ ଅଧର, ଆଶ୍ୱିନ ଜୋଛନା ସମ ଲାବଣ୍ୟ ସରସ ସୁଗୋଲ ଚିକ୍କଣ ବାହୁ, ପ୍ରଣୟୀ ନିପୁଣ ହୃଦୟକୁ ଭୁଲାଇବାର ନୁହେଁ । ଜରାର ଆଗମନରେ ଯୌବନର ଶୈଥିଲ୍ୟ ଆସେ, ପ୍ରେମର ଉଷ୍ଣତା ତୁଟେ । ତଥାପି କବି ଆଶାହୀନ ନୁହନ୍ତି—ଚାତକ ବର୍ଷାଜଳ ପାଇଁ ବର୍ଷ ବର୍ଷ ଧରି ଅପେକ୍ଷା କଲା ପରି କବି ପ୍ରେୟସୀ ପାଇଁ ଜନ୍ମାନ୍ତରରେ ଭରସା ରଖିଛନ୍ତି । (୨୦) ପର ଜନ୍ମରେ ସଂଗୋପନେ ସହକାର ତଳେ ଦେଖା ହେବାର ଆଶା ବଳବତ୍ତର ହୋଇ ଉଠିଛି, 'ବସନ୍ତୋତ୍ସବ" ଏକ ବର୍ଣ୍ଣନା-ମୂଳକ କବିତା ହେଲେ ମଧ୍ୟ, ପ୍ରକୃତିରେ ବ୍ୟକ୍ତିତ୍ୱ ଆରୋପ କରାଯାଇଛି ।

---

୧୮—'ଭିକାରୀ କିଶୋରୀ' 'ହେମ ପୁଷ୍ପ' ମାନସିଂହ ଗ୍ରନ୍ଥାବଳୀ ୧ମ ଖଣ୍ଡ ପୃ—୧୩୬, ପ୍ରଥମ ସଂସ୍କରଣ

୧୯—ତତ୍ରୈବ

୨୦—'ପ୍ରେମ ଓ ଜରା'—ଧୂପ, ମାନସିଂହ ଗ୍ରନ୍ଥାବଳୀ ୧ମ ଖଣ୍ଡ ପୃ. ୨୬୭

ଯୁବକ ଯୁବତୀମାନେ ଯୌବନରେ ନିଜକୁ ସଜାଇ ନେଲାପରି ପ୍ରକୃତିରେ ତଦପେକ୍ଷା ଅଧିକ ସମାରୋହ ଚାଲିଛି । ପ୍ରକୃତିର ଆନନ୍ଦକୁ ଆକଣ୍ଠ ଉପଭୋଗ କରିବା ପାଇଁ କବିଚିତ୍ତ ବ୍ୟାକୁଳ—

"ମଳୟ ସମାନ ମିଶିଯାଅ ଫୁଲ ସଙ୍ଗରେ
ଉନ୍ମାଦେ ଜଣ ମଦ୍ୟପ ବନ ଭୃଙ୍ଗରେ ।
ଦିନକ ଲାଗି ରେ ଆମୋଦେ ହଜାଅ ଚିତ୍ତ ହେ,
ବୃଦ୍ଧ-ରୁଗ୍‌ଣ ଜୀବନେ ସେ ମହାବିତ୍ତ ହେ ।" [୨୧]

ପଥ ମଧ୍ୟରେ ସୁନ୍ଦରୀ ଷୋଡ଼ଶୀ ରୂପସୀକୁ ଦେଖି କବି ମନରେ ପ୍ରତିକ୍ରିୟା ହୋଇଛି 'ରୂପସୀର ପୂଜା' କବି ଯାହାର—

"ବକ୍ଷ ତେଜ ଝୁଲୁଥିଲା ମାଳ ଉତ୍ତରୀୟ
ଚରମେ ରୁଚିର ବେଣୀ ଦୋଳୁଥିଲା ଖସି,
ବିଞ୍ଚୁଇ ଚଞ୍ଚଳ ବାୟେ ସୌରଭ ଅମିୟ ।" [୨୨]

ଦେଖିଲା ପରେ ମଧ୍ୟ ଆଡ଼ ହୋଇ ଯାଇଛନ୍ତି, କିନ୍ତୁ ସେ ରୂପସୀ କବିଙ୍କର 'ସୁନ୍ଦରୀ' ସମ୍ବୋଧନକୁ ଉପେକ୍ଷା କରିଛି ।

ପ୍ରେମ ଅବିନଶ୍ୱର ଓ ଅଶେଷ, "ସୁନ୍ଦରେ ତୃପ୍ତିର ଅବସାଦ ନାହିଁ । ଯେତେ ଦେଖିଲେହେଁ ନୂଆ ଦିଶୁଥାଇ" [୨୩] ଭାବରେ ମାନସିଂହଙ୍କ ଦୃଷ୍ଟିରେ ପ୍ରେମର ଶେଷ ବା ପରିସମାପ୍ତି ନାହିଁ । ସଂଭୋଗ ବା ସନ୍ଦର୍ଶନରେ ଏହା ଊଣା ହୁଏ ନାହିଁ । କବିଙ୍କ ଭାଷାରେ—

---

୨୧—ବସନ୍ତୋତ୍ସବ ହେମପୁଷ୍ପ ମାନସିଂହ ଗ୍ରନ୍ଥାବଳୀ ୧ମ ଖଣ୍ଡ ପୃଃ ୧୫୨

୨୨—ରୂପସୀର ପୂଜା— ,, ,, ,, ପୃ. ୧୬୪

୨୩—'ଚିଲିକା'— ରାଧାନାଥ ଗ୍ରନ୍ଥାବଳୀ (୧୯୬୬) ପୃ. ୧୫୨ କଟକ ଟ୍ରେଡ଼ିଂ କମ୍ପାନୀ

"ପ୍ରେମ କି ଥରେ ଆସି, ଥରକେ ହୁଏ ଶେଷ,
ଜଣକୁ ଦେଲେ ସଁପି, ନ ରହେ ଅବଶେଷ ?
ପ୍ରଥମ ଭେଟ ସାଥେ ସରେ କି ସଞ୍ଚୟ
ଆଉକି ଥରେ ବୁକୁ ନହୁଏ ରସମୟ ?" (୨୪)

ରୂପାନ୍ୱେଷୀ କବି ଜୀବନରେ ଏହିପରି ଅନେକ ପ୍ରେୟସୀଙ୍କୁ ଭେଟିଛନ୍ତି; କିନ୍ତୁ କାହାରି ପ୍ରତି ମମତାରେ ଊଣାଧିକ ଘଟିନାହିଁ—

"କେତେ ଯେ ଗୋ ଏଇପରି ପ୍ରଣୟ ଭିକାରିଣୀ
ଭିକ୍ଷାକରି ମୋର ପ୍ରାଣକୁ ନେଲେ କିଣି ।
ସବୁରି ଦାବି ଅଛି, ଫେରିଗୋ ଯିବେ କିପାଁ,
ପ୍ରଣୟ ବିପଣିରେ ସରେ କି ପ୍ରାଣ-ବିକା ?" (୨୫)

କବିଙ୍କର ଆଦ୍ୟ ଯୌବନରେ ସାକ୍ଷାତ ପାଇଥିବା ପଲ୍ଲୀପ୍ରିୟାର ସ୍ମୃତି ଜାଗ୍ରତ ହୋଇଛି । ମଥାରେ କଳସୀଭରା, ବକ୍ଷରେ ଜଡ଼ିତ ଆର୍ଦ୍ର ବସନ, ପୁନ୍ନାଗ ବନରେ ଫଳ ଆହରଣ କାଳର ଉନ୍ମୁକ୍ତ ବକ୍ଷ କବିଙ୍କୁ ପାଗଳ କରି ଦେଇଛି । ତା'ର ରୂପର ଆଲୋକ ରସିକ ମନକୁ ବିହ୍ୱଳ କଲେ ମଧ୍ୟ—

"କୁସୁମ ପରି ସେ ଆପଣାର ରୂପ ଜାଣେଇ ନାହିଁ;
ସେଥିଲାଗି ଘେନା ଆକର୍ଷଣ ସେ ରୂପପାଇଁ ।" (୨୬)

ପଲ୍ଲୀ ବାଳାର ରୂପରେ କବି କସ୍ତୁରୀର ସନ୍ଧାନ ପାଇଛନ୍ତି । କର୍ମକ୍ଳାନ୍ତ ତରୁଣୀ ନଗ୍ନ ବକ୍ଷରେ ବୃକ୍ଷ ଗୁମ୍ଫାରେ ଶୟନ କରିଛି । ସହସା କବି ସେଠାରେ ଉପସ୍ଥିତ ହୋଇ ତା'ର ହୃଦୟ ଦେବତା ବିଷୟରେ

---

୨୪—'ପ୍ରେମର ପରମାପ', 'ଧୂପ' ମାନସିଂହ ଗ୍ରନ୍ଥାବଳୀ ୧ମ ଖଣ୍ଡ ପୃ. ୧୨୦

୨୫—'ପ୍ରେମର ପରମାପ' -'ଧୂପ' ମାନସିଂହ ଗ୍ରନ୍ଥାବଳୀ ୧ମ ଖଣ୍ଡ ପୃ. ୧୨୧

୨୬—'ପଲ୍ଲୀପ୍ରିୟା', 'ମାଟିବାଣୀ' ,, ,, ପୃ: ୩୭୬

ଜିଜ୍ଞାସା କରିଛନ୍ତି । ସରଳା ପଲ୍ଲୀବାଳା କିନ୍ତୁ ବୁଝି ନ ପାରି ଘରକୁ ଫେରିଛି । କବି ପ୍ରାଣରେ ପ୍ରଶ୍ନ ଉଠିଛି—

"ବାଣମାରି ଯଦି ନ ଶିଖିଲ, କଳା ନୟନ କିଆଁ ?
ପ୍ରତିମା ନଥାଇ କି ଲଭି ରଖିଗୋ ଶୂନ୍ୟ ହିଆ ?
ଏକଥା କି ଆହା ଜାଣେ ଗୋ ରୂପସୀ ପଲ୍ଲୀପ୍ରିୟା ? (୨୭)

ପ୍ରାକ୍ ବିବାହ ପ୍ରେମ କବିତାମାନଙ୍କ ମଧ୍ୟରୁ 'ରୂପ ଦେବତା', 'ଯଥାସ୍ଥାନ' 'ସାଫୋର ବ୍ୟଥା', 'ରକ୍ତ', 'ପ୍ରଣୟିତପୁଷ୍ପ' ଓ 'କବିର ନିମନ୍ତ୍ରଣ' ଆଦି କବିତାରେ ରୂପପ୍ରାଣତା ଦେଖା ଦେଇଛି ।

ମାନସିଂହଙ୍କ ରୂପାନ୍ୱେଷଣ ଚେତନା ବିବାହ ପରବର୍ତ୍ତୀ କବିତା-ମାନଙ୍କରେ ସାମାନ୍ୟ ଶିଥିଳ ହୋଇଯିବା ପରି ମନେହୁଏ । ଏଥିରେ ଚିତ୍ତବେଗ ପରିବର୍ତ୍ତେ ଅତୀନ୍ଦ୍ରିୟ ଦୃଷ୍ଟି ରହିଛି । 'ହେମଶସ୍ୟ'ରେ ଏହାର ଅଧିକ ଦୃଷ୍ଟାନ୍ତ ମିଳେ ।

ବିବାହ ପରେ କବି ଚିଲିକା ମଧ୍ୟ ଦେଇ ପତ୍ନୀଙ୍କ ସହିତ ଗୃହକୁ ପ୍ରତ୍ୟାବର୍ତ୍ତନ କରିଛନ୍ତି । ଚିଲିକାର ନୀଳ ଜଳରାଶି, ନୀଳ ଚହବାଳର ଅନିନ୍ଦ୍ୟ ଶୋଭାରେ କବିବର ରାଧାନାଥଙ୍କ ଦୃଷ୍ଟି ଇତିହାସକୁ ଫେରି-ଯାଇଥିଲା । ଦେଶପ୍ରାଣ ଗୋପବନ୍ଧୁ ରେଳ ଉପରୁ ଚିଲିକାର ଅପରୂପ ଶୋଭା ଦେଖିଥିଲେ ହେଁ ସମସ୍ତ ଶୋଭା ଦେଖି ନପାରି କ୍ଷୋଭ ପ୍ରକାଶ କରିଛନ୍ତି । ମାନସିଂହ ପ୍ରେୟସୀଙ୍କର ନୀଳ ନୟନ ସହିତ ହ୍ରଦର ନୀଳିମା ତୁଳନା କରି ଅଗ୍ନୋମୁଖରଥକୁ ରହିବା ପାଇଁ ଅନୁରୋଧ କରିଛନ୍ତି । ରାଧାନାଥ, ଗୋପବନ୍ଧୁଙ୍କ ଅପେକ୍ଷା କବିଙ୍କର ଦୃଷ୍ଟିକୋଣ ଅଧିକ ବାସ୍ତବାଭି-ମୁଖୀ । 'ନବଦୃଷ୍ଟି', 'ବଧୂ ପ୍ରବେଶ', 'ଯୁଗଳ ଜୀବନ', 'ପ୍ରେମସ୍ପର୍ଶ', 'ସରମ' 'ରୂପାଲୋକ', ହେମନ୍ତ ପ୍ରଭାତ' ଆଦି କବିତା ଗୁଡ଼ିକ କବିଙ୍କ ବିବାହର ଠିକ ପରବର୍ତ୍ତୀ ରଚନା । ଏହି କବିତା ଗୁଡ଼ିକରେ ବାସ୍ତବତା

---

୨୭ —ପଲ୍ଲୀପ୍ରିୟା—ମାଟିବାଣୀ ମାନସିଂହ ଗ୍ରନ୍ଥାବଳୀ ପୃ: ୬୭୭

ଦେଖାଦେବା ସଙ୍ଗେ ସଙ୍ଗେ ସୌନ୍ଦର୍ଯ୍ୟଚେତନାର ଦୃଷ୍ଟିଭଙ୍ଗୀ ସ୍ପଷ୍ଟ । ସାଧାରଣ ଲୋକେ ଯେତେବେଳେ ଦାମ୍ପତ୍ୟ ଜୀବନର ପ୍ରଥମ ଅନୁଭୂତିକୁ ଗୋପନୀୟ ରଖିଥାନ୍ତି, ପ୍ରେମିକ କବି ମାନସିଂହ ନିଜର ଅନୁଭୂତିକୁ ପ୍ରକାଶ କରି ଦେଇଛନ୍ତି କବିତା ମାଧ୍ୟମରେ ।

କବି ଗୃହରେ ନବବଧୂର ପ୍ରବେଶ, ଯୁଗଳ ଜୀବନର ପ୍ରାଣମୟ ଅନୁଭୂତି ପ୍ରଥମ ପ୍ରେୟସୀର ସ୍ପର୍ଶ, ଜ୍ୟୋତ୍ସ୍ନାସ୍ନାତ ରଜନୀରେ ପ୍ରେୟସୀର ଅନାବୃତ ସ୍ୱର୍ଣ୍ଣ ଦେହରେ ପ୍ରେମାର୍ଦ୍ର ପ୍ରଣୟୀ ସମ ଚନ୍ଦ୍ରକିରଣର ଚୁମ୍ବନର ବର୍ଣ୍ଣନା ବାସ୍ତବିକ ମନୋମୁଗ୍ଧକର । ନାୟିକାର ରୂପାଲୋକରେ ଅନ୍ଧକାର କକ୍ଷ ମଧ୍ୟ ଆଲୋକିତ ହୋଇଯାଇପାରେ :—

"ପ୍ରଦୀପ ଜଳୁଛି କହିଁ ? ଲିଭାଅ ତାହାରେ
ତବ ରୂପ-ଶିଖା ଜଳୁ ଘନ ଅନ୍ଧକାରେ ।
ଠିଆହୁଅ କକ୍ଷ ମଧ୍ୟେ, ଧୀରେ ଧୀରେ ଧୀରେ,
ଅଙ୍ଗ ଆବରଣ, ଅଙ୍ଗୁ ତେଜି ଏ ମନ୍ଦିରେ । (୨୮)

ହେମନ୍ତ ସକାଳର ସୂର୍ଯ୍ୟଙ୍କର ଅରୁଣ ଆଭାରେ ଶ୍ୟାମଳ ପ୍ରକୃତି, ବନସ୍ପତିର ଶୀର୍ଷଦେଶ, ଶ୍ୟାମ ଘାସପତ୍ରରେ ସ୍ୱର୍ଣ୍ଣର ଏକ ବନ୍ୟା ଖେଳି ଯାଇଥିଲି । ଅଦୂର କାନନରେ ବିରହିଣୀ କପୋତୀର ଏକ କରୁଣ ଝଙ୍କାର ଉଠୁଥିଲି —

× × × ଏକାଳେ ସଦନେ
ପ୍ରବେଶିଲି ସଦ୍ୟସ୍ନାତା ପ୍ରେୟସୀ ମୋହର,
ଭାବିଲି ସେ ଏକ ଅଂଶ ସ୍ୱର୍ଣ୍ଣ ହେମନ୍ତର ।" (୨୯)

ନୂତନ ବସନ୍ତରେ ପ୍ରକୃତିରେ ମିଳନର ଜୁଆର ଉଠିବା ସଙ୍ଗେସଙ୍ଗେ କବି ପ୍ରାଣରେ ତା'ର ଅନୁଭୂତି ଜାଗ୍ରତ ହୋଇଅଛି ।

---

୨୮—'ରୂପାଲୋକ'—'ହେମଶସ୍ୟ' ପୃ. ୧୮୬ ମାନସିଂହ ଗ୍ରନ୍ଥାବଳୀ ୧ମ ଖଣ୍ଡ
୨୯—'ହେମନ୍ତ ପ୍ରଭାତ'— ,, ପୃ. ୧୮୩ ,,

"ଆଜ ପୁଣି ସେ ଚନ୍ଦ୍ରିକା ଆସିଛି ଭୁବନେ
ପୁଣି ଗୋ ପିୟାସୀ ମୁହିଁ ନିବିଡ଼ ମିଳନେ,
ପାଦେ ଜଳିବା ଜଞ୍ଜାଳ,
ଠେଲିଦେଇ, ଆସକ୍ଷଣେ ଭୋଗିବା ଏକାଳ ।" (୩୦)

ବିବାହୋତ୍ତର ଜୀବନରେ "ଜ୍ୟୋତ୍ସ୍ନା ଭୋଗ"ର ଜୀବନ୍ତ ଅନୁଭୂତି ଏଠାରେ ବର୍ଣ୍ଣିତ ।

**ତାରୁଣ୍ୟ ଚିତ୍ତବେଗ** - ଯୌବନର ପ୍ରାରମ୍ଭରେ ତରୁଣ ତରୁଣୀ ନାନା ପ୍ରକାର କଳ୍ପନାରେ ମଜ୍ଜି ରହନ୍ତି । ମନରେ କାଉଁଶ ପରି ଲାଗେ, ଦେହରେ ଶୃଙ୍ଖଳା ଓ ପ୍ରାଣରେ ଉଦ୍ଦୀପନା ଦେଖାଦିଏ । ଯୁବକ ଯୁବତୀ ପାଇଁ ଓ ଯୁବତୀ ଯୁବକର ସାନ୍ନିଧ ପାଇଁ ବ୍ୟଗ୍ର ହୋଇ ଉଠନ୍ତି । ସେମାନଙ୍କର ପ୍ରଣୟ ନିକଟରେ ସଂସାରର ସବୁ କିଛି ତୁଚ୍ଛ, ହେୟ । ପ୍ରେୟସୀର ମୁଖ ଚୁମ୍ବନରେ ହିଁ ତାଙ୍କର ସ୍ୱର୍ଗ ସମ୍ପଦ ପ୍ରାପ୍ତି ।

ଭାରତୀୟ କାବ୍ୟ ପରମ୍ପରାରେ କବିମାନେ ମନର ଭାବକୁ ପ୍ରତ୍ୟକ୍ଷ ଭାବରେ ପ୍ରକାଶ ନକରି ଧର୍ମର ଘୋଡ଼ଣୀ ମଧ୍ୟରେ ପ୍ରକାଶ କରୁଥିଲେ । ସମାଜର ସମ୍ମୁଖୀନ ହୋଇ ଯୁବ ପ୍ରାଣର ପ୍ରତ୍ୟକ୍ଷ ପ୍ରକାଶ ବ୍ୟକ୍ତ କରିବା ପାଇଁ ସାହସ କରୁନଥିଲେ । ମାନସିଂହହିଁ ପ୍ରଥମ ଓଡ଼ିଆ କବି ଯେ କି ନିଜର ମନର ବେଦନାକୁ ନିର୍ଭୟରେ ପ୍ରକାଶ କରିପାରିଛନ୍ତି । ନିଜ ତାରୁଣ୍ୟ ଚିତ୍ତବେଗକୁ ରାଧାକୃଷ୍ଣ ଶିବପାର୍ବତୀ କାଳ୍ପନିକ ରାଜପୁତ୍ର ରାଜକନ୍ୟା ନାମରେ ଚିତ୍ରଣ ନକରି ତାଙ୍କର ମନର ମାନସୀର ରୂପ ଉପସ୍ଥାପିତ କରିଛନ୍ତି । ଏ କବିତାମାନଙ୍କର ନାୟକ ଅଭିଶପ୍ତ ଗନ୍ଧର୍ବ ଦେବତା କିମ୍ବା କାଳ୍ପନିକ ରାଜ୍ୟର ରାଜକୁମାର ନୁହନ୍ତି, ସବୁଜ ଯୁଗର କାବ୍ୟନାୟକ ପରି କବି ନିଜେ କାବ୍ୟ କବିତାର ନାୟକ । ତାଙ୍କ ପ୍ରେମକବିତାମାନଙ୍କ ମଧ୍ୟରୁ ନିମ୍ନଆଲୋଚିତ ଗୀତିକବିତାମାନଙ୍କରେ ମାନସିଂହଙ୍କର ତରୁଣ ଚିତ୍ତର ଆବେଗ ଦେଖାଯାଏ ।

---

୩୦ —'ଜ୍ୟୋତ୍ସ୍ନାଭୋଗ' ହେମଶସ୍ୟ ପୃ. ୨୦୬ ମାନସିଂହ ଗ୍ରନ୍ଥାବଳୀ ୨ୟ ଖଣ୍ଡ

'ତରୁଣ କବିର ଆଶା' କବିତାରେ ତରୁଣ ଜୀବନର ଆଶା ଆକାଙ୍‌କ୍ଷା, କଳ୍ପନା ଉଚ୍ଛ୍ୱାସ ପ୍ରତିଫଳିତ ହୋଇଛି । ଯୁବକବିଙ୍କର ପ୍ରେମ ଓ ଜୀବନର ପରସ୍ପରର ମନୋବୃତ୍ତିର ଉନ୍ମେଷ ସଙ୍ଗେ ବାସ୍ତବ ତଥା କଳ୍ପନା-ଜଗତର କଠୋର ସଂଘର୍ଷ ପରିଲକ୍ଷିତ ହୁଏ । କବିତାର ପ୍ରଥମାଂଶରେ କଳ୍ପନାର ପ୍ରାବଲ୍ୟ ଓ ପ୍ରେୟସୀର ସାନ୍ନିଧ୍ୟ ଚିନ୍ତା କରି 'ସମବୟସୀ' 'ହୃଦୟ ରାଧା'ର କଣ୍ଠରେ ଅହରହ ମୁରଲୀ ସ୍ୱର ଶୁଣାଇ—

"ଅସରି ଶୁକ୍ଳା ଯାମିନୀ ତଳେ
ସେ ରାଧା କୋମଳ ଜଘନ ପରେ
ଜୀବନ ମରଣ ଯାଆନ୍ତି ଭୁଲି
ସପନ ପରି ।" (୩୧)

ପୁନଶ୍ଚ—

ମାନସୀ ଆସନ୍ତା ହଲାଇ ବେଣୀ
ଚତୁରେ ଚଳାଇ ନୟନ ବେନୀ
ଲଗାଇ ଦିଅନ୍ତା ପ୍ରିୟରେ ତା'ର
କୁସୁମ ହାର । (୩୨)

ଏହି କବିତାର ଅଧିକାଂଶ ସ୍ଥଳରେ ଏକାଦଶ ଶତକର ବିଖ୍ୟାତ ପାର୍ଶୀ କବି ଓମାର ଖୟାମଙ୍କର ପ୍ରେମ କବିତାର ଛାୟା ପରିଲକ୍ଷିତ ହୁଏ । ଓମାରଙ୍କ 'ରୁବାୟତ' କବିଙ୍କର ଅତି ପ୍ରିୟ ଗୀତିକା ଥିଲି । (୩୩)

ପାଶରେ ଥାଆନ୍ତା ରସ କବିତା
ଚିର-ଯଉବନ ପ୍ରଣୟ ଗୀତା
ପ୍ରେୟସୀ ଗାଆନ୍ତା, ଚୁମ୍ବନ୍ତି ମୁଖ
ପୂରନ୍ତା ବୁକ ! (୩୪)

---

୩୧—ତରୁଣ କବିର ଆଶା—ଧୂପ ପୃ. ୭୨ ଗ୍ରନ୍ଥାବଳୀ ୧ମ ଖଣ୍ଡ ।

୩୨—ତତ୍ରୈବ

୩୩—'ଓମାର ଗୀତିକା' ମୁଖବନ୍ଧ—ଡଃ ମାୟାଧର ମାନସିଂହ
ଅନୁବାଦ—ଜାନକୀବଲ୍ଲଭ ମହାନ୍ତି

୩୪—'ତରୁଣ କବିର ଆଶା'—'ଧୂପ' ପୃ. ୭୩ ମାନସିଂହ ଗ୍ରନ୍ଥାବଳୀ ୧ମ ଖଣ୍ଡ

ଓମାର ଖୟ୍ୟାମଙ୍କ ଗୀତିକା—

"Here with a loaf of bread
beneath the bough
A flash of wine, a book of verse
and thou,
Beside me singing in the wilderness
And wilderness is paradise enow." (୩୫)

'ତରୁଣ କବିର ଆଶା' କବିତାର ଶେଷ ଅଂଶରେ କବିଙ୍କ ସ୍ୱର ବାସ୍ତବାଭିମୁଖୀ । କବିଙ୍କ ମନର ରାଧା, ବାଲ୍ୟକାଳର ସାଥୀ ଅନ୍ୟର ପ୍ରଣୟିନୀ ହୋଇଯାଇଛି । ନିଜର ଦାରିଦ୍ର୍ୟ ସହିତ ତରୁଣ ପ୍ରାଣର ଉଚ୍ଛ୍ୱାସକୁ ବର୍ଣ୍ଣନା କରିବାକୁ ଯାଇ କହିଛନ୍ତି—

ମଣିଷ ହୋଇ ତା' ଏତେ ଈଶ୍ୱର
ଧରାରେ ସରଗ ସୃଜନା ତା'ର
ଏ କଳପନାକୁ ପାଏକି ଭାଷା,
ହାଇରେ ତରୁଣ କବିର ଆଶା ! (୩୬)

ଭଲପାଇବା ମନୁଷ୍ୟର ସ୍ୱାଭାବିକ ଧର୍ମ । କେହି ଭଲପାଇବାର ଜାଣିଲେ ଯୁବକ ଉଦ୍‌ବେଳିତ ହୋଇ ଉଠେ, ନାରୀ ନିଜର ରୂପକୁ ସାର୍ଥକ ମନେ କରେ । "ସଂସାରରେ ମତେ କେହି ଭଲ ପାଏ, ମତେ କେହି ଚାହେଁ, ମୋର କେହି ସମର୍ଥନ କରେ ।" ଏହା ସେହି ଆତ୍ମିକ ଅହଂର ପରିପ୍ରକାଶ ଛଡ଼ା ଆଉ କ'ଣ ! ମାନସିଂହଙ୍କର 'ଗୋପନ କଥା' 'ପ୍ରଣୟ ଗର୍ବ', 'ମତେ ଜଣେ ଭଲ ପାଏ' କବିତାରେ ଏହି ସାର୍ବଜନୀନ ସତ୍ୟ ପ୍ରତିଫଳିତ ହୋଇଛି—

---

୩୫ –'ରୁବାୟତ' ଓମାର ଖୟାମ ଗୀତିକା ନଂ ୧୧

୩୬ --ତରୁଣ କବିର ଆଶା, 'ଧୂପ' ପୃ ୭୪ ମାନସିଂହ ଗ୍ରନ୍ଥାବଳୀ ୧ମ ଖଣ୍ଡ

"ଜୀବନେ ଯେବେ କିଛି ଥାଏ ମୋ ଗଉରବ
ଶ୍ରେଷ୍ଠ ତହିଁ ଗଣି, ପ୍ରଣୟ-ଦାନ ତବ,
ତା' ଯେଜନ ଏ ଜଗତେ ଜାଣିବେ ଲୋକେ ମୋତେ
ନ' କହି ତା' କିପରି ରହିବି ମୁଁ ନୀରବ
ସେ ପରା ହେଲା ମୋର ଶ୍ରେଷ୍ଠ ଗଉରବ।" (୩୭)

ପୁନଶ୍ଚ—

"ଦୁର୍ଦ୍ଦିନେ ପ୍ରାଣ ଆଉ ଡର ନାହିଁ ପାଏ,
ଜାଣିଲିଣି ଯେଣୁ ଜଣେ ମତେ ଭଲପାଏ।" (୩୮)

'ଗୋପନ କଥା' କବିତାରେ କବି ନିଜ ପ୍ରଣୟକୁ ପ୍ରକାଶ କରିବା ମଧ୍ୟରେ ଆନନ୍ଦ ପାଇବା ସ୍ଥଳେ ଉକ୍ତ ପ୍ରଣୟକୁ ଗୁପ୍ତ ରଖିବାକୁ ଚାହୁଁଛନ୍ତି।

"ତୁମର ମୋହର ମଧ୍ୟେ ତୁମ ମୋର କଥା
ରହୁ ପ୍ରିୟେ, ନ ଜାଣୁ ତା ଇତର ଜନତା।
ସଂସାର ତା' ଗର୍ବ ନେଇ କରୁ ତା' ବିଚାର,
ତୁମ ବକ୍ଷତଳେ ମୋର ସକଳ ସଂସାର।" (୩୯)

'ଗୀତରେଣୁ'ର ପ୍ରଣୟ କବିତାମାନଙ୍କରେ ଶରୀରି ଆବେଗ ଦେଖା ଦେଇଥିଲେହେଁ ତାହା ବିଶେଷ ଉଗ୍ର ନୁହେଁ। "ପୁଷ୍ପର ସ୍ୱପ୍ନ" (୧୯୨୭), 'ଉନ୍ମନ'(୧୯୨୮), 'ଉତ୍କଳ ଯୌବନ' (ସମ୍ଭବତଃ ୧୯୩୦-୩୧) ରେ ଚିତ୍ତବେଗର ପୂର୍ବାଭାସ, ଦେଖାଦେଇଛି। 'ଉତ୍କଳ ଯୌବନ' କବିତାରେ ତାହା ସ୍ପଷ୍ଟ ହୋଇଛି—

୩୭—'ଗୋପନ କଥା' 'ଧୂପ' ପୃ ୭୭ ମାନସିଂହ ଗ୍ରନ୍ଥାବଳୀ ୧ମ ଖଣ୍ଡ
୩୮—'ଜଣେ ମତେ ଭଲପାଏ' 'ଧୂପ' ପୃ.୧୧୪ ମାନସିଂହ ଗ୍ରନ୍ଥାବଳୀ ୧ମ ଖଣ୍ଡ
୩୯—ପ୍ରଣୟ ଗର୍ବ ଧୂପ ପୃ. ୧୧୨ ମାନସିଂହ ଗ୍ରନ୍ଥାବଳୀ ୧ମ ଖଣ୍ଡ

ଅଥବା ସେ କୁଞ୍ଜବନେ ବକୁଳର ସୁରଭିତ ତଳେ
ବସିଥାନ୍ତି ବେଗି ଗଣ୍ଡେ ଜ୍ୟୋତ୍ସ୍ନା ଚୁମ୍ବି ଗୁପ୍ତାର ଗହଳେ,
ଏ କାଳେ ସହସା ପଛୁ ଅଚହ୍ନା କେ ମଧୁର ପ୍ରେୟସୀ
ମୃଦୁ ହସି ହସି
ଆପଣାର ପରି କର-ସ୍ପର୍ଶ ତା'ର ଦିଅନ୍ତା ମୋ' ଗଳେ ।"
(୪୦)

ତରୁଣ ପ୍ରେମିକ ନିକଟରେ ପ୍ରେମିକାର ସମସ୍ତ ଜିନିଷରେ କିଛି ନା କିଛି ବିଶେଷତ୍ୱ ରହିଛି । ପ୍ରେମିକାର ଗୀତ, ହସ, ଡାକ, ଭାଷା, ପ୍ରତ୍ୟେକରେ ସେ ପାଏ ଆନନ୍ଦ—

"ସକଳେ ଡାକନ୍ତି 'ତମେ' 'ତମେ' ବୋଲି
ସେ 'ତମେ'ର ମୂଲ ନାହିଁ
ତମେ ଯେବେ ମତେ 'ତମେ' ବୋଲି କହ
ଏତେ ମିଠା କାହିଁ ପାଇଁ ?" (୪୧)

'ପାଶୋର ପ୍ରଣୟ' କବିତାରେ ନାୟକ-ନାୟିକାର ପ୍ରେମରେ ଆଶଙ୍କା ପ୍ରକାଶ କରିଥିଲେ ମଧ୍ୟ ନିରାଶ ନୁହନ୍ତି । ନାୟିକାର ପ୍ରେମ ଅତି ଚପଳ । 'ଭଲପାଅ' କବିତାରେ ପ୍ରେୟସୀକୁ ବାରମ୍ବାର ଭଲପାଇବାର ସ୍ଥାୟିତ୍ୱ ଉପରେ ଜିଜ୍ଞାସା କରିଛନ୍ତି । ଏଠାରେ ପ୍ରେମିକା ଯଦି ଭଲ ନପାଏ ବୋଲି କହେ, ତେବେ ଜୀବନର ପାନ ରସହୀନ ହୋଇଯିବ । ମୃତ୍ୟୁକୁ ସେ ଆଲିଙ୍ଗନ କରିନେବ । ଶେଷରେ କବି ନିରାଶ ନୁହନ୍ତି; କେବଳ ସ୍ମରଣ କିମ୍ବା ନାମ କୀର୍ତ୍ତନରେ ପ୍ରେମର ବେଦନା ନଷ୍ଟ ହୁଏ ନାହିଁ; ତା'ର ଦୈହିକ ବା ଶାରୀରିକ ଅଭିବ୍ୟକ୍ତି ମଧ୍ୟ ରହିଛି—

---

୪୦ 'ଉତ୍ପଳ' 'ଯୌବନ ସ୍ୱପ୍ନର' କବିତା ପୃ. ୮୯ ମାନସିଂହ ଗ୍ରନ୍ଥାବଳୀ ୧ମ ଖଣ୍ଡ

୪୧ – ପ୍ରେମର ଭଷା ଧୂପ ପୃ. ୧୨୭ ମାନସିଂହ ଗ୍ରନ୍ଥାବଳୀ ୧ମ ଖଣ୍ଡ

ତୋଳ ଗୋ ଓଢ଼ଣା ଅନାଅ ନୟନେ ମୋର
ଗଣ୍ଡେ ମୋ ଲାଗୁ ତୁମର କଣ୍ଠଦୋଳ
ପ୍ରେମ କର ସଖି କର ପୁଣି ଅଭିମାନ
ହୃଦୟର ଗୋପନ କଥା ଶୁଣିବାକୁ
କର ମୋତେ ଆହ୍ୱାନ । (୪୨)

'ଶଙ୍କିତ ସ୍ନେହ' କବିତାରେ ପ୍ରେମିକାର ସମସ୍ତ ପ୍ରକାର ଦାବୀ ମାନନେବାକୁ ଓ ସେବା କରିବା ପାଇଁ ମଧ୍ୟ ସେ ଆଗେଇ ଆସିଛନ୍ତି । ପ୍ରେୟସୀର ତୃପ୍ତି ପାଇଁ ପଦଧୂଳି ଝାଡ଼ିବା, ତା'ର ସୁଖ ପାଇଁ ଦୂରକୁ ଚାଲିଯିବା, ପ୍ରଣୟର ପୂଜା ପାଇଁ ନୟନର ନୀର ଦେବା, ତା' ପାଇଁ ଜୀବନର ସମସ୍ତ ଗୌରବ ଓ ଅପମାନକୁ ବରଣ କରିବା ପାଇଁ ପ୍ରସ୍ତୁତ । ଯଦି ପ୍ରେୟସୀ କହେ—

× × × ଏତେ ସେବା କାହିଁ ପାଇଁ
ମୁଁ କହିବ ରାଣୀ, ଏଥୁ ବଳି ସୁଖ ନାହିଁ !" (୪୩)

ଶେଷରେ 'ପ୍ରଣୟ ସାଧନା' କବିତାରେ କବି ପ୍ରେମିକାକୁ ସମସ୍ତ କାର୍ଯ୍ୟରେ ସାହସୀ ହୋଇ ଆଗେଇ ଯିବା ପାଇଁ କହିଛନ୍ତି—

"ସଖି, ସତୀସମ ଲାଞ୍ଛନା ଯଦି ସହ,
ଶିବ ସମ ମୁହିଁ ପ୍ରଣୟ-ସାଧନା ଜାଣେ
ଅପମାନଭୟରେ ପଥେ ଯଦି ଥକି ରହ
ମସ୍ତକେ ବହି, ମହି ମୁଁ ଭରିବ ଗାନେ ।" (୪୪)

**ଦେହବାଦିତା : ପ୍ରାକ୍-ବିବାହ ପ୍ରେମ**—'ଧୂପ' କବିତା ଗ୍ରନ୍ଥର କେତେକ କବିତାରେ ମାନସିଂହଙ୍କ ପରକୀୟା ଏବଂ ପ୍ରାକ୍ ବିବାହ

୪୨ –'ଭଲପାଅ' 'ଧୂପ' ମାନସିଂହ ଗ୍ରନ୍ଥାବଳୀ ପ୍ରଥମ ଖଣ୍ଡ ପୃଃ ୧୨୪
୪୩—'ଶଙ୍କିତ ସ୍ନେହ' 'ଧୂପ', ମାନସିଂହ ଗ୍ରନ୍ଥାବଳୀ ୧ମ ଖଣ୍ଡ ପୃ. ୧୨୨
୪୪ ପ୍ରଣୟ ସାଧନା ଧୂପ ମାନସିଂହ ଗ୍ରନ୍ଥାବଳୀ ୧ମ ଖଣ୍ଡ ପୃ. ୮୫

ପ୍ରେମର ଶ୍ରେଷ୍ଠ ନିଦର୍ଶନ ରହିଛି । ପୂର୍ବରୁ ସୂଚୀତ ହୋଇଛି, ପ୍ରାକ୍-ବିବାହ ପ୍ରେମ୍ ସାହିତ୍ୟ କ୍ଷେତ୍ରରେ ନୂଆ ନୁହେଁ । ଧର୍ମ ଓ ଦେବତାର ଆବରଣ ଭିତରେ ଏହା ସହଜ ସ୍ୱୀକୃତି ଲାଭ କରୁଥିଲା ଓ କବି ଜୀବନର ପରକୀୟା ପ୍ରୀତି ରୂପାନ୍ତରିତ ଭାବରେ ପ୍ରକାଶିତ ହୋଉଥିଲା । ନିଜର ପ୍ରେମକୁ ସାହିତ୍ୟ ରୂପ ଦେବାକୁ ସାମାନ୍ୟ ଚେଷ୍ଟା ହୋଇଥିଲା । ମାନସିଂହହିଁ ପ୍ରଥମ କବି ଯେ ନିଜର ପ୍ରେମକୁ ସାହିତ୍ୟିକ ବଳିଷ୍ଠ ରୂପ ଦେବାକୁ ଚେଷ୍ଟା କରିଛନ୍ତି । ଏହା ଏକ ନୂତନ ଦୃଷ୍ଟିକୋଣ ହୋଇଥିବାରୁ, ତଥାକଥିତ ନୀତିବାଗୀମାନେ ନାସାଗ୍ର କୁଞ୍ଚନ କରିଥିଲେ, ପ୍ରତିବାଦର ସ୍ୱର ଉଠାଇ-ଥିଲେ ।

କବି ପ୍ରତ୍ୟେକ କବିତାରେ ପ୍ରଣୟିନୀ ପାଖରେ କୃତଜ୍ଞ । ପ୍ରଣୟିନୀର ହୃଦଖୋଲା ପ୍ରୀତିଭରା ସମ୍ଭାଷଣ ଅକପଟ ପ୍ରୀତିଦାନ ତାଙ୍କ ମନରେ ଗଭୀର ରେଖାପାତ କରିଛି । କବିଙ୍କ ଦୃଷ୍ଟିରେ ପ୍ରେମ ସବୁ ଅବସ୍ଥାରେ କଳଙ୍କ ଶୂନ୍ୟ । ପ୍ରକୃତ ପ୍ରେମରେ ସ୍ୱକୀୟା ପରକୀୟା ଭେଦ ନଥାଏ । ପ୍ରଣୟ ପାଖରେ ସତୀ ଅସତୀର ତଫାତ୍ ନାହିଁ—

ହୃଦୟେ ହୃଦୟ ମିଶିବାକୁ ଗଲେ
ଧର୍ମ ରହେନା ପୁଣି ମହୀତଳେ
ଏକ ଆନ ପାଇଁ ଭାବିବା ଗୋ ପାପ-କୀରତି,
ହେ ସମବୟସୀ, ତୁମର ମୋର ଯେ ପୀରତି ।” (୪୫)

ସତୀ-ଅସତୀ କେବଳ ସାମାଜିକ କଳ୍ପନା । ଏଥିରେ ବାସ୍ତବତା କିଛି ନାହିଁ; ପ୍ରେମିକ ପ୍ରେମିକା ପରସ୍ପର ପାଇଁ ଯଦି ଅଶ୍ରୁମୋଚନ କରିପାରିଲେ, ତାହାହିଁ ସାର୍ଥକ ପ୍ରେମ । କବିଙ୍କ ଭାଷାରେ—

ନକହ ପୁରୁଣା ପୋଥି ଏଥେ କିବା କହିଲା,
ମୋ ନୟନେ ସେତ ପରମ ପୂଜ୍ୟା ମହିଳା ।” (୪୬)

୪୫ – ‘ପାପ ଓ ପ୍ରେମ’ ‘ଧୂପ’, ମାନସିଂହ ଗ୍ରନ୍ଥାବଳୀ ୧ମ ଖଣ୍ଡ
୪୬— ତତ୍ରୈବ ପୃ. ୭୬

କେତେ ରସିକ ଧନିକମାନଙ୍କୁ ଉପେକ୍ଷା କରି, ପ୍ରଣୟିନୀ ପ୍ରେମ ଦାନ କରିପାରିଲା, ଦୂରରୁ ତାହାକୁ କବି ଗୁରୁ ପ୍ରାୟ ଭକ୍ତି କରୁଥିଲେ; ମାତ୍ର ସେ ଯେ ପ୍ରେମ ମଧୁ ଚଖାଇ ପ୍ରାଣର ପିପାସା ନିବାରି ପାରିଲା, ସେ କଥା କବି ନିଜେ ମଧ୍ୟ ବିଶ୍ୱାସ କରିପାରୁନାହାନ୍ତି ।

ପ୍ରେୟସୀର ଯୌବନ ଜୁଆର, ଅଧର ମଦିରା, ନେତ୍ର ବଡ଼ିଶୀ, ରୂପ ସାଗରକୁ କବି ଭୟ କରି ଦୂରରେ ରହିବା ପାଇଁ ପରି ମୁହୂର୍ତ୍ତରେ କିଶୋରୀର ଉଚ୍ଛୁଳା ଯୌବନରୁ ଗଣ୍ଡୁଷେ ପାନ କରିବା ପାଇଁ ଇଚ୍ଛା ପ୍ରକାଶ କରିଛନ୍ତି । ଅନ୍ତର ମଧ୍ୟରୁ ପ୍ରେୟସୀ ସ୍ମୃତିକୁ ଦୂର କରିବା କଷ୍ଟକର ବୋଲି କହିଛନ୍ତି (୪୭) ସନ୍ଧ୍ୟା ପରେ ପରେ ଧରଣୀରେ ଜ୍ୟୋତ୍ସ୍ନାର ପ୍ଲାବନ ଦେଖାଦେଇଛି । ରସିକ କବିଙ୍କର ଅତୀତର ପ୍ରଣୟସ୍ମୃତି ମନେ ପଡ଼ୁଛି । ବକ୍ଷରେ ସ୍ୱପ୍ନର ମଦିରା, ଚକ୍ଷୁରେ ପରୀର ମାୟା, ବୁକୁରେ ଚୁମ୍ବନର ସ୍ୱପ୍ନ ଖେଳୁଥିବା ସଙ୍ଗେସଙ୍ଗେ ସରଳା ଚଞ୍ଚଳାର ଅଧର ନୟନରେ ଜ୍ୟୋତ୍ସ୍ନାର କ୍ରୀଡ଼ାରେ ଦେହବାଦିତା ପ୍ରକାଶ ପାଇଛି—

"ଆଜି ତେଣୁ ପୂର୍ଣ୍ଣିମା କୌମୁଦୀ ଗନ୍ଧେ<br>
ଚୁମ୍ବନ ଆଶା ମମ ଜାଗିଅଛି ଗାନ୍ଧେ ।<br>
ଆଜିତେଣୁ ଏ ନିଶାରେ ଏ ମଧୁର ଜ୍ୟୋସ୍ନା<br>
କୁଞ୍ଜେ ବିଳସି ମୋର ବଢ଼ାଉଛି ତୃଷ୍ଣା ।" (୪୮)

'ଦେଖାହେଲା କମ୍ପା' କବିତାରେ କବି ପୂର୍ବ ମିଳନର ଅନୁଶୋଚନା କରିଛନ୍ତି । ମାତ୍ର ପରୋକ୍ଷରେ ତାଙ୍କର ଦେହବାଦିତାର ସ୍ୱର ସ୍ପଷ୍ଟ ହୋଇଉଠିଛି । ନଦୀ ବନ୍ୟାର ପ୍ରବାହ ପରି, କୁଳ, ମାନ କ୍ଷାତି କାହାକୁ ଭୟ ନକରି ପ୍ରେୟସୀ କବିଙ୍କ ସହିତ ମିଳିତ ହୋଇଛନ୍ତି । ସେଥିପାଇଁ ସମାଜର ନାନା କୁତ୍ସା, ଲାଞ୍ଛନା ସହିବାକୁ ହୋଇଛି—

---

୪୭ – 'ଦୂରେ ରହ' ଧୂପ' ପୃ ୧୨୫ ମାନସିଂହ ଗ୍ରନ୍ଥାବଳୀ ୧ମ ଖଣ୍ଡ
୪୮—'ବସନ୍ତୋତ୍ସବ' 'ହେମପୁଷ୍ପ' ପୃ ୧୬୨ ମାନସିଂହ ଗ୍ରନ୍ଥାବଳୀ ୧ମ ଖଣ୍ଡ

"ହାୟ ରାଣି ! ଦୁଇ ଅଜଣା ଯେହ୍ନେ
ମିଳିଲେ କାହ୍ନୁଁ
ଜୀବନଟା ଯାକ ସହିବାକୁ ହେଲା
ମିଳନ ଦାଉ ।" (୪୯)

ବେଦନାର ପ୍ରକୃତ ଭାଷା ଅଶ୍ରୁ ଆଉ ନୀରବତା । ଦୁଃଖ ଓ ବେଦନାର ପ୍ରଥମ ଅବସ୍ଥା ଅଶ୍ରୁ ଓ ଶେଷାବସ୍ଥା ନୀରବତା; କିନ୍ତୁ ଏହି ବେଦନାହିଁ ଆନନ୍ଦର ଜନକ, ପ୍ରେମିକର ଅଶ୍ରୁରେ ସେ ପାଏ ପ୍ରେୟସୀର ରାଜ୍ୟର ସ୍ପର୍ଶ ଆଉ ପାଏ ପ୍ରେୟସୀର ପ୍ରଣୟ । ଏ ବ୍ୟଥା ମଧ୍ୟରେ ସେ ଯେଉଁ ତ ଅନନ୍ଦ ପାଉଛନ୍ତି; ସେତେ ଅନନ୍ଦ ସେ ଜୀବନରେ ପାଇନଥିଲେ । ତେଣୁ କବି କହନ୍ତି—

ନାହିଁ ସଖି ନାହିଁ ! ଗୁହେଁ ମୁଁ ପରମ ବ୍ୟଥା
ନୟନେ ଲୋତକ, ମୁଖେ ଅବ୍ୟକ୍ତ କଥା ।
ପ୍ରିୟାଗୋ ମୋର
ତହିଁରେ ପାଏ ମୁଁ ପୀରତିର ସଫଳତା ।" (୫୦)

ଆଷାଢ଼ର କଳା କିଟିମିଟି ଅନ୍ଧାର ରାତି । ଆକାଶରେ ଘନ ମେଘମାଳା, ବିଦ୍ୟୁତ୍‌ର ଚମକ । ଜନହୀନ ରାଜପଥ । ଭେକମାନଙ୍କର ଘନଘନ ଗର୍ଜ୍ଜନ, ଏହିପରି ଏକ ଭୟଙ୍କର ରାତିରେ କବିଙ୍କର ପ୍ରେୟସୀ ଅଭିସାର ରଚନା କରିଛି । ରୋମାଣ୍ଟିକ କବି, ପ୍ରିୟାର ଛାୟା, ନୂପୁର ଧ୍ୱନି, କବରୀର କୁସୁମ ଗନ୍ଧରୁ ପ୍ରେୟସୀର ଅଭିସାର ସ୍ପଷ୍ଟ ଜାଣି ପାରିଛନ୍ତି । ତେଣୁ ପଥଘାସ ଓ ସରଣୀକୁ ଅନୁରୋଧ କରିଛନ୍ତି—

"ଆରେ ପଥ-ଘାସ, ପ୍ରିୟା ପଦ ପ୍ରାସ ପାଇବି,
ନୋଇଁଦେବି ମଥା ପ୍ରିୟା ଯେବେ ପାଦ ଥୋଇବି,

୪୯—'ଦେଖାହେଲା 'କମ୍ପା' 'ଧୂପ' ପୃ ୮୨ ମାନସିଂହ ଗ୍ରନ୍ଥାବଳୀ ୧ମ ଖଣ୍ଡ
୫୦—'ଅଶ୍ରୁର ଆନନ୍ଦ' 'ଧୂପ' ପୃ ୮୪ ମାନସିଂହ ଗ୍ରନ୍ଥାବଳୀ ୧ମ ଖଣ୍ଡ

ଶରୀର ତୋହର   କୋମଳ କାରରେ   ସରଣୀ,
ପ୍ରଥମେ ତା ପାଦ   ଛୁଇଁଛି କଠିନ   ଧରଣୀ ।" (୫୧)

କଳ୍ପମନ୍ଥ ପରେ ଅନ୍ଧକାରିକା କବିଙ୍କ ନିକଟରେ ପହଞ୍ଚି ଯାଇଛି । ଭେକ ଝିଙ୍କାରୀଙ୍କର ଶବ୍ଦ ସହିତ ବାରିଦମାଳାର ଗର୍ଜ୍ଜନକୁ ଭୟ ନକରି "ପ୍ରେମ ଲାଗି ମେଳ ଆଷାଢ଼-ରଜନୀ ଉତ୍ସବ ।" (୫୨) ପ୍ରକୃତିର ପ୍ରଣୟ ଲୀଳା ଚାଲିଛି, ତା ସହିତ ଯୁବକ ଯୁବତୀ ପ୍ରାଣରେ ପ୍ରଳୟ ଆରମ୍ଭ ହୋଇଛି । ପ୍ରଳୟ ପରେ ନୂତନ ସୃଷ୍ଟି ହେଲାପରି ବିଦ୍ରୋହ ପରେ ତରୁଣ ଜୀବନର ବିକାଶ ହୋଇଥାଏ । ତେଣୁ ତରୁଣୀ ପ୍ରାଣଭୋଗ ପାଇଁ ବିଦ୍ରୋହୀ ହୋଇ ଚାଲିଆସିଛି ।

'ଏଇ ସହକାର ତଳେ' କବିତା କବିଙ୍କ ଜନପ୍ରିୟ କବିତାମାନଙ୍କ ମଧ୍ୟରୁ ଅନ୍ୟତମ । ଦେହବାଦିତାର ଚିତ୍ରଣରେ ଏହି କବିତା ବିଶେଷ ସଫଳତା ଲାଭ କରିଛି । ସହକାର ତଳେ ଚାନ୍ଦନୀ ରାତିରେ ପ୍ରେୟସୀ ସହିତ ମିଳନ ପ୍ରଥମାଂଶର ବିଷୟ ବସ୍ତୁ । ଜଣେ ଅନ୍ୟ ଜଣକୁ ଭଲପାଏ କି ନାହିଁ, ଏହି ପ୍ରଶ୍ନ ପ୍ରତ୍ୟେକ ପଂକ୍ତିର ସାର ବସ୍ତୁ । ପ୍ରତ୍ୟେକ ପ୍ରତ୍ୟେକଙ୍କୁ ଏହି ପ୍ରଶ୍ନ କରିଛନ୍ତି ଓ ତା'ର ଉତ୍ତରରେହିଁ ତୃପ୍ତି ଲଭ କରିଛନ୍ତି—

"ମୋ ନୟନେ ଚାହିଁ ଅଧର ଅରାଇ
କହିଲ ମୋ ଆଡ଼େ ଚାହିଁ,
ତମ ଲାଗି ମୋତେ କଳଙ୍କ ସହେ
ସତେ ତାକୁ ଭଲ ପାଅ
ଉତ୍ତରେ ବାହୁ ଭିଡ଼ିଲି ତାହାର ଗଳେ
ଏଇ ସହକାର ତଳେ ।" (୫୩)

ରୂପସୀ ପ୍ରେୟସୀର ମୃଦୁ ଗନ୍ଧରେ ସହକାର ତଳର ବାୟୁ ଭରି

୫୧—'ଆଷାଢ଼ ଅଭିସାରେ', 'ଧୂପ', ମାନସିଂହ ଗ୍ରନ୍ଥାବଳୀ ୧ମ ଖଣ୍ଡ ପୃ-୧୨
୫୨—ତତ୍ରୈବ ପୃ-୧୩
୫୩—'ଏଇ ସହକାର ତଳେ', 'ଧୂପ' ମାନସିଂହ ଗ୍ରନ୍ଥାବଳୀ ୧ମ ଖଣ୍ଡ ପୃ ୧୬

ଉଠିଛି । କେବଳ ଏତିକିରେ ନୁହେଁ ବାରମ୍ବାର ପ୍ରେମିକ ପ୍ରେମିକା ଏହାର ତଳରେ ଗପ ରଚନା କରିଛନ୍ତି ।

ପ୍ରେମ ଏକ ଅନିବାର୍ଯ୍ୟ ବେଦନା । ଏହାର ଗତି ବଡ଼ ଜଟିଳ। ଜୀବନରେ ପ୍ରେମ କରିବାର ଗୋଟିଏ ସମୟ ଥାଏ; ତାହା ଯୌବନ । ପ୍ରେୟସୀ ନିକଟରେ ଥିଲେ ବା ତାହାଙ୍କୁ ସାକ୍ଷାତ୍ କରିବାର କିଛି ବନ୍ଧନ ନଥିଲେ, ସମସ୍ତ ବେଦନା ଆନନ୍ଦରେ ପରିଣତ ହୁଏ । ମାତ୍ର ଯେତେବେଳେ ପ୍ରେୟସୀ ଦୂରେଇ ଯାଏ, ପ୍ରେମିକର ସମସ୍ତ ବେଦନା ବଢ଼ିଯାଏ ।

"ବକ୍ଷ ଭରିଏ ପ୍ରଣୟ ମୁଁ କାହାରେ ଦେବି ଗୋ,
ବଡ଼ ଉଚ୍ଚାଟ କରେ ମତେ ଦିନ ରାତି,
ଅଶ୍ରୁ ନିଗାଇ, କାହାର ଚରଣ ସେବି ଗୋ
ସକଳ ଲୋମ ମୋ ପୁଲକିବ ତାକ ସାଥି ।" (୫୪)

ସମସ୍ତ ବେଦନା ସତ୍ତ୍ୱେ କବି ଆଶାବାଦୀ । ତେଣୁ କହିଛନ୍ତି; "ବାସକସଜ୍ଜା ରହିବି ମୁଁ ସାରା ଯାମିନୀ ।" 'ପାପ ଓ ପ୍ରେମ', 'ପ୍ରିୟାର ସାଧନା', 'ପରମ ପ୍ରଣୟ ଧାରା', 'ଜଣେ ମତେ ଭଲପାଏ' ଓ 'ଭଲପାଅ' କବିତାରେ ଦେହ ବାଦିତା ଦେଖାଦେଇଛି । କିନ୍ତୁ 'ମିଳନ ପଥ', 'ପ୍ରେମ ଓ ମୃତ୍ୟୁ' କବିତାରେ କବି ପ୍ରିୟାର ସ୍ପର୍ଶ ଲାଭ କରିବା ପାଇଁ ତୀବ୍ର ଆକାଙ୍କ୍ଷା ପ୍ରକାଶ କରିଛନ୍ତି—

"ଯେ ପଥେ ପ୍ରିୟ ଆସୁଥିଲ ମୋ' ପାଶେ
ଏ ଦେହ ମିଶିଯାଉ ସେ ପଥ-ଘାସେ ।" (୫୫)

ନିଜର ମୃତ୍ୟୁ ପରେ ପ୍ରେୟସୀର ସ୍ପର୍ଶ ଲାଭ ପାଇଁ ମଧ୍ୟ କବି ବ୍ୟାକୁଳ ହୋଇଛନ୍ତି, ତେଣୁ ସେ ପ୍ରେମିକାଙ୍କୁ ଅନୁରୋଧ ଜଣାଇଛନ୍ତି ଯେ

---

୫୪ —'ପ୍ରେୟସୀ', ଧୂପ' ମାନସିଂହ ଗ୍ରନ୍ଥାବଳୀ ୧ମ ଖଣ୍ଡ ପୃ ୧୦୩
୫୫—'ମିଳନପଥ'—'ଧୂପ' ମାନସିଂହ ଗ୍ରନ୍ଥାବଳୀ ୧ମ ଖ, ପୃ-୭୮

କବିଙ୍କ ଚିତାଭସ୍ମ ପାଖରେ ପ୍ରେୟସୀ ପହଞ୍ଚିବା ପାଇଁ ପୁନଶ୍ଚ ଅନୁରୋଧ କରିଛନ୍ତି—

'ପାରିବ ଯଦି ଭସ୍ମ ପରେ
ପଦ୍ମ ପାଦ ଗୁଳିବ ଧୀରେ,
ଜୀବନ ପୁଣି ଲଭିବ ସଖି
ନିଶ୍ଚୟ ମୁଁ ମରଣ-ତୀରେ ।" (୫୬)

ଏଠାରେ କବିଙ୍କର ଦେହବାଦିତା କ୍ରମଶଃ ଅତୀନ୍ଦ୍ରିୟ ସ୍ତରକୁ ଉନ୍ନୀତ ହୋଇଯାଇଛି । ଏହି ଚିନ୍ତାଧାରା ଦ୍ୱାଦଶ ଶତାବ୍ଦୀରେ ଓଡ଼ିଶାର ବିଶିଷ୍ଟ ସଂସ୍କୃତ କବି ଜୟଦେବଙ୍କର 'ଗୀତ ଗୋବିନ୍ଦ'ରେ ଦେଖାଯାଏ । ଶ୍ରୀରାଧାଙ୍କର ମାନଭଞ୍ଜନ ପାଇଁ ରସିକରାଜ ଶ୍ରୀକୃଷ୍ଣ କହୁଛନ୍ତି, "ସ୍ମର ଗରଳ ଖଣ୍ଡନଂ, ମମ ଶିରସି ମଣ୍ଡନଂ, ଦେହି ପଦ ପଲ୍ଲବ ମୁଦାରଂ ।" ମାନସିଂହଙ୍କ ପ୍ରେମ କିନ୍ତୁ ଶ୍ରୀକୃଷ୍ଣଙ୍କ ଅପେକ୍ଷା ଆହୁରି ନିବିଡ଼ । ସେ କେବଳ ପ୍ରେମିକାର ପାଦକୁ ନିଜ ମସ୍ତକରେ ରଖିବାକୁ ନକହି ନିଜର ଚିତାଭସ୍ମ ଉପରେ ରଖିବାକୁ କହିଛନ୍ତି । ଯାହାଫଳରେ ତାଙ୍କର ପୁନର୍ଜନ୍ମ ସମ୍ଭବ ହେବ । ଏଥିରୁ କବିଙ୍କର ପ୍ରେମ ନିଷ୍ଠାର ସୂଚନା ମିଳେ ।

'ଜୀବନ ଚିତା' କବିତା ସଂକଳନର 'ଦକ୍ଷିଣା ପ୍ରତି' କବିତାରେ କବିଙ୍କର ପୂର୍ବସ୍ମୃତି ଜାଗ୍ରତ ହୋଇ ଉଠିଛି । ଦକ୍ଷିଣା ପବନକୁ ତାଙ୍କର ନିଃସଙ୍ଗତା ବିଷୟରେ ଜଣାଇଛନ୍ତି ।

"ଏକଦିନ ସନ୍ଧ୍ୟାକାଳେ ଏ ବ୍ୟଥାର ପ୍ରଥମ ପ୍ରକାଶ,
ତୁମେଥିଲ, ଥିଲା ଜ୍ୟୋସ୍ନା, ଥିଲା ଘନ ସହକାର ଛାୟା,
ଏକାକୀ ନଥିଲି ମୁହିଁ, ଗଣ୍ଡେ ମୋର ଆନର ନିଶ୍ୱାସ
ବାଜୁଥିଲା ଥରିଥରି, ରକ୍ତେ ସୃଜି ଯାଦୁକରୀ ମାୟା ।" (୫୭)

୫୬ - 'ପ୍ରେମ ଓ ମୃତ୍ୟୁ' 'ଧୂପ' ମାନସିଂହ ଗ୍ରନ୍ଥାବଳୀ ୧ମ ଖଣ୍ଡ ପୃ-୧୨୮

୫୭—'ଦକ୍ଷିଣା ପ୍ରତି', 'ଜୀବନ ଚିତା' ମାନସିଂହ ଗ୍ରନ୍ଥାବଳୀ ୧ମ ଖଣ୍ଡ ପୃ. ୩୬୫

ସେଦିନ ଗୁଲା ଯାଇଛି, ମାତ୍ର ସେ ବ୍ୟଥା ଏବେବି ରହିଛି । ଆଉ ମିଳନର ଆଶାନାହିଁ; ମାତ୍ର ପ୍ରିୟାର ସ୍ପର୍ଶ ପାଇଁ ପ୍ରାଣରେ ଅବଶୋଷ ରହି ଆସିଛି । ଓମାର ଖୟାମଙ୍କ ୨୮ଶ ଶ୍ଳୋକର ଚିନ୍ତାଧାରା ଏଠାରେ ଦେଖା ଦେଇଛି —

"I came like water and like wind I go."

ତରୁଣ କବିଙ୍କ ଆଶାରେ ଥିବା—
"ପରିମଳ ସମ ଗଗନେ ଭାସି
ପାଗଳ କରନ୍ତି ଜୋଛନା ରାଶି;
ଜୋଛନା ଡ଼ାକନ୍ତା; ଆସହେ ପ୍ରିୟ,
ଚୁମ୍ବନ ନିଅ ।" (୫୮)

'ଦକ୍ଷିଣା ପ୍ରତି' କବିତାରେ ଏହାର ସାମାନ୍ୟ ଭିନ୍ନ ରୂପ ଦେଖାଗଲେ ମଧ୍ୟ ପ୍ରିୟାର ସ୍ପର୍ଶ ଲଭପାଇଁ—

"ବିହଙ୍ଗପରି ମୁଁ ଦୂର ଦିଗଚକ୍ରେ ହୋଇଯାନ୍ତି ଲୀନ
ଇଚ୍ଛାମତେ ଜାଣୁଥାନ୍ତି, ବାର୍ତ୍ତା ମୋର ପ୍ରବାସୀ ପ୍ରିୟାର,
ଅଶରୀର ହୋଇ ଥରେ ମିଶନ୍ତିକି ତବ ଦେହ ସାଥେ
ନଥାନ୍ତା ବାସନା, କ୍ଷୁଧା, ନଥାନ୍ତା ଏ ଶୋଣିତର ପୀଡ଼ା (୫୯)

ଉପର୍ଯ୍ୟୁକ୍ତ କବିତା ମାନଙ୍କରେ ପ୍ରେମିକ କବି ମାନସିଂହଙ୍କର ଦେହବାଦିତା ଓ ପ୍ରାକ୍‌ବିବାହ ପ୍ରେମର ସୁନ୍ଦର ଆଲେଖ୍ୟ ମିଳେ ।

**ଅତୀନ୍ଦ୍ରିୟ ପ୍ରେମ : ବିବାହୋତ୍ତର ପ୍ରେମ**—ମାନସିଂହଙ୍କ କବିତାରେ ସ୍ୱକୀୟା, ପରକୀୟା, ରୂପ, ଅରୂପ, ଇନ୍ଦ୍ରିୟ ଓ ଅତୀନ୍ଦ୍ରିୟର ମଧୁର ସାମଞ୍ଜସ୍ୟ ରହିଛି । ବୟସର ପରିବର୍ତ୍ତନ ସଙ୍ଗେସଙ୍ଗେ କବିତାର ବିବର୍ତ୍ତନ

---

୫୮ — 'ତରୁଣ କବିର ଆଶା' 'ଧୂପ' ମାନସିଂହ ଗ୍ରନ୍ଥାବଳୀ ପୃ: ୭
୫୯ — 'ଦକ୍ଷିଣା ପ୍ରତି' 'ଜୀବନଚିତା' ମାନସିଂହ ଗ୍ରନ୍ଥାବଳୀ ପୃ. ୩୬୭

ମାନସିଂହ ସାହିତ୍ୟର ଏକ ବିଶେଷତ୍ୱ । ତାଙ୍କର ଅଧିକାଂଶ କବିତାରେ ଅଶରୀରୀ ଚେତନା ଦେଖା ଦେଇଥିଲେ ମଧ୍ୟ 'ଧୂପ'ର ମାନବୀୟ ପ୍ରେମ କବିତା ଭଳି ଏତେ ବଳିଷ୍ଠ ନୁହେଁ ।

ସ୍ୱର୍ଗୀୟ ପ୍ରେମ ନିକଟରେ ସମସ୍ତ ତୁଚ୍ଛ, ନାନା ବାଧା ବନ୍ଧନରେ ମଧ୍ୟ ସେ ପ୍ରେମରେ ବିରାମ ନାହିଁ । ପ୍ରେମିକା ପ୍ରେମିକର ଅନ୍ତରର ଡାକକୁ ଶୁଣିପାରେ । ଯମୁନା କୂଳରେ ବଂଶୀ ଡ଼ାକକୁ କୌଣସି ଗୋପିକା, ଗୋପ-ବାଳକ, ଗୋପର ବୃଦ୍ଧମାନେ ଏପରିକି କୋଳରେ ଧାରଣ କରିଥିବା ମାତା ଯଶୋଦା ଶୁଣିପାରୁ ନାହାନ୍ତି । କିନ୍ତୁ ଚିରପ୍ରେମମୟୀ ରାଧିକା ସେ ଡ଼ାକ ଶୁଣି ପାରୁଛି । ପାଗଳିନୀ ପରି ଦୁର୍ଗମ ପଥ ନମାନି କୁଞ୍ଜବନକୁ ଧାଇଁଯାଉଛି । କୁଶାଙ୍କୁର ଘାତରେ କୋମଳ ପାଦରେ ଆଘାତ ଲାଗୁଛି, ତଥାପି ରାଧାକୃଷ୍ଣଙ୍କ ନିକଟକୁ ଧାଇଁ ଯାଉଛନ୍ତି । କବି କହୁଛନ୍ତି—

"ସତ୍ୟସନ୍ଧ ପ୍ରଭୁ;
ନିଅ ମୋର ଯାହାଅଛି ନିଅ ମୋର ସବୁ
ଭିକ୍ଷାମୋର, କୁଞ୍ଜବନେ ବ୍ରଜ ରାଧାରାଣୀ
ଯେ ପଥେ ଯାଆନ୍ତି ନିତି ବଂଶୀ ଡ଼ାକ ଶୁଣି
ସେହିପଥେ ଦୟାମୟ କର ମୋତେ ଘାସ,
ଦେହପାତି ଧୂଳିହୋଇବି ରାଧା ପଦ ପ୍ରାସ ।" (୬୦)

ଏଠାରେ ମୀରାବାଈଙ୍କର ଏକ କବିତା (ଆମ୍ରେ ଗୃକରୀ ଖୋଜ'—ଅନୁବାଦ—ସତ୍ୟେନ୍ଦ୍ରନାଥ) ସହିତ ତୁଳନା କଲେ ଜଣାପଡ଼େ ଯେ ଠାକୁରଙ୍କର କେବଳ ଗୃକର ହେବାକୁ ମୀରା ଚିନ୍ତା କରିଛନ୍ତି । ଏ କବିତା ସହିତ ଶ୍ରେଷ୍ଠ ବୈଷ୍ଣବ ଗୀତିକବି 'ଗୋପାଳକୃଷ୍ଣ'ଙ୍କର କବିତା ତୁଳନୀୟ—

---

୬୦— ବଂଶୀଡାକ', 'ହେମପୁଷ୍ପ' ମାନସିଂହ ଗ୍ରନ୍ଥାବଳୀ ପୃ-୨୬୭

"ଏଡ଼େ ଭାଗ୍ୟ ମୋର ହେବକି ?
ହେବି ବୃନ୍ଦାବନେଶ୍ୱରୀ ସେବକୀ ।" (୬୧)

× × ×

"ଦୟା ନ କରନ୍ତୁ ମୁଁ ଦାସୀ ସିନାରେ" (୬୨)

× × ×

"ବ୍ରଜବଧୂ ଅଙ୍କରେ ବିଜେକଲା ବେଳରେ,
ସେବିଲା ପରି ମୁଁ ପୁଷ୍ପ ବ୍ୟଜନ ଧରି,

ଏ ସମସ୍ତ କବିତାରେ ଦାସ୍ୟଭାବ ଦେଖା ଦେଇଥିଲେ ମଧ୍ୟ ମାନସିଂହଙ୍କ ପରି ପରମ ପ୍ରେମିକା ରାଧାଙ୍କର ତୃପ୍ତି ପାଇଁ ବାଟରେ ଘାସ ହୋଇଯିବାକୁ କବିଙ୍କ ଚିନ୍ତା ଏକ ଉନ୍ନତ ଭାବଧାରାର ପରିଚୟ ଦିଏ ।

'ଉଦାସୀ ପାନ୍ଥ' ଇତସ୍ତତଃ କୁଳଟା ରାଧା କବିତାରେ ଅତୀନ୍ଦ୍ରିୟ ଚେତନା ଦେଖାଦେଇଛି ।

'ହେମଶସ୍ୟ' କବିଙ୍କର ବିବାହୋତ୍ତର ଜୀବନର କବିତା ସଂକଳନ । ଏଥିରେ ଦାମ୍ପତ୍ୟ ଜୀବନର ପ୍ରେମକୁ ସଂଯତ ଭାଷା ମାଧ୍ୟମରେ ବର୍ଣ୍ଣନା କରାଯାଇଛି । **T S Eliot**ଙ୍କ ଭାଷାରେ **A great poet writes on himself.** ସେହିପରି ବ୍ୟକ୍ତିଗତ ଜୀବନର ଚିତ୍ରକୁ ସାହିତ୍ୟିକ ରୂପ-ଦେବାରେ ମାୟାଧର ମାନସିଂହ ଓଡ଼ିଆ ସାହିତ୍ୟରେ ଅଦ୍ୱିତୀୟ କବି । ବିବାହ ପରଠାରୁ ବିଦେଶ ଯାତ୍ରା ପର୍ଯ୍ୟନ୍ତ ବିଭିନ୍ନ କବିତାର ସମାହାର ଏହି 'ହେମଶସ୍ୟ'ରେ ତାରୁଣ୍ୟର ଗୃପଳ୍ୟ, ଯୌବନର ଉଦ୍ଦାମତା ପରିବର୍ତ୍ତେ ସୁସ୍ଥ ଗୃହସ୍ଥର ଚିନ୍ତାଧାରା ଦେଖା ଦେଇଛି ।

ବିବାହ ପରେ ପରେ କବିଜୀବନର ଦୁର୍ଗନ୍ଧ ଦୂରହୋଇ ଯାଇଛି । ହୃଦୟରେ ପ୍ରଣୟର କଳ୍ପଲତା ପଲ୍ଲବିତ ହୋଇ ଉଠିଛି । ଇନ୍ଦ୍ରିୟ-ବିଳାସୀ କବିଙ୍କର ଚିତ୍ତରେ ଅତୀନ୍ଦ୍ରିୟ ଚେତନା ଦେଖା ଦେଇଛି । —

---

୬୧ – ଗୋପାଳକୃଷ୍ଣ ପଦ୍ୟାବଳୀ ପୃ-୭୧
୬୨ –ଗୋପାଳକୃଷ୍ଣ ପଦ୍ୟାବଳୀ ପୃ ୧୫୮

"ସଗୃହରେ ପ୍ରାଙ୍ଗଣ ମୋର ଅନନ୍ତ କଲ୍ୟାଣ
ଅଶ୍ରାନ୍ତସ୍ଫୁ-କରେ ଚିତ୍ତ; ବୁଦ୍ଧକରେ ପ୍ରାଣ ।" (୭୩)

ବସନ୍ତର ଚନ୍ଦ୍ରିକା-ଚର୍ଚ୍ଚିତ ରଜନୀରେ ଯେତେବେଳେ ଏକ ମନୋରମ ପରିବେଶ ସୃଷ୍ଟି ହୋଇନ୍ତି, ରସିକ କବି ଦମ୍ପତି ବସନ୍ତ ନିକଟରେ ନିଜର କାମନା ନିବେଦନ କରିଛନ୍ତି—

"ଏକାଳେ ଆକାଶତଳେ ହୋଇ ଲଗ୍ନ-ଗଳ
ପ୍ରଣମିଲୁ ବସନ୍ତରେ' ବୋଲି-ହେ ସାମନ୍ତ,
ଜୀବନ ଆମ୍ଭର ହେଉ ଅଛିନ୍ନ ବସନ୍ତ ।" (୭୪)

'ପ୍ରେମର ସଙ୍ଗୀ' କବିତାରୁ କବିଙ୍କର ଅଶ୍ରାନ୍ତସ୍ଫୁ ପ୍ରେମଚେତନାର ବଳିଷ୍ଠ ନିଦର୍ଶନ ମିଳେ । କବିଙ୍କ ଦୃଷ୍ଟିରେ ଦେହରେ ଦେହ ମିଳନ ନିକୃଷ୍ଟ ଧରଣର ପ୍ରେମ । ଶାଶ୍ୱତ ପ୍ରେମରେ ତରୁଣ ତରୁଣୀ ପରସ୍ପର ପ୍ରତି ଆକର୍ଷିତ ହୋଇ ଆତ୍ମ-ସମର୍ପଣ କରନ୍ତି । ପ୍ରକୃତ ପ୍ରେମ ଅନ୍ୟର କଲ୍ୟାଣ ପାଇଁ, ନିଜର ଆତ୍ମତୃପ୍ତି ପାଇଁ ନୁହେଁ । ନିକୃଷ୍ଟ ପ୍ରେମରେ ସନ୍ଦେହ ଓ ଦ୍ୱନ୍ଦ୍ୱ ଥାଏ; ମାତ୍ର ଶାଶ୍ୱତ ପ୍ରେମରେ ବିଶ୍ୱାସଦ୍ୱାରା ପରସ୍ପର ଅନ୍ତରରୁ ଜ୍ୱାଳାକୁ ଦୂର କରାଯାଏ । ଅଶ୍ରାନ୍ତସ୍ଫୁ ପ୍ରେମରେ ପ୍ରାପ୍ତିରେ ସୁଖ ନଥାଇ ଥାଏ ତ୍ୟାଗରେ । ଏ କବିତାରୁ କବିଙ୍କର ପ୍ରେମ ଚେତନାର ସ୍ୱରୂପ ଓ ବିବର୍ତ୍ତନ ଲକ୍ଷ୍ୟ କରାଯାଏ ।

"ପ୍ରେୟସୀ ଆମ୍ଭର,ରୂପ-ପର ଥିଲା ଦିନେ ଆଜି ରୂପୋତ୍ତର" (୭୫)

ଇଟାଲୀୟ କବି ଦାନ୍ତେଙ୍କର ପ୍ରେୟସୀ ମୀ ସ୍ୱର୍ଗୀୟ ସୌନ୍ଦର୍ଯ୍ୟର ଦର୍ପଣ ବୋଲି ବିବେଚିତ ହେଲାଭଳି, କବି ମାନସିଂହଙ୍କ ପ୍ରେୟସୀ ମୀ ତାଙ୍କ ନିକଟରେ ସମସ୍ତ ପାର୍ଥିବ ଓ ଅପାର୍ଥିବ ସୌନ୍ଦର୍ଯ୍ୟର ମୂଳାଧାର । ପ୍ରେୟସୀମୀର ରୂପ ସାଗରର ଗଭୀରତା ମଧ୍ୟରେ ବିଶ୍ୱର ସମସ୍ତ ବେଦନା ଓ ସୌନ୍ଦର୍ଯ୍ୟ

୭୩—'କଳିକଳତା' 'ହେମପୁଷ୍ପ' ମାନସିଂହ ଗ୍ରନ୍ଥାବଳୀ ପୃ-୧୬୭
୭୪—'ବସନ୍ତ ଭିକ୍ଷା' 'ହେମଶସ୍ୟ' ମାନସିଂହ ଗ୍ରନ୍ଥାବଳୀ ପୃ-୧୮୫
୭୫— ଦେହ ଓ ସ୍ନେହ—'ହେମଶସ୍ୟ' ଗ୍ରନ୍ଥାବଳୀ ପୃ-୧୯୪

ନିହିତ ଥିବାର ଲକ୍ଷ୍ୟ କରନ୍ତି । ଏହି 'ଗର୍ଭର ସ୍ୱର', 'ଟୋଗ୍ୟ ହେବି' 'ଅପରାଧ', 'ନିତ୍ୟ ବସନ୍ତ', 'ପ୍ରେମିକର ଅଧିକାର', 'ପ୍ରଥମ ଓ ପ୍ରଧାନ', 'ରାଗ ବିରହ', 'ଦାନ ପ୍ରତିଦାନ' 'ବସନ୍ତ ଅଭିସାର', 'ନାରୀ' ଆଦି କବିତାରେ ସ୍ପଷ୍ଟ ହୋଇ ଉଠିଛି । ଆମ୍ଭର ସୌନ୍ଦର୍ଯ୍ୟ କବିତାରେ କବିଙ୍କର ଉକ୍ତି—

"ରୂପାଶ୍ରିତ ନୁହେ ମମ, ଜନେନ୍ଦ୍ରିୟ ପର,
ରୂପ ବା କି ଘୃଣ୍ୟ କଥା ? ନର-ସୌନ୍ଦର୍ଯ୍ୟରେ
ଭକ୍ତସମ ଅଛି ମୁହିଁ ମୁଗ୍‌ଧ ନୟନରେ
କେତେବାର ସଖି ମୁହିଁ, ବନ୍ଦଗାଥ ସ୍ରଷ୍ଟାର
ସୃଷ୍ଟିର ମହିମା ସ୍ମରି । କିନ୍ତୁ ଗୋ ଆମ୍ଭର
ସୌନ୍ଦର୍ଯ୍ୟ ତହିଁରୁ ବଳି, ଯା'ର ସମ୍ମୁଖରେ
ମନୁଷ୍ୟ ନୁଆଁଏ ମଥା । ତବରୂଧ ତଳେ
ସେ ରୂପର ସନ୍ଧାନ ମୁଁ ପାଇଛି ସୁନ୍ଦରି,
ମୋ ପ୍ରେମ ସରସ ଦେହ ଅନ୍ତର ସଞ୍ଚରି ।" (୬୬)

ପ୍ରେମ କ୍ଷଣକରେ, ଦିନକରେ ବା ବର୍ଷକରେ ଶେଷ ହୋଇଯାଏ ନାହିଁ । ପ୍ରକୃତ ପ୍ରେମ ଜନ୍ମଜନ୍ମାନ୍ତରେ ରହିଥାଏ । ଭଗବାନ ଦୁଷ୍ଟ ସଂହାରଣ ପାଇଁ ଯୁଗେଯୁଗେ ଅବତାର ଗ୍ରହଣ କରନ୍ତି । ପ୍ରେମିକ ପ୍ରେମିକା ପାଇଁ ବାରମ୍ବାର ଏ ସଂସାରକୁ ଆସିଥାଏ । 'ମରମେଭ୍ରମର' ଓ 'ଧରାବତରଣ' କବିତାରେ କବିଙ୍କ ଉକ୍ତି—

'ପାଇବାକୁ ସେ ଦୁହିଁର ପରିପୂର୍ଣ୍ଣ ଆତ୍ମ-ସମର୍ପଣ
ହେ ସଖି, କରୁଛି ମୁଁ କି ଜନ୍ମେ ଜନ୍ମେ ଧରାବତରଣ' । (୬୭)

**ମିଳନାନନ୍ଦ**—ଦରଦୀ କବି ମାନସିଂହଙ୍କର ପ୍ରଣୟ ରାଜ୍ୟରେ କୌଣସିଠାରେ ଶଠତା, ଅସାଧୁତା ବା ବିଶ୍ୱାସଘାତକତା ପ୍ରତିଫଳିତ

---

**୬୬—'ଅମ୍ଭର ସୌନ୍ଦର୍ଯ୍ୟ' 'ହେମଶସ୍ୟ' ଗ୍ରନ୍ଥାବଳୀ ପୃ ୧୧୧**
**୬୭—'ଧରାବତରଣ', 'ହେମଶସ୍ୟ' ଗ୍ରନ୍ଥାବଳୀ ପୃ ୧୩୬**

ହୋଇନ । ପ୍ରେମିକାର ଉପସ୍ଥିତିକୁ ସେ ଯେପରି ଉଚ୍ଛ୍ୱସିତ ଆନନ୍ଦ ସହିତ ସ୍ୱାଗତ କରିଛନ୍ତି, ଅନୁପସ୍ଥିତିକୁ ମଧ୍ୟ ପ୍ରେମିକା ପାଇଁ ଲୁହ ଢାଳି ସ୍ମରଣ କରିଛନ୍ତି । ତାଙ୍କ କବିତାରେ ଶିଳ୍ପୀପ୍ରାଣର ନିଷ୍ଠା, ବିଶ୍ୱାସ ଓ ଆନ୍ତରିକତା ସହିତ ହୃଦୟର ମିଳନାନୁଭୂତିର ଜୀବନ୍ତ ଓ ବିଶ୍ୱସ୍ତ ଚିତ୍ର ଅଙ୍କିତ ହୋଇଛି । ପ୍ରାଣର ରୂପଦ୍ରଷ୍ଟା ଓ ସ୍ୱାଭାବିକ ଦୃଷ୍ଟିଭଙ୍ଗୀରୁ ପ୍ରଣୟିନୀ ହୃଦୟର ପ୍ରୀତି ଫଲଗୁର ସନ୍ଧାନ କରିଛନ୍ତି ।

"କିଶୋରୀ ଗୋ ତବ ବକ୍ଷକମଳ ମୋ ହୃଦ-କମଳ ପରେ
ରଖିଲି ଯା,—ଟିକେ ରହିଥିର ହୋଇ, ଅନୁଭବ ତାହା କରେଁ ।
ପୁଲକିତ ଦେହ, ପୁଲକିତ ମନ, ଆଲୋକିତ ଅନ୍ତର,
କ୍ଷୁବ୍‌ଧ-ଶୋଣିତ, ଅଙ୍ଗେଅଙ୍ଗେ ଆନନ୍ଦେ ଥରଥର ।" (୬୮)

ବାରମ୍ବାର ମିଳିତ ହେଲେ ମଧ୍ୟ କବିଙ୍କ ପ୍ରାଣରେ ତୃପ୍ତି ଆସିନାହିଁ । ପ୍ରେୟସୀଙ୍କୁ ସେ ବାରମ୍ବାର ନିଜ ନିକଟରେ ଗୃହିଁଛନ୍ତି । ତାଙ୍କ ପ୍ରେୟସୀର କେହି ସମକକ୍ଷ ଥିବାପରି ତାଙ୍କୁ ପ୍ରତୀୟମାନ ହୋଇନାହିଁ । ଏଠାରେ ମୈଥିଳୀ କବି ବିଦ୍ୟାପତି ଓ ବୈଷ୍ଣବ କବି ଗୋପାଳକୃଷ୍ଣଙ୍କର ମିଳନାକାଙ୍‌କ୍ଷା ଓ ଅନୁରାଗର ଚିତ୍ର ତୁଳନା କରା ଯାଇପାରେ—

"ଜନମ ଅବଧି ହମ୍ ରୂପ ନିହାରିର ନୟନ ନ ତିରପିତ ଭେଲ୍ ।"
(ମୁଁ ଜନ୍ମଠାରୁ ସେ ରୂପ ଦେଖି ଆସିଛି କିନ୍ତୁ ଏ ଆଖି ତୃପ୍ତ ହେଲିନାହିଁ ।) —ବିଦ୍ୟାପତି

ବ୍ରଜବଧୂ ପରି ମୋତେ କେ ଦିଶୁନାହିଁ
ମନ ପୂରୁଛି କି ହେଲେ ନିତିରୁହିଁ ?
ଗୋପାଳକୃଷ୍ଣ (୬୯)

୬୮— 'ମିଳନ ମାଧୁରୀ', 'ହେମଶସ୍ୟ' ମାନସିଂହ ଗ୍ରନ୍ଥାବଳୀ ୧ମ ପୃ-୨୧୬
୬୯ —ଗୋପାଳକୃଷ୍ଣ ପଦ୍ୟାବଳୀ ପୃ-୧୫୭

ମାନସିଂହଙ୍କ ରଚନା ଦ୍ରଷ୍ଟବ୍ୟ—

ଦୁଇଟି ନୟନରେ ନ ଆସେ ତୃପ୍ତି
ଲକ୍ଷ୍ୟ ନୟନସୁରେ ଗୃହିଁବ । (୭୦)

'ତରୁଣ କବିର ଆଶା' କବିତାରେ ବାୟୁ ସହିତ ମିଶି ପ୍ରଣୟିନୀର ସନ୍ଧାନ କରିବାକୁ ଗୃହୁଁଥିବା କବି ଏଠାରେ ପଞ୍ଚଭୂତରେ ମିଳିତ ହୋଇ ପ୍ରିୟାର ସ୍ପର୍ଶଲାଭ କରିବା ପାଇଁ ଉଦ୍‌ଗ୍ରୀବ ହୋଇ ଉଠିଛନ୍ତି । 'ମିଳନ ମାଧୁରୀ' ଓ 'ନିତ୍ୟ ସ୍ୱୟଂବର' କବିତାରେ ପ୍ରେୟସୀ ସହିତ ଯେତେଥର ମିଳିତ ହୋଇଛନ୍ତି ଓ ସେତେ ନୂଆ ଆନନ୍ଦଅନୁଭୂତି ଲାଭ କରିଛନ୍ତି ।

"ଦୁଇ ଜୀବନର ମଧୁର ମିଳନ ସହସା ହେଲା
ଧରଣୀ ଯେଦିନ ମୋ ହାତେ ଯାହା ସେ ଦେବାର
ଦେଲା ।" (୭୧)

ଆଲୋଚ୍ୟ କବିତାମାନଙ୍କ ସହିତ 'ସ୍ମୃତି', 'ପ୍ରକୃତିର ବୈଚିତ୍ର୍ୟ', 'ସାଧନା' 'କ୍ରମଶଃ', ଯୋଗ୍ୟତା','ଆକର୍ଷଣ', 'ଜଣେ ଜାଣେ', 'ଅଭିମାନ' 'ସେଦିନ', 'ମୃତ୍ୟୁଭୟ', 'ପୁନର୍ମିଳନ', 'ନିଶୀଥ ଆଳାପ, 'ଅନୁରୋଧ' 'ଜୀବନପଥ' 'ଜୟୋପରାଜୟେ', 'ମନୋରଥ' ଓ 'କଥଯୁକ୍ତି' ଆଦି କବିତାରେ କବିଙ୍କ ମିଳନାନନ୍ଦର ରସ ମିଳେ ।

ପ୍ରାଚୀନ କାବ୍ୟ କବିତାମାନଙ୍କରେ ମିଳନର ରସ ବହୁଳ ଭାବରେ ମିଳୁଥିଲେ ମଧ୍ୟ; ତାହା ଅନେକାଂଶରେ କୃତ୍ରିମ ହୋଇଯାଇଛି । ମାନସିଂହଙ୍କ ପୂର୍ବରୁ ବିଦ୍ୟାପତି, ଚଣ୍ଡିଦାସ, ଅଭିମନ୍ୟୁ, ଓ କବିସୂର୍ଯ୍ୟ ରଚନାରେ ଏହି ପ୍ରକାର ମିଳନାନୁଭୂତି ଦେଖାଯାଏ ।

"ରୂପଲାଗି ଆଖି କାନ୍ଦେ ଗୁଣେ ମନ ମୋର
ପ୍ରତି ଅଙ୍ଗ ଲାଗି କାନ୍ଦେ ପ୍ରତି ଅଙ୍ଗ ମୋର ।" 'ଚଣ୍ଡୀଦାସ'
ବା

୭୦ — 'ଅତୃପ୍ତ ଭୋଗ' 'ହେମଶସ୍ୟ' ମାନସିଂହ ଗ୍ରନ୍ଥାବଳୀ ପୃ ୨୧୮
୭୧ – 'ପ୍ରେମ ଓ ସୃଷ୍ଟି', 'ହେମଶସ୍ୟ' ମାନସିଂହ ଗ୍ରନ୍ଥାବଳୀ ପୃ ୨୨୩

ନାଜନାଜ ସୁଖ ମନେ ମନାସି
ଯବେ ପ୍ରିୟ ରହେ ପ୍ରୀତିକ ରସି
ନ ପାଇ ଧନ ବଳ ହୋଏ ପ୍ରାଣ
ସଂସାରଯାକ ସୁଖ ଗଣେ ତୃଣ
ପ୍ରୀତିପ୍ରୀ ପୀରତି,
ସବ ଭୂତମେ ପ୍ରାପ୍ତ ବସନ୍ତ । (୭୨)

ଏହା ଉଚ୍ଚକୋଟୀର ମାନ୍ୟତା ହୋଇପାରେ, ମାତ୍ର ମାନସିଂହଙ୍କ ପ୍ରଣୟୀପ୍ରଣୟିନୀଙ୍କର ଆତ୍ମବିହ୍ଵଳ ମିଳନାନୁଭୂତି ପରେ ଜୀବନ୍ତ ହୋଇ ପାରିନାହିଁ ।

**ବିରହ ଶୋକୋଚ୍ଛ୍ୱାସ**—"ବିରହର ଅଶ୍ରୁ କୋଳରେ କେବଳ ପ୍ରେମର ନୁହେଁ କାବ୍ୟରେ ରୂପ ବି ଶୁଭ୍ର ଓ ସୁନ୍ଦର । ମିଳନର ଭାବାବେଶରେ, ହୃଦୟର ଭାବ ଓ ବୈଶିଷ୍ଟ୍ୟ ଫୁଟିବାର ଅବକାଶ କ୍ଷୀଣ । କିନ୍ତୁ ବିରହ ଦଶାରେ ବ୍ୟଥା ଓ ବେଦନାର ଆଶ୍ୱସ୍ତ ଜ୍ୱାଳାରେ ତଥା ଆଶା ଓ ଆଶଙ୍କାର ସଂଘର୍ଷ ଲୀଳାରେ, ହୃଦୟର ପ୍ରତ୍ୟେକଟି ତନ୍ତ୍ରୀ ମୂର୍ଚ୍ଛିତ ହୋଇଉଠେ । × × × ଯେ କୌଣସି ଉଚ୍ଚକୋଟୀର କାବ୍ୟର ଗୌରବ ବିରହ ବର୍ଣ୍ଣନାର କଳାକୌଶଳ ଉପରେ ଅନେକ ପରିମାଣରେ ନିର୍ଭର କରେ । ପ୍ରେମର ସକଳ କ୍ଷେତ୍ରରେ ଏ ବିରହର ଲଳିତ ରୂପଶ୍ରୀ କାବ୍ୟର ଆଶୀର୍ବାଦ ଲଭିପାରେ ।" (୭୩)

ବିରହରେ ଦେହର ବ୍ୟବଧାନ ଅପସରି ଯାଏ । ଦୂରରେ ଥିଲେ ମଧ୍ୟ ବିଭିନ୍ନ ବସ୍ତୁରେ ସେ ପାଏ ପ୍ରେମିକାର ପ୍ରତିଛବି ।

"ମିଳନର କାଳେ ଯେତେ ପାଖେ ଆସ
ଥାଏ ଦେହ ବ୍ୟବଧାନ

୭୨—ବିଦଗ୍ଧ ଚିନ୍ତାମଣି, ଅଭିମନ୍ୟୁ ସାମନ୍ତ ସିଂହାର
୭୩—କାବ୍ୟ ସମ୍ବାଦ—ଅଧ୍ୟାପକ ଦାଶରଥି ଦାସ ପୃ-୧୬୩

ବିରହରେ ପ୍ରିୟେ ! ହୋଇଅଛି ଆଜି
ଶରୀରର ଅବସାନ ।" (୭୪)

ମାନସିଂହଙ୍କ ବିରହ କବିତାକୁ ପତ୍ନୀବିରହ ଓ ପ୍ରେମିକା-ବିରହ—ଏହି ଦୁଇ ଭାଗରେ ବିଭକ୍ତ କରାଯାଇପାରେ । ଦାମ୍ପତ୍ୟ ଜୀବନର ବିରହ କବିତା ବିଶେଷ ବଳିଷ୍ଠ ବା ଉତ୍କୃଷ୍ଟ ନୁହେଁ । ମିଳନ ଓ ବିରହର ଚର୍ଚ୍ଚାରେ ପରକୀୟା ପ୍ରୀତି କବିତା ଗୁଡ଼ିକରେ କାଳୀ କୁଞ୍ଚାଳତା ବନ୍ଧୁ ଧରମାଣରେ ଫୁଟି ଉଠିଛି ।

ବିରହବିଧୁର କବିଙ୍କର ପ୍ରେମିକା ସହିତ ମିଳିତ ହେବାର ସମ୍ଭାବନା ନ ଥିବାରୁ ମିଳନପଥଧାରରେ ନିଜର ଦେହ ମିଶାଇ ଦେବାକୁ ଇଚ୍ଛା ପ୍ରକାଶ କରିଛନ୍ତି । କେବଳ ପ୍ରେମିକକୁ ଯେ ବିରହ ବେଦନା ବାଧୁଛି ତାହା ନୁହେଁ ପ୍ରେମିକାକୁ ମଧ୍ୟ ସମାନ ବ୍ୟଥା ଲାଗିଛି—

"ଦୁହେଁ ଦୁଇ ଦେଶେ ରହି
ଦୁହିଁଙ୍କ କପୋଳେ ବିରହର ଜଳ
ନିତ୍ୟ ଯାଉଛି ବହି ।" (୭୫)

ଗଭୀର ଭଲପାଇବା ଶେଷରେ ଲୁହରେ ରୂପାନ୍ତରିତ ହୋଇଥାଏ । ସଂସ୍କୃତ ସାହିତ୍ୟରେ "ନ ବିନା ବିପ୍ରଲମ୍ଭେନ ସମ୍ଭୋଗଃ ପୁଷ୍ଟିମଶ୍ନୁତେ ।" ଯେହିପରି ଇଂରାଜୀରେ ଅଛି—"And love is loveliest when emblalmed in tears." ।'ପ୍ରଣୟ ବ୍ୟଥା' କବିତାରେ ମାନସିଂହଙ୍କ ଉକ୍ତି "ଅକାରଣେ ଶତେବାର ନେହୁଁ ମୋର ମିର ବହିପଡ଼େ ।" ପ୍ରିୟାକୁ ସଶରୀରେ ଭେଟିବାକୁ ଆଶା ନଥିବାରୁ କବି ଧୂପ ପରି ଜଳିଯିବାକୁ ଚାହିଁଛନ୍ତି—

"ମନେହୁଏ ଧୂପ ସମ ଦଗ୍ଧ ହୋଇ ବାଷ୍ପ ଯିବ ହୋଇ
ପ୍ରଣୟର ଅଗ୍ନି ଶେଷେ ପ୍ରଣୟର ଭସ୍ମ ଯିବ ଥୋଇ ।" (୭୬)

---

୭୪—'ବିରହ', 'ଧୂପ' ମାନସିଂହ ଗ୍ରନ୍ଥାବଳୀ ୧ମ ଖଣ୍ଡ ପୃ-୧୦୭
୭୫—'ବାସନ୍ତଲୀ' 'ଧୂପ' ମାନସିଂହ ଗ୍ରନ୍ଥାବଳୀ ୧ମ ଖଣ୍ଡ ପୃ-୧୧୩
୭୬ - 'ପ୍ରଣୟ ବ୍ୟଥା' 'ଧୂପ'—ମାନସିଂହ ଗ୍ରନ୍ଥାବଳୀ ୧ମ ଖଣ୍ଡ ପୃ-୮୪

'ବିରହୀ' କବିତାରେ ବିରହୀ ପ୍ରାଣର ନିଚ୍ଛକ ପ୍ରତିବିମ୍ବ ଦେଖାଯାଏ। କବିଙ୍କ ପ୍ରେମିକା ଅନ୍ୟର ପ୍ରଣୟିନୀ ହୋଇଯାଇଛି । ତେଣୁ ପ୍ରାଣରେ ଅଗ୍ନି ଜଳୁଛି । ପ୍ରିୟା କଥା ଭାବିଭାବି ହାତରେ ଲୁହ ପୋଛି ଧରଣୀରେ ଗାର କାଟିବାହିଁ ସାର ହୋଇଛି ।

"କହ, କହ, କହ,
ପ୍ରଣୟୀ ଦେଇ ବିରହ କପାଁ ଭୋଗିଲି ଅହରହ ।"(୭୭)

'ମନେ କି ଥାଏ ମୌନ ବିଦାୟ ଆଜ' କବିତାରେ ବିରହ ଭାବ ପ୍ରକାଶ ପାଇଛି । ଏହା ଯେ ପରକୀୟା ପ୍ରେମ କବି ସେ କଥା 'ବସନ୍ତ ବିରହୀ' କବିତାରେ କହିଛନ୍ତି—

"ବସନ୍ତେ ଆଜ ପ୍ରିୟା ମୋର ନାହିଁ ପ୍ରିୟା
ବହୁଦୂରେ ସେ ତ ବନ୍ଧନୀ ପରକୀୟା ।" (୭୮)

ବର୍ଷା ବିରହ କବିତାରେ ବିରହୀ ପ୍ରାଣର ଆଘାତ ବର୍ଣ୍ଣିତ । ନିଃସଙ୍ଗ ଜୀବନ ବ୍ୟଥାଦାୟକ ।

"ସାଥୀତ ନାହିଁ ଆଜ ଏ ଆଷାଢ଼ୀ ପ୍ରାତ
କଟିବ ସିନା ବ୍ୟଥିତ ନିଃଶ୍ୱାସେ
ଦରଜ ମୋର ହୃଦୟେ ଉଠି ମରୁ
ଗୁହିଁ ମୁଁ ରହେ ଆଷାଢ଼ ଆକାଶେ ।" (୭୯)

ବିରହର ଅନ୍ୟତମ ମାନସିକ ସ୍ଥିତି ହେଉଛି ଆଶଙ୍କା ଓ ପୂର୍ବ ସ୍ମୃତି ସ୍ମରଣ । ପ୍ରେମାସ୍ୱାଦର ସାମାନ୍ୟ ବାଧା ଆଶଙ୍କା କରି ସେମାନେ ବିକଳ ହୋଇ ଉଠନ୍ତି । ବନ୍ଧନୀ ପ୍ରିୟାରେ ମାନସିଂହ ପ୍ରାଣ ସେହିପରି ବିକଳି ଉଠିଛି । ଏହା ଭକ୍ତ କବି ଅଭିମନ୍ୟୁଙ୍କ 'ବିଦଗ୍ଧ ଚିନ୍ତାମଣି'ର ଯୁଗଳ ଅନୁରାଗ କଥନ ସହିତ ତୁଳନୀୟ । ଅଭିମନ୍ୟୁ ଦୂତୀ ମୁଖରେ

---

୭୭—ବିରହୀ, ଧୂପ ମାନସିଂହ ଗ୍ରନ୍ଥାବଳୀ ୧ମ ଖଣ୍ଡ ପୃ-୯୯
୭୮—ବସନ୍ତ ବିରହୀ ଧୂପ ମାନସିଂହ ଗ୍ରନ୍ଥାବଳୀ ୧ମ ଖଣ୍ଡ ପୃ ୧୦୦
୮୯—ବର୍ଷା ବିରହ, ଧୂପ ମାନସିଂହ ଗ୍ରନ୍ଥାବଳୀ ୧ମ ଖଣ୍ଡ ପୃ ୧୦୮

ରାଧାଙ୍କର ବିରହବ୍ୟଥା ବର୍ଣ୍ଣନା କରିଥିବା ସ୍ଥଳେ, ମାନସିଂହ ନିଜର ବିରହ ବେଦନାକୁ ନିଜେ ଉପସ୍ଥାପନ କରିଛନ୍ତି—

"କାଳିଆ କମଳ ଦେଖିଲେ କମଳ ନୟନରେ ହୁଏ ଜରଜର
ଏ ଅତି ବିଚିତ୍ର କଜ୍ଜ୍ୱଳର ଚିତ୍ର ଲେଖି ଚୁମ୍ବ ଦିଏ ବାରବାର

ଦେଖି ତମାଳକୁ ବିରହିଣୀ କୋଳକୁ ମୁଦ ହେଉଥାଇ ବାହୁଯୁଗ
ଶ୍ୟାମ ସୁବାସରେ ଆଶା ମାନସରେ କଳାବଣ୍ଟି ସଙ୍ଗେ ଅନୁରାଗ
ରସ ଶେଖରହେ ଭୂଷଣ ମୀଳେନ୍ଦ୍ର ମଣିବର
ବସି ରାମାବର ଫିଟାଇ କବରୀ ଦେଖୁଥାଇ ଥୋଇ ହୃଦେ ତା'ର
× × କୃଷ୍ଣ ବର୍ଣ୍ଣ ଶେଯେ ମାଣ୍ଡେ ନିଦ
ଶ୍ରୀଅଙ୍ଗ ତିଳକୁ ଗୁହିଁଲ ବେଳକୁ ଚିତ୍ତରେ ଜାତ ହୁଅଇ ମୁଦ।" (୮୦)

ମାନସିଂହଙ୍କ କବିତାର ନିମ୍ନ କେତେକ ପଂକ୍ତି ଦ୍ରଷ୍ଟବ୍ୟ—

"କହିବ ହେ ପୁଣି ତୋର ଗୁଣ ଗୁଣି
ନ ସରଇ ତା'ର ଦିନ
ଯହିଁ ବସେ ଖାଲି ତୋର ନାମ ଲେଖି
ଶୋକ କରେ ତା'ର କ୍ଷୀଣ।
ତୋର ପରିଧେୟ ଦେହେ ଯାକ ଧରି
ଅସୀମ ସେ ସୁଖ ପାଏ,
ତୋର ନାମ ପୁଣି ଖୋଳି ଦେଉଅଛୁ
ଶରୀରର ଠାଏ ଠାଏ।
ଜାଣିରଖ ବିରାନନ!
ଭୁଲେ ନାହିଁ କେବେ ପ୍ରିୟଗୋ ତୋହର
କି ଦିବସ କି ରଜନୀ।" (୮୧)

---

**୮୦—ଯୁଗଳ ଅନୁରାଗ କଥନ, ବିଦଗ୍ଧ ଚିନ୍ତାମଣି ସାମନ୍ତ ସିଂହାର**
**୮୧—'ବନ୍ଦନପ୍ରିୟା' 'ଧୂପ' ମାନସିଂହ ଗ୍ରନ୍ଥାବଳୀ ୧ମ ଖଣ୍ଡ ପୃ ୯୦**

ଏହି କବିତାକୁ ପ୍ରାଚୀନ ସାହିତ୍ୟର ବିଭିନ୍ନ ଦୂତ କାବ୍ୟ ଯଥା,:— ମେଘଦୂତ, ହଂସଦୂତ ଆଦି ସହିତ ତୁଳନା କଲେ ଅତ୍ୟୁକ୍ତି ହେବ ନାହିଁ । କୋଇଲ ଆଦି ଦୂତ କବିତାର ଛାୟା ମଧ୍ୟ ଏଥିରେ ଅନୁଭୂତ ହୁଏ । ଅନ୍ୟ କବିତାମାନଙ୍କ ସହିତ ଶାରୀରିକ ସାମ୍ୟ ଲକ୍ଷ୍ୟ ହେଲେ ମଧ୍ୟ ଏହାର ଆତ୍ମିକ ସୌନ୍ଦର୍ଯ୍ୟର ସ୍ୱାତନ୍ତ୍ର୍ୟ ଲକ୍ଷ୍ୟ କରାଯାଇଥାଏ ।

'ହେମପୁଷ୍ପ' କବିତା ସଙ୍କଳନର 'ପ୍ରାବୃଟ ସମ୍ଭାଷଣ' 'ସାଫୋର ବ୍ୟଥା', 'ବିରହୀ ଘନ', 'ହଂସଦୂତୀ', 'ବୈଠିକ' ଆଦି କବିତା ବିଭିନ୍ନ ସମୟରେ ଲେଖା ହୋଇଥିଲେ ମଧ୍ୟ ଏଥିରେ ମାନସିଂହଙ୍କ ବିରହ ଶୋକୋଚ୍ଛ୍ୱାସ ଦେଖାଦେଇଛି । କିନ୍ତୁ ଏହା 'ଧୂପ'ର କବିତା ଭଳି ବିଶେଷ ବଳିଷ୍ଠ ନୁହେଁ । 'ଘନଶର୍ବରୀ' କବିତାରେ ମାନସିଂହ କହୁଛନ୍ତି—

'ବିରହୀ-ଚାତୁରୀର ତୃପ୍ତି କାରଣରି
ଶପୂନ ବାପ ପର୍ଶେ ଲାଗରି
ମାନସିଂହର ନିଦ୍ରିତ ଅନ୍ତରେ
ପ୍ରଣୟ ଛଳଛଳ ଜାଗଇ !" (୮୨)

'ହେମଶସ୍ୟ' ଅନ୍ତର୍ଗତ ବିରହ କବିତା କବିଙ୍କର ଦାମ୍ପତ୍ୟ ଜୀବନର ସାମୟିକ ବିଚ୍ଛେଦଜନିତ ପ୍ରତିକ୍ରିୟା । ଏଥିରେ 'ଧୂପ'ର ତୀବ୍ରତା ନଥିଲେ ମଧ୍ୟ କବିତା କଳା ଦୃଷ୍ଟିରୁ ଉତ୍କୃଷ୍ଟ ଧରଣର । 'ବିରହ' 'ବିରହ ପ୍ରଲାପ', 'ଶ୍ରାବଣ ଅଭିସାର', 'ଅପେକ୍ଷା', 'ଘରମଧୁ', 'ହତସ୍ୱପ୍ନର ପନ୍ଥ' ଆଦିରେ ଏ ଚିତ୍ର ଦେଖିବାକୁ ମିଳେ—

"ଧାଏଁ ମନୋରଥ ପକ୍ଷୀ ଅବିରତ
ତୁମର କାଷ୍ଠ ଗବାକ୍ଷରେ,
ଦେଖିବାକୁ ତୁମେ ପ୍ରିୟୁଲାଗି ଭୂମେ
ଅଛ ଯେ ଶାୟିତା ବିଚ୍ଛେଦରେ ।" (୮୩)

୮୨—ଘନଶର୍ବରୀ ହେମପୁଷ୍ପ ମାନସିଂହ ଗ୍ରନ୍ଥାବଳୀ ୧ମ ଖଣ୍ଡ ପୃ.୧୪୭
୮୩—'ବିଚ୍ଛେଦଗାଥା'—'ହେମଶସ୍ୟ' ଗ୍ରନ୍ଥାବଳୀ ପୃ-୨୦୮

ବା

"ବିଚ୍ଛେଦରେ ବିଦେଶେ ଆଜି ବସି
ଦେଖୁଛି ତା'ର ଲୋଚନ,
ଆକାଶେ, କୁସୁମେ, ନକ୍ଷତ୍ରରେ ମିଶି
ଖୋଜୁଛି ମୋହ ବଚନେ।" (୮୪)

**ଅନୁଶୋଚନା**—ବର୍ଷାକାଳର ଗିରି ନଦୀର ଉଦ୍ଦାମତା ସବୁ ସମୟରେ ବା ସବୁ ସ୍ଥାନରେ ରହେନାହିଁ। ସମତଳ ଅଞ୍ଚଳରେ ପହଞ୍ଚିଲେ ତାହାର ଗତି ହୁଏ ମନ୍ଥର ଓ ବର୍ଷାକାଳ ପରେପରେ ତାହା ହୁଏ ନିର୍ମଳ, କ୍ଷୀଣ। ପ୍ରତ୍ୟେକ ମଣିଷର ଯୌବନ କାଳ ହେଉଛି ଉତ୍ତାଳ ଗିରିତଟିନୀ ସଦୃଶ। ବିବାହ ପରେପରେ ଏଥିରେ କେତେକାଂଶରେ ମନ୍ଥରତା ଆସିଥାଏ ଓ ବୟସର ବୃଦ୍ଧି ସଙ୍ଗେସଙ୍ଗେ ଏହାର ପରିବର୍ତ୍ତନ ଘଟିଥାଏ।

ମାନସିଂହଙ୍କ କବିତା ଆଲୋଚନାରୁ ଉପର୍ଯ୍ୟୁକ୍ତ ସତ୍ୟର ପରିଚୟ ମିଳୁଛି। ବିବାହ ପୂର୍ବର କବି ବା 'ଧୂପ'ର କବିକୁ ଆମେ ହେମଶସ୍ୟରେ ଅନୁତାପ କରିବାର ଦେଖୁଁ। ଧୂପରେ ଯେଉଁ କବି ପ୍ରେମିକାର କୋଳରେ ଜୀବନ ମରଣ ଭୁଲିବାକୁ ଆଶା କରିଥିଲେ, ସବୁ କିଶୋରୀର ଚିବୁକ ଧରି ରସିକ ପରି ବୁଲିବାର କାମନା କରିଥିଲେ, (୮୫) ଚିତାଭସ୍ମରେ ପ୍ରେମିକାର ପଦସ୍ପର୍ଶ ଲାଭ କରି ପୁନର୍ଜନ୍ମର ସ୍ୱପ୍ନ ଦେଖିଥିଲେ, ସମବୟସୀର ଚଲାପଥର ଘାସରେ ମିଶିବାକୁ କାମନା କରିଥିଲେ, ସେହି କବି ହେମଶସ୍ୟର

---

୮୪ -'ସର୍ବମସ୍ତୁ' 'ହେମଶସ୍ୟ' ଗ୍ରନ୍ଥାବଳୀ ପୃ-୨୮୧

୮୫— ବୁଲନ୍ତି ପୁଣି ମୁଁ ରସିକ ପରି
ସବୁ କିଶୋରୀର ଚିବୁକ ଧରି
ବୋଲନ୍ତି ସବୁର ବାନ୍ଧବ ମୁହିଁ
ଜାଣ ସୁମୁହିଁ—ତରୁଣ କବିର ଆଶା—
ଉତ୍କଳ ସାହିତ୍ୟ ୩୨ଶ ଭାଗ ୧ମ ସଂଖ୍ୟା ବୈଶାଖ ୧୩୩୫ ପୃ-୨

'ସୁରା ଓ ସୁଧା' କବିତାରେ ପ୍ରଥମ ପ୍ରଣୟକୁ ମଦ୍ୟ ଓ ଦାମ୍ପତ୍ୟ ପ୍ରେମକୁ ସୁଧା ଭାବରେ ଗ୍ରହଣ କରିଛନ୍ତି । ଏହି କବିତାଟି ମାନସିଂହ ପ୍ରାଣର ଅନୁଶୋଚନାର ଆଦ୍ୟ ସ୍ୱର ହେଲେ ମଧ୍ୟ 'ନବ ଜନମ ଓ ନାରୀର ଅଧିକାର କବିତାରେ ନାରୀ ମହତ୍ତ୍ୱର ଜୟଗାନ କରାଯାଇଛି । ଅନୁଶୋଚନାର କ୍ରମ ବିବର୍ତ୍ତନ ଦେଖାଦେଇଛି । ନିଜର ପୂର୍ବକୃତ ଦୁଷ୍କୃତିକୁ ସେ ପତ୍ନୀଙ୍କ ନିକଟରେ ପ୍ରକାଶ କରିବା ପାଇଁ ଅଗ୍ରସର ହୋଇ ଆସିଛନ୍ତି ।

କ୍ଷମାକର ସଖି, କ୍ଷମାକର
ଝୁଣ୍ଟି ପଡ଼ୁଥିବା ସାଥୀକୁ ସେନେହେ
ତୋଳଧର ।

× × ×

ଝୁଣ୍ଟିବାର ନୁହେଁ ପଦାଘାତ ପଥେ,
ଖସିଗଲି ବୋଲି ଭୁଲିନରେ ତତେ
ନଉକାରେ ଯନ୍ଧ କଣାଥାଏ, ତାର—
ଡୁବିବାକି ଦୋଷ ସମୁଦ୍ରର ? (୮୬)

'ଅକ୍ଷତ'ର ରଚନା ବେଳକୁ କବିଙ୍କ ପ୍ରାଣରେ ସ୍ଥିରତା ଆସିଯାଇଥିଲା । ତେଣୁ ସେ ଦେହବାଦ ପ୍ରେମପ୍ରତି ଅନାସ୍ଥା ପ୍ରକାଶ କରି ବିଶ୍ୱପ୍ରେମର ସନ୍ଧାନ ନେଇଛନ୍ତି । "ପୀଡ଼ିତ ମୁଁ ସେ ପ୍ରାଚୀନ ପ୍ରଣୟର ଘାରେ ।" (୮୭) ଅଂଶରୁ ତାଙ୍କର ପ୍ରଣୟ ସଚେତନତା ସ୍ପଷ୍ଟ । 'ଜୀବନଚିତା'ର ଫେରାଇ ଦିଅ କବିତାରେ କବି ସେହି କିଶୋର ବୟସକୁ ଫେରିଯାଇ ଜୀବନର ସମସ୍ତ ଅପକର୍ମକୁ ପୁଣି ସଂଶୋଧନ କରିବାକୁ ଇଚ୍ଛା ପ୍ରକାଶ କରିଛନ୍ତି । 'ନୂଗ୍ରୀ'ର କବିତା ସଙ୍କଳନରେ ପ୍ରଣୟ ଓ ବିରହର ଅର୍ଥ କବିଙ୍କ ନିକଟରେ ବଦଳି ଯାଇଛି—

"ପ୍ରଣୟର ଅର୍ଥ ଆଜି ଭିନ୍ନ ମୋ ନୟନେ" ବା

୮୬ 'କ୍ଷମାକର' ହେମଶସ୍ୟ ମାନସିଂହ ଗ୍ରନ୍ଥାବଳୀ ୧ମ ଭାଗ ପୃ-୨୩୪
୮୭—'ଅପର୍ଣ୍ଣା ପ୍ରେମ' ଅକ୍ଷତ ମାନସିଂହ ଗ୍ରନ୍ଥାବଳୀ ୧ମ ଭାଗ ପୃ ୨୯୦

ଆଜ ଦେହ ଖୋଜେ ଏକ ଦୁର୍ଲ୍ଲଭ ବିଦେହୀ ।" (୮୮)

'କୃଷ୍ଣା'ରେ ଅନ୍ୟତ୍ର କବିଙ୍କର ସେହି ଅନୁଶୋଚନା ଦେଖା-ଯାଇଛି—

"ପଶ୍ଚାତେ ଅନାଇ ଦେଖେ ଆସିଥିବା ବାଟେ
ଖାଲି ଭ୍ରମ ପ୍ରମାଦର ଶତ ଖତ ଗଦା ।" (୮୯)

'କୃଷ୍ଣା'ର ଗୁପ୍ତ ପ୍ରଣୟ କବିତାରେ ରହସ୍ୟବାଦୀ ଚିନ୍ତାଧାର ଦେଖାଦେଇଛି । ଯେଉଁ କବି ଦିନେ 'ଧୂପ' ହୋଇ ପ୍ରେୟସୀର ସ୍ପର୍ଶ ପାଇବା ପାଇଁ ଇଚ୍ଛା ପ୍ରକାଶ କରୁଥିଲେ ସେ ଗାଇ ଉଠିଲେ—

ଭାବିଥିଲି ଗୁଡ଼ ପୃଥିବୀ ବାଧା
ପୂଜିବି ସେ ମୋର ହୃଦୟ ରାଧା
ବଜାଇ ମୁରଲୀ ମୁଁ ଅହରହ,
କାହିଁ ବିରହ ?
ଅସର ଗୃନ୍ଧମୀ ଯାମିନୀ ତଳେ
ସେ ରାଧା କୋମଳ ଜଘନ ପରେ
ଜୀବନ ମରଣ ଯାଆନ୍ତି ଭୁଲି
ସପନ ଧରି (୯୦)

ସେହିକବି ପୁଣି 'କୃଷ୍ଣା'ରେ କହିଛନ୍ତି ।

"ସବୁମାୟା', ସବୁମିଥ୍ୟା', କ୍ଷୟଶୀଳ ସବୁ ଏ ଜଗତେ
ଜୀବନ—ନାଟକ ପଛେ ଏକମାତ୍ର ସତ୍ୟହିଁ ଈଶ୍ୱର ।" (୯୧)

'ଗାଏ ସେହି ମହାଗାନ'ରେ ମଧ୍ୟ ସମସ୍ୱର ଶୁଣାଯାଏ । ପ୍ରୌଢ଼ାବସ୍ଥାରେ ମଣିଷ ଅସହାୟ ବୋଧକରେ । ସେ ତାହାର ପୂର୍ବକର୍ମ ପାଇଁ ସମସ୍ତଙ୍କଠାରୁ କ୍ଷମା ଓ ବିଦାୟ ନେବାପାଇଁ ଇଚ୍ଛାକରେ—

---

୮୮—'ନୂତନ ପ୍ରଣୟ' 'କୃଷ୍ଣା' ମାନସିଂହ ଗ୍ରନ୍ଥାବଳୀ ୧ମ ଭାଗ ପୃ-୪୩୮
୮୯ - ଭ୍ରାନ୍ତିମୟ ଜୀବନ 'କୃଷ୍ଣା' ମାନସିଂହ ଗ୍ରନ୍ଥାବଳୀ ୧ମ ଭାଗ ପୃ-୪୬୩
୯୦—ତରୁଣ କବିର ଆଶା 'ଧୂପ', ମାନସିଂହ ଗ୍ରନ୍ଥାବଳୀ ୧ମ ଭାଗ ପୃ-୭୨
୯୧ —ମାୟାବାଦ—'କୃଷ୍ଣା' ମାନସିଂହ ଗ୍ରନ୍ଥାବଳୀ ୧ମ ଖଣ୍ଡ ପୃ. ୪୦୫

"ପ୍ରଣୟ ଯା'ରେ ଦେଇଛି ଥରେ
ପରମ-ପଂଠା ଅଶ୍ରୁ-ଜଳେ
ସେ ଯଦି ଦିଏ ନିଠୁର ବ୍ୟବହାର,
ପ୍ରତିଟି ତା'ର ଆଘାତ ପାଇଁ
ପରମ-ଶୁଭ ମରମେ ଧ୍ୟାୟି
ଅଧିକେ ଦେବ ସେନେହ ଉପହାର ।" (୯୨)

'ପଳାତକ ହେ ମୋର ଯୌବନ' କବିତାରେ ମାନସିଂହଙ୍କ ଜୀବନ ଦର୍ଶନର ରୂପ ମିଳିଥାଏ । ମୃତ୍ୟୁ ରୂପକ ମାଇଲଖୁଣ୍ଟର ଅଳ୍ପ ଦୂରରେ ରହି କବି ଗତଜୀବନର ଜମା ଖର୍ଚ୍ଚ ଦେଖିଛନ୍ତି । ମସ୍ତକର କେଶ ଶୁକ୍ଳ ହୋଇ ଆସିଛି, ସମାଜରେ ନିଜକୁ ଅପାଂକ୍ତେୟ ବୋଲି ଭାବି ନେଇଛନ୍ତି—

"ଏଣିକି କି ପ୍ରଥମ ମଳୟ ମୋ ପାଇଁକି ନ ଆଣିବ ଚିଠି ?
ପରିଚିତ ବନ୍ଧୁ ସେ ପ୍ରାଚୀନ, ଭୁଲିଯିବ ମୋତେ କିରେ ପିଠି ?
ଉପବନେ ପ୍ରଥମ ମଲ୍ଲିକା, ହସି ପୁଣି ଚାହିଁବ ଆକାଶେ,
ସେ କି ମତେ କହିବ ବିଦ୍ରୂପେ "ମୁଁ କେବଳ
ଯୌବନ ସକାଶେ ।" (୯୩)

ସବୁ ଜନଙ୍କର ବନମୟୂରେ ସେ କେବଳ ଚାହିଁଛନ୍ତି ପୂର୍ବ ଜୀବନର ସ୍ୱପ୍ନ; ସେ ଜମା ଖର୍ଚ୍ଚ ପାଇଁ ଚାହିଁ ନାହାନ୍ତି କି କେବେ ବଞ୍ଚିବାର ଅର୍ଥ ଖୋଜିନାହାନ୍ତି—

ସବୁ ନିଅ ଆପତ୍ତି ମୋ ନାହିଁ;
ପଳାତକ ହେ ମୋର ଯୌବନ,

---

୯୨ – 'ଆଶୀର୍ବାଦ' 'ସିନ୍ଧୁ ଓ ବିନ୍ଦୁ' ମାନସିଂହ ଗ୍ରନ୍ଥାବଳୀ ୨ୟ ଖଣ୍ଡ ପୃ. ୫୩୦
୯୩ – ପଳାତକ ହେ ମୋର ଯୌବନ 'ସିନ୍ଧୁ ଓ ବିନ୍ଦୁ' ପୃ. ୫୧୮

କହୁଥାଏ ପଦ୍ମ ସେ ମଳୟ
"ଆସିଛୁ ମୁଁ ଖୋଲ ବାତାୟନ ।" (୯୪)

ବହୁ କଥାକୁ ଉପଯୁକ୍ତ ଶବ୍ଦ ମାଧ୍ୟମରେ ଅଳ୍ପ ଭାଷାରେ ରୂପଦାନ କରିବା ହେଉଛି ମହାକବି ମାନଙ୍କର ଲକ୍ଷଣ । ଡଃ ମାନସିଂହଙ୍କ ରଚନାରେ ଆମେ ଏହି ବିଶେଷତ୍ୱ ଲକ୍ଷ୍ୟ କରିଥାଉ ତାଙ୍କ କବିତାରେ ବର୍ଣ୍ଣନା ସଙ୍ଗେ ସଙ୍ଗେ ଆମ ଆଖି ଆଗରେ ଏକ ଜୀବନ୍ତ ପରିବେଶ ଦେଖାଯାଏ । ଏଥିରେ ପାଠକଙ୍କୁ ଚିନ୍ତା ରାଜ୍ୟରେ ବୁଡ଼ିରହି କଳ୍ପନା କରିବାକୁ ପଡେନାହିଁ । ପ୍ରେମିକ କବି ମାନସିଂହ ସତ୍ୟ, ଶିବ ଓ ସୁନ୍ଦରର ଉପାସକ ଥିଲେ । ତାଙ୍କ ସାହିତ୍ୟରେ ସକ୍ରିୟ ଭୂମିକା ସତ୍ୟହିଁ ନେଇଛି ।

ମାନସିଂହ ପ୍ରେମ କବିତାର ବିଶେଷତ୍ୱ ହେଉଛି, ସେ ଏହି ଗୋଡ଼ମାଟି ଧରାର କବି । ସେ ସ୍ୱପ୍ନଲୋକରେ ଭାସିବୁଲି ପଳାୟନବାଦୀ ହୋଇ ନାହାନ୍ତି; କିଛିକ ରସିକତା ଓ ଶୃଙ୍ଗାରିକତା ମଧ୍ୟରେ ପ୍ରାଣହୀନ ବର୍ଣ୍ଣନା ଦେଇ ଦୈହିକ ସମ୍ଭୋଗ ଲାଳସା, ରତିବିଳାସ, ଓ ଶୃଙ୍ଗାରକୁ ଶାସ୍ତ୍ରସମ୍ମତ ପବିତ୍ର କରିବା ପାଇଁ ଅପାର୍ଥିବତାର ଯୋଡ଼ଣୀ ଦେଇନାହାନ୍ତି । ବୈଷ୍ଣବ କବିଙ୍କର ଭୋଗ ସ୍ଥାନରେ ତ୍ୟାଗ, ଶରୀର ମାତ୍ରା ସ୍ଥାନରେ ମଧୁର ଆକର୍ଷଣ, ଗ୍ରହଣ ସ୍ଥାନରେ ପ୍ରତିଦାନ, ଓ ଆତ୍ମ-ନିବେଦନକୁ ପରିହାର କରିଛନ୍ତି । କବି ସଚ୍ଚିଦାନନ୍ଦ ରାଉତରାୟ ମାନସିଂହଙ୍କ ବିଷୟରେ ଲେଖିଛନ୍ତି—"ଏ କଥା ସତ ଯେ, ଆମ ସମସ୍ତଙ୍କ ଅପେକ୍ଷା ମାନସିଂ ଥିଲେ ଅତି ଅଧିକ ମାତ୍ରାରେ ଓଡ଼ିଶାର ସ୍ଥାୟୀ ବାସିନ୍ଦା × ×× ସମୟର କ୍ଷିପ୍ର ପ୍ରଭଞ୍ଜନକୁ ଏଡ଼ାଇ ଦେଇ ମାଟି କାମୁଡ଼ି ପଡ଼ି ରହିବାର ଲୋକ ମାନସିଂହଙ୍କ ଛଡ଼ା ମୁଁ ଆଉ କାହାକୁ ଦେଖିନାହିଁ ? × × × ତେବେ ତାଙ୍କ ମୋ ମଧ୍ୟରେ ଯେ ଗୋଟାଏ ମୌଳିକ ତଫାତ୍ ନଥିଲା ତା ନୁହେଁ । ମୁଁ ଅତୀତକୁ ରୂପାନ୍ତର ମଧ୍ୟରେ ପାଇବାକୁ ଖୋଜୁଁଥିଲି ବେଳେ ସେ ଅତୀତକୁ ଅତୀତ ମଧ୍ୟରେହିଁ ଖୋଜୁଥିଲେ । ଏହାହିଁ ଥିଲା ଆମ ଦୃଷ୍ଟିକୋଣ

ମଧ୍ୟରେ ଏକ ବିରାଟ ବ୍ୟବଧାନ ।" (୧୫) ବାସ୍ତବରେ ମାନସିଂହଙ୍କ ନାୟକ ନାୟିକା ଓ ପ୍ରଣୟ ଚେତନା ଏହି ମାଟିରୁହିଁ ଉଦ୍‌ଭୂତ । ଏହାର ରୂପାୟନରେ ସମୟର ପ୍ରଭାବକୁ ସେ ସହଜରେ ଏଡ଼ିଦେଇ ପାରିଛନ୍ତି ।

ଖ୍ରୀ ୧୯୭୩ ମସିହା କୁମାର ପୂର୍ଣ୍ଣିମା ରାତିରେ ସ୍ୱଦେଶ ପ୍ରେମୀ, ସୌନ୍ଦର୍ଯ୍ୟପିପାସୁ, ପ୍ରେମିକ କବିଙ୍କର ଦେହାବସାନ ଘଟିଲା । ଆଜୀବନ କନ୍ଦା କୁମାର ଶରବ୍ୟ ହୋଇ ବି କବି ସୃଷ୍ଟି କରିଛନ୍ତି ଆନନ୍ଦର କାବ୍ୟ । ସେ ଅଭିମାନୀ କବିଙ୍କର ବୋଧହୁଏ ଇଚ୍ଛା ଥିଲା ସେହି ଛଳନା ପ୍ରିୟ ଜାତି ତାଙ୍କର ଶବ ଶୋଭାଯାତ୍ରାରେ ଭାଗ ନ ନେଉ । କୁମାର ପୂର୍ଣ୍ଣିମା ରାତିରେ ମଧ୍ୟଆକାଶ ଅନ୍ଧକାର ହୋଇ ଯାଇଥିଲା; ପ୍ରକୃତିରେ ଝଡ଼ବର୍ଷା ଲାଗିରହିଥିଲା । ଯେଉଁ ଦେଶ ଓ ପ୍ରକୃତିକୁ ଭଲ ପାଇବା ତାଙ୍କ ଜୀବନର ଲକ୍ଷ୍ୟଥିଲା, ସେହି ପ୍ରକୃତିରେ ପ୍ରଳୟ ଆସିଲା, ବର୍ଷା ଝରିଲା, ପ୍ରକୃତି କାନ୍ଦିଲା । ଏହା ବୋଧହୁଏ କବିଙ୍କ ପାଇଁ ଉପଯୁକ୍ତ ସମ୍ମାନ ।

"କୋଟିକ କୋଟି ହୃଦୟ ଗୃହେ
ଧୋଇବି ବସି, ଜୀବନ ପାୟେ
ପ୍ରଣୟ-ପୁଣ୍ୟ, ଉଷ୍ଣ ଅଶ୍ରୁଜଳେ,
ଅୟୁତ ବାହୁ ଗୃହେଁ ମୋ ଦେହେ
ଆଶ୍ଳେଷିବ ନିବିଡ଼ ସ୍ନେହେ
ବିଦାୟ ଯେବେ, ନେବି ଏ ଧରାପରେ ।"
ଆଶୀର୍ବାଦ—ମାନସିଂହ



---

୧୫—କବି ମାୟାଧର ମାନସିଂହ, ଏକ ସ୍ୱପ୍ନ ପ୍ରୟାଣ
ସଚ୍ଚିଦାନନ୍ଦ ରାଉତରାୟ କୋଣାର୍କ ୧୫ଶ ବର୍ଷ ୮ମ ସଂଖ୍ୟା ପୃ. ୭୮୦

# ନାଟ୍ୟକାର ମାନସିଂହଙ୍କ
# ନାଟ୍ୟ ମାନସ

ଉତ୍କଳର ମାୟାଧର ମାନସିଂହ (୧୯୦୫-୧୯୭୩) ମୁଖ୍ୟତଃ କବି ହିସାବରେ ପ୍ରତିଷ୍ଠା ଲାଭ କରିଥିଲେ ମଧ୍ୟ ପ୍ରବନ୍ଧ ଓ ସମାଲୋଚନା ସାହିତ୍ୟକୁ ତାଙ୍କର ଦାନ ଅପ୍ରଚୁର ନୁହେଁ । ତାଙ୍କ ପ୍ରତିଭାର ଅନ୍ୟ ଏକ ଦିଗ ନାଟକ । ସଂକ୍ଷେପରେ କହିଲେ କବି ସମାଲୋଚକ ଏବଂ ନାଟ୍ୟକାର ମାନସିଂହ ଆମର ଆଲୋଚ୍ୟ ବିଷୟ ଅଟନ୍ତି କିନ୍ତୁ ତାଙ୍କର କବିତ୍ୱ ପ୍ରତିଷ୍ଠା ଅବିସଂବାଦିତ । ପ୍ରବନ୍ଧ ଓ ସମାଲୋଚନା ତଥା ନାଟକ ସମ୍ବନ୍ଧରେ ଉଲ୍ଲେଖଯୋଗ୍ୟ ସମାଲୋଚନା ଦୃଷ୍ଟିଗୋଚର ହୁଏନାହିଁ । ଏହି ପ୍ରବନ୍ଧରେ ମାନସିଂହଙ୍କ ସେହି ଅନାଲୋଚିତ ନାଟକ ସମ୍ବନ୍ଧରେ ଆଲୋକପାତ କରିବାର ଚେଷ୍ଟା ହୋଇଛି । ଜଣାଯାଏ ଜଣେ ନାଟ୍ୟକାରର ସମ୍ମାନ ନେବା ପାଇଁ ନୁହେଁ, କର୍ତ୍ତବ୍ୟର ଅନୁରୋଧରେ ବା ଜାତୀୟତାର ଉଦ୍‌ବୋଧନ ପାଇଁ କେବେ କେମିତି ସେ ନାଟକ ରଚନା କରିଥିଲେ । ଓଡ଼ିଆ ନାଟ୍ୟ-ସାହିତ୍ୟକୁ ଦୃଷ୍ଟିପାତ କଲେ ଜଣାଯାଏ ଯେ ଖ୍ରୀ ୧୮୭୭ରୁ ଓଡ଼ିଆ ନାଟକର ଜନ୍ମ ହୋଇଥିଲେ ମଧ୍ୟ ଖ୍ରୀ ୧୯୨୦ ପରେ ହିଁ ନାଟକ ରଚନାର ସ୍ୱର୍ଣ୍ଣଯୁଗ ଆରମ୍ଭ ହେଲା । ନାଟ୍ୟକାର ଅଶ୍ୱିନୀ କୁମାର ଥିଲେ ଏହାର କର୍ଣ୍ଣଧାର ।

ମାନସିଂହ କବି ଭାବରେ ପ୍ରଥମରୁ ଖ୍ୟାତିଲାଭ କରିଥିଲେ ହେଁ, କୋଡ଼ିଏ ବର୍ଷ ବୟସରେ ଅର୍ଥାତ ଖ୍ରୀ ୧୯୨୫ ମସିହାରେ ପ୍ରଥମ ନାଟକ ରଚନା କରିଥିଲେ । ପ୍ରଥମ ନାଟିକା "ରାଜକବି ଉପେନ୍ଦ୍ର" (୧୯୨୮) (୧)।

---

୧ — ଏହା କଟକ ସତ୍ୟବାଦୀ ପ୍ରେସରେ ମୁଦ୍ରିତ ଓ ପ୍ରଗତି ସଂଘ ଦ୍ୱାରା ପ୍ରକାଶିତ । ଏହାର ଭୂମିକାରେ ମାନସିଂହ ଲେଖିଛନ୍ତି — "ଏ ଲେଖା ପ୍ରାୟ ତିନିବର୍ଷ ତଳର ।" ଅର୍ଥାତ୍ ରାଜକବି ରଚନାର ସମୟ ହେଉଛି ଖ୍ରୀ ୧୯୨୫ ମସିହା, କିନ୍ତୁ ଏ ପୁସ୍ତକରେ ଥିବା ଶେଷ ଗୀତଟି "କାନନେ ଆଜ ମୋର ଚିତ୍ତଚୋର ।" ପ୍ରଥମେ ଜୀବନସ୍ପନ୍ଦନ ନାମରେ ଉତ୍କଳ ସାହିତ୍ୟ ୩୦ଶ ଭାଗ ୧୨ଶ ସଂଖ୍ୟା ୧୯୩୫ ସାଲ ୧୯୨୭ ଜାନୁୟାରୀରେ ପ୍ରକାଶିତ ହୋଇଥିଲା ।

ଏହାପରେ ତାଙ୍କର ପରବର୍ତ୍ତୀ ନାଟିକା 'ପୁଷ୍ପିତା' (୧୯୩୦) (୨)। ଏହି ନାଟିକାଟି ସହକାରରେ ପ୍ରକାଶ ଲାଭ କରିବାର ପର ମାସରେ ଶ୍ରୀ ହରିଶ୍ଚନ୍ଦ୍ର ବଡ଼ାଲ ଏହାକୁ ସମାଲୋଚନା କରିଛନ୍ତି । 'ପୁଷ୍ପିତା ଲେଖକର କୈଫିୟତ୍' ନାମରେ ମାନସିଂହ ଏହାର ଉତ୍ତର ସହକାରରେ ଦେଇଛନ୍ତି (୩)। ଏଠାରେ ସ୍ମରଣ କରାଇ ଦିଆଯାଇ ପାରେ ଯେ ମାନସିଂହଙ୍କ ବହୁଜନ ପଠିତ 'ଧୂପ' ପରବର୍ଷ ପ୍ରକାଶ ପାଇଲା । ପୁଷ୍ପିତାର ରଚନା ସମୟରେ ମାନସିଂହ ଯେପରି 'ଧୂପ' ସୃଷ୍ଟି ପାଇଁ ଭୂମି ପ୍ରସ୍ତୁତ କରୁଥିଲେ । ତୃତୀୟ ନାଟିକା ପୂଜାରିଣୀ (୧୯୩୨) (୪) ପୁରୀ ଓ ସମ୍ବଲପୁରର ବାଳିକା ହାଇସ୍କୁଲରେ ଅଭିନୀତ ହୋଇଥିବାର ଲେଖକ ଉଲ୍ଲେଖ କରିଛନ୍ତି । ଏହାକୁ ନୃତ୍ୟ-ନାଟିକା କରିବାପାଇଁ ଲେଖକ ପରବର୍ତ୍ତୀ କାଳରେ କେତେକ ପରିବର୍ତ୍ତନ ଓ ସଂଯୋଜନ କରିଥିଲେ । ଚତୁର୍ଥ ନାଟକ ନଷ୍ଟନୀଡ଼ (୧୯୩୯) (୫)ର ଖ୍ରୀ ୧୯୬୪ ମସିହା ସଂସ୍କରଣରେ ମାନସିଂହ ଲେଖିଛନ୍ତି ।—"ଏହା ପ୍ରଥମେ କମାପଡ଼ାରେ ଲେଖାହୋଇ ଅଭିନୀତ ହୋଇଥିଲା, ପରେ ଆକାଶବାଣୀ କଟକରୁ ବହୁବାର ପ୍ରଚାରିତ ହୋଇଛି ।" ଏହାର ପରବର୍ତ୍ତୀ ନାଟକ 'ବାରବାଟୀ' ନାଟ୍ୟକାରଙ୍କର ଏକ ଦୀର୍ଘ ପରିକଳ୍ପନା । ଏହି ନାମକରଣରେ ତିନୋଟି ନାଟକ ସୃଷ୍ଟି ହୋଇଥାନ୍ତା; ପ୍ରଥମ ଖଣ୍ଡଟି ମାତ୍ର ପ୍ରକାଶ ପାଇଛି । ଏହାର ଦ୍ୱିତୀୟ ସଂସ୍କରଣ ଖ୍ରୀ ୧୯୫୧ ମସିହାରେ ପ୍ରକାଶ ପାଇଲା ବେଳେ ମୁଖବନ୍ଧରେ ଲେଖାଥିଲା— "ବାରବାଟୀ ତିନିଖଣ୍ଡରେ ଆତ୍ମପ୍ରକାଶ କରିବାର ପରିକଳ୍ପନା ଥିଲା; ପ୍ରଥମ ଖଣ୍ଡର ଦ୍ୱିତୀୟ ସଂସ୍କରଣ

---

୨—ଏହା ଖ୍ରୀ ୧୯୩୦ ମସିହାରେ ରଚିତ ହୋଇ ସହକାର ୧୧ଶ ବର୍ଷ ୪ର୍ଥ ସଂଖ୍ୟା ଶ୍ରାବଣ ୧୩୩୭ ଜୁଲାଇ ଖ୍ରୀ ୧୯୩୦ରେ ପ୍ରକାଶିତ ହୁଏ । ପୁଷ୍ପିତାର ଦ୍ୱିତୀୟ ସଚିତ୍ର ମୁଦ୍ରଣ ଖ୍ରୀ ୧୯୫୩ ମସିହାରେ ପ୍ରକାଶିତ ହୋଇଥିଲା ।

୩—'ସହକାର' ୧୧ଶ ଭାଗ ଆଶ୍ୱିନ ୧୩୩୮ ସାଲ ସେପ୍ଟେମ୍ବର (୧୯୩୦) ସଂଖ୍ୟା

୪—ଏହାର ପ୍ରକାଶକ ସବୁଜ ସାହିତ୍ୟ ସମିତି । ଖ୍ରୀ ୧୯୫୩ ମସିହାରେ ପୂଜାରିଣୀର ୪ର୍ଥ ସଂସ୍କରଣ ପ୍ରକାଶ ପାଇଲାବେଳେ ନାଟ୍ୟକାର ଏହା ଉପରେ ଏକ ଦୀର୍ଘ ମନ୍ତବ୍ୟ ଦେଇଛନ୍ତି ।

୫—'ନଷ୍ଟନୀଡ଼' ଖ୍ରୀ ୧୯୩୮ରେ ମୁଦ୍ରିତ ଓ ଖ୍ରୀ ୧୯୩୯ରେ ପ୍ରକାଶିତ

ହେଲା, କିନ୍ତୁ ଅନ୍ୟ ଦୁଇଖଣ୍ଡର ପରିକଳ୍ପନା ହୋଇନାହିଁ । × × × ମୋର ଏବେବି ଆଶା ଅଛି ଯେ ଅନ୍ତତଃ ଶେଷ ଖଣ୍ଡିକ ହିଁନେ ଶେଷ କରିବି (୬) । ଏହାପରେ ଲେଖକ ପରବର୍ତ୍ତୀ ଅଂଶକୁ ଲେଖିଛନ୍ତି କି ନାହିଁ ସେ ବିଷୟରେ କିଛି ସୂଚନା ମିଳେନାହିଁ । ଏହି 'ବାରବାଟି' ନାଟକ ଛପାହେବା ପୂର୍ବରୁ ଆଠଗଡ଼ ଓ ଆଠମଲ୍ଲିକରେ ଅଭିନୀତ ହୋଇଥିଲା । ସେ ଅଭିନୟ ଦେଖାଗଲା ପରେ ଲେଖକ ନାଟକରେ କେତେକ ପରିବର୍ତ୍ତନ କରିଥିଲେ । 'ବୁଦ୍ଧ' ନାଟକ ପ୍ରଥମେ ଖ୍ରୀ ୧୯୫୧ ମସିହା ଅକ୍ଟୋବର ୯ ତାରିଖରେ ଗଙ୍ଗାଧର ମେହେର କଲେଜର କର୍ମଚାରୀ ଓ ଛାତ୍ରବୃନ୍ଦ ଏବଂ ଲେଡ଼ି ଲୁଇସ୍ ବାଳିକା ବିଦ୍ୟାଳୟର ଛାତ୍ରୀମାନଙ୍କ ଦ୍ୱାରା ଅଭିନୀତ ହୋଇଥିଲା (୭) । ଏହାର ପରବର୍ତ୍ତୀ ରଚନା ଏକ ଏକାଙ୍କିକା "ଶାସନ-ଚକ୍ର" ଖ୍ରୀ ୧୯୫୧ରେ ରଚିତ । 'ଦୁର୍ଭିକ୍ଷ' ନାଟିକା, ଖ୍ରୀ ୧୯୫୫ରେ ପ୍ରକାଶିତ ହୋଇଥିଲା । ମାନସିଂହଙ୍କ ସୃଷ୍ଟି ମଧ୍ୟରେ 'ବୁଦ୍ଧଦୃଷ୍ଟି' ଓ ପୁଷ୍ପାଭିନୟ ଦୁଇଟି କ୍ଷୁଦ୍ର ଲେଖା । ଶେଷ ସମୟକୁ ମାନସିଂହଙ୍କ ନାଟ୍ୟ ପ୍ରତିଭାର ଏକ ଅବକ୍ଷୟ ଦେଖିବାକୁ ମିଳେ । ଛାତ୍ରାବସ୍ଥାରୁ ମାନସିଂହଙ୍କ ରଚନାରେ ଜାତୀୟ ଚେତନାର ସ୍ୱର ଦେଖା ଦେଇଥିଲା । ହାଇସ୍କୁଲ ଜୀବନରେ ତାଙ୍କର ରଚିତ କବିତା ଗୁଡ଼ିକରେ ଏହା ସ୍ପଷ୍ଟ । ଅବଶ୍ୟ ମାନସିଂହ ତାଙ୍କର ପ୍ରେମ କବିତାପାଇଁ ବିଶେଷ ପରିଚିତ । ତାଙ୍କ ନାଟକରେ ପ୍ରେମ ଚେତନା ଅପେକ୍ଷା ଜାତୀୟ ଚେତନାହିଁ ମୁଖ୍ୟ ପ୍ରତି-ପାଦିତ ବିଷୟ ।

ଜନ୍ମ ମାଟିର ଅତୀତ ଗୌରବ ସହିତ, ସମସାମୟିକ ରାଜନୈତିକ ପରିବେଶ, ତାଙ୍କ ମନରେ ଜାତୀୟ ଚେତନା ଉଦ୍ରେକ କରିଥିଲା । କୋଡ଼ିଏ ବର୍ଷ ବୟସରେହିଁ ପ୍ରଥମ ନାଟିକା 'ରାଜକବି' ଲେଖିଥିଲେ । ପରବର୍ତ୍ତୀ

୬—ମାନସିଂହ ଗ୍ରନ୍ଥାବଳୀ ୨ୟ ଭାଗ ପୃ-୬୧୦-୧୯୭୪ ମୁଦ୍ରଣ

୭—ମାନସିଂହ ଗ୍ରନ୍ଥାବଳୀ ଦ୍ୱିତୀୟଭାଗ ପୃ-୭୭୧—୧୯୭୪ ମୁଦ୍ରଣ । 'ବୁଦ୍ଧ' ନାଟକ ପ୍ରଥମେ ଝଙ୍କାର ୧ମ ବର୍ଷ ୧୨ଶ ସଂଖ୍ୟା ପୃ-୧୦୧୩ ମୀନ (୧୩୫୭) ମାର୍ଚ୍ଚ ୧୯୫୦ରୁ ଧାରାବାହିକ ଭାବରେ ପ୍ରକାଶ ପାଇଛି ।

କାଳରେ ସଂସ୍କୃତ ନାଟକ ଓ ଇଂରାଜୀ ନାଟକର ବ୍ୟାପକ ଅଧ୍ୟୟନ ତାଙ୍କ ନାଟକ ରଚନାରେ ପ୍ରେରଣା ଯୋଗାଇଥିଲା । ସେକ୍‌ସପିୟର ଜର୍ଜ ବର୍ଣ୍ଣାଡ଼ଶ', 'ଇବସନ' 'ଇମୃଠଘ' ପ୍ରଭୃତିଙ୍କ ନାଟକ ସେ ଅଧ୍ୟୟନ କରିଥିଲେ । ସେ ସମୟକୁ ଓଡ଼ିଆରେ କେତେକ ନାଟକ ରଚିତ ହୋଇ ଅଭିନୀତ ହୋଇଥାଏ । ପଣ୍ଡିତ ମୃତ୍ୟୁଞ୍ଜୟ ରଥ ଓ ପଣ୍ଡିତ ଗୋପୀନାଥ ନନ୍ଦ ଶର୍ମା ପ୍ରଭୃତି ସଂସ୍କୃତ ନାଟକ ଓଡ଼ିଆରେ ଅନୁବାଦ କରିଥାନ୍ତି । ଏହି ସବୁ ପରିବେଶ ଓ ପରିସ୍ଥିତିରେ ମାନସିଂହ ନାଟକ ଲେଖିବାକୁ ଆରମ୍ଭ କଲେ ।

**ପୃଷ୍ଠଭୂମି**—ମାନସିଂହଙ୍କ ନିଜ ନାଟକ ରଚନାର ପୃଷ୍ଠଭୂମି ସମ୍ବନ୍ଧରେ ସ୍ୱ ମତାମତ ପ୍ରଣିଧାନଯୋଗ୍ୟ । 'ରାଜକବି' ନାଟିକାର ମୁଖବନ୍ଧରେ ସେ କହନ୍ତି—"ଉପେନ୍ଦ୍ରଙ୍କ ସମସ୍ତ ଜୀବନଟା ରହସ୍ୟମୟ ହୋଇରହିଛି, ଏହି ରହସ୍ୟହିଁ ମୋତେ ନାଟିକା ଲେଖିବା ପାଇଁ ଉଦ୍‌ବୁଦ୍ଧ କରିଥିଲା ।"(୮) ମାତ୍ର ଏଠାରେ କବିଗୁରୁ ରବୀନ୍ଦ୍ରନାଥଙ୍କ 'ବାଲ୍ମୀକି ପ୍ରତିଭା' ସ୍ୱତନ୍ତ୍ର ଆଲୋଚନାର ଅପେକ୍ଷା ରଖେ । 'ପୂଜାରିଣୀ'ର ମୁଖବନ୍ଧରେ ସେ କହିଛନ୍ତି—"ପିଲାବେଳୁ ଚଳିକା ପାଠକଲାବେଳୁ ଏ ବଚନ ଓ ଏହି ମହୀୟସୀ ବାଳିକା ଲେଖକ ମନରେ ଗଭୀର ରେଖାପାତ କରିଥିଲା । ଏହି ନଗଣ୍ୟ ରଚନାରେ ମୁଁ ତାହାକୁହିଁ ଯଥାଶକ୍ତି ରୂପଦାନ କରିଛି । × × × ସମ୍ଭବତଃ ଏମ୍. ଏ. ପଢୁଥିଲାବେଳେ ଏହି ନାଟିକାଟି ଲେଖିଥିଲି × × × ଯେତେବେଳେ ଆଇରିଶ କବି 'ଇଏଟ୍‌ସ'ଙ୍କ କୌଣସି ଏକ କ୍ଷୁଦ୍ର ନାଟକରେ ଏଇ ଭାବଟିର ଆଭାସ ପାଇ ମୋର ନିଜର ମାନସିକ କ୍ରିୟା ପାଇଁ ମୁଁ ଯେପରି ସମର୍ଥନ ପାଇଲି । ତାପରେ ସମ୍ପୂର୍ଣ୍ଣ ଓଡ଼ିଆ ଭୂମିକାରେ ଏଇ ଭାବଟିକୁ କପରି ରୂପ ଦିଆଯାଇପାରେ ଚିନ୍ତା କରୁକରୁ ମୁଁ ଏହି ସାକ୍ଷୀଗୋପାଳ ଲକ୍ଷ୍ମୀ କିମ୍ବଦନ୍ତୀକୁ ପରୀକ୍ଷା ପାଇଁ

**୮—ମାନସିଂହ ଗ୍ରନ୍ଥାବଳୀ ଦ୍ୱିତୀୟ ଭାଗ ପୃ-୪୭୧ ନବସଂସ୍କରଣର ଭୂମିକା ୧୯୬୪ ମୁଦ୍ରଣ ।**

ଗ୍ରହଣ କରନେଲି” (୯) । ‘ନଷ୍ଟମାନ୍ତ’ ସାମାଜିକ ନାଟକଟିରେ ମାନସିଂହଙ୍କ ନାଟ୍ୟପ୍ରତିଭାର ବିକାଶ ଦେଖାଯାଏ । ସେ ସମୟର ଅବସ୍ଥା ଓ ନିଜ ନାଟକ ପୃଷ୍ଠଭୂମି ଉପରେ ସେ ଲେଖିଛନ୍ତି—“ଏବେ ଓଡ଼ିଶାରେ ନାଟକ କହିଲେ ସାମାଜିକ ନାଟକ ବୁଝାଉଅଛି । ମୁଖ୍ୟ କାରଣ ହେଉଛି ବଙ୍ଗଳାରେ ବି ଏବେ ଏଇ ଧୂମ୍ ଚାଲିଛି । ଆମେ ଯୁବ ଥିଲାବେଳେ ଅବସ୍ଥା କିନ୍ତୁ ସମ୍ପୂର୍ଣ୍ଣ ଓଲଟା ଥିଲା । ଆମେ ସେତେବେଳେ ଇଂରାଜୀରେ ବର୍ଣ୍ଣାଡ଼ଶ’ ଇବସନ୍‌ଙ୍କ ନାଟକ ପଢ଼ିଲୁଣି । ତେଣୁ ଆମେ ଚାହୁଁଥିଲୁ ଯେ, ଓଡ଼ିଶାର ରଙ୍ଗମଞ୍ଚରେ ସେହିପରି ନାଟକସବୁର ଆବିର୍ଭାବ ହେଉ; କିନ୍ତୁ ଥିଏଟର ମ୍ୟାନେଜର ଓ ଅଭିନେତାଗଣ ସାମାଜିକ ନାଟକ କହିଲେ ସେତେବେଳକୁ ନାସିକାକୁଞ୍ଚନ କରୁଥିଲେ (୧୦) ।” ଅବଶ୍ୟ ଏହି ନାଟକ ‘ଉତ୍କଳ ସାହିତ୍ୟ ସମାଜ’ର ସାମାଜିକ ନାଟକ ପ୍ରତିଯୋଗିତା ପାଇଁ ଲେଖା ହୋଇଥିଲା । ‘ବାରବାଟୀ’ ନାଟକର ମୁଖବନ୍ଧରେ ମାନସିଂହ ଲେଖିଛନ୍ତି—“ଉତ୍କଳର ଗୌରବମୟ ଅତୀତର କେତେକାଂଶକୁ ନାଟକାକାରରେ ସଜେଇ ଥୋଇବାର ବାସନା ଲେଖକର ମନରେ ବହୁ ବର୍ଷ ହେଲା ଜାଗ୍ରତ ରହିଛି । କ୍ରମେ କ୍ରମେ ଲେଖକର କଳ୍ପନା ବାରବାଟୀକୁ କେନ୍ଦ୍ର କରି ଗଢ଼ି ଉଠିଛି । କାରଣ ଷୋଡ଼ଶ ଶତାବ୍ଦୀରେ ଉତ୍କଳର ଅଧଃପତନ ପର୍ଯ୍ୟନ୍ତ ଚାରିଶତ ବର୍ଷଧରି ‘ବାରବାଟୀ’ର ଇତିହାସହିଁ ଉତ୍କଳର ଇତିହାସ (୧୧) । କିନ୍ତୁ ‘ବୁଦ୍ଧ’ ନାଟକ ଲେଖିଲାବେଳେ ମାନସିଂହଙ୍କ ଚିନ୍ତାଧାରାର ପରିବର୍ତ୍ତନ ଦେଖାଦେଇଛି । ସେତେବେଳକୁ ମାନସିଂହ ବୌଦ୍ଧଧର୍ମ ପ୍ରତି ଆକୃଷ୍ଟ ହୋଇସାରି ଥିବାରୁ, ସେହି ଧର୍ମର ଉଦାର ଭାବଧାରାରେ ଉଦ୍‌ବୁଦ୍ଧ ହୋଇ ସେ ସମସ୍ତ ପ୍ରକାର ପ୍ରାଦେଶିକତା ବା ସାମ୍ପ୍ରଦାୟିକତାର ଊର୍ଦ୍ଧ୍ୱରେ ରହି ମହାମାନବୀୟ ଚିନ୍ତାର ପ୍ରକାଶ କରିଛନ୍ତି । ‘କାହିଁକି ଏ ନାଟକ ଲେଖିଲି’ କୈଫିୟତ୍ ଦେବାକୁ ଯାଇ

---

**୯—ମାନସିଂହ ଗ୍ରନ୍ଥାବଳୀ ଦ୍ୱିତୀୟଖଣ୍ଡ ପୃ-୪୬୧—ନବସଂସ୍କରଣର ଭୂମିକା ୧୯୬୪ ମୁଦ୍ରଣ**

**୧୦—ନବସଂସ୍କରଣରେ କଥିତ ବକ୍ତବ୍ୟ—ମାନସିଂହ ଗ୍ରନ୍ଥାବଳୀ ୨ୟ ଭାଗ ପୃ-୫୬୧**

**୧୧—ପ୍ରଥମ ସଂସ୍କରଣର ଭୂମିକା ‘ବାରବାଟୀ’ ନାଟକ—ମାନସିଂହ ଗ୍ରନ୍ଥାବଳୀ ଦ୍ୱିତୀୟ ଭାଗ ପୃ-୬୦୧**

ମାନସିଂହ ଲେଖିଛନ୍ତି—"ନିଜ ମନର କ୍ଷୁଧା ମେଣ୍ଟାଇବା ପାଇଁ ମୁଁ ମଝିରେ ମଝିରେ ବିଭିନ୍ନ ଧର୍ମଶାସ୍ତ୍ର ଆଲୋଚନା କରିଥାଏ । ଏ ସମସ୍ତଙ୍କ ଭିତରେ ବୁଦ୍ଧ ଓ ତାଙ୍କ ବାଣୀ ମୋ ଚିତ୍ତକୁ ଅଧିକ ଅଭିଭୂତ କରିବାରୁ ତାଙ୍କର ଜୀବନ ଓ ତତ୍ତ୍ୱ ଅଧିକ ଆଲୋଚନା କଲି (୧୨) ।" ଦୁର୍ଭିକ୍ଷ ନାଟିକା ଲେଖା ପାଇଁ ମାନସିଂହ ଏକ ବଙ୍ଗଳା ପାଠ୍ୟ ପୁସ୍ତକରୁ 'ସନାତନ କାହାଣୀ', ଅନନ୍ତ ଦାସଙ୍କ ଆତ୍ମଜୀବନୀକୁ ପୃଷ୍ଠପଟରେ ରଖି ନିଜର ଅନୁଭୂତି ଉପରେ ବର୍ଣ୍ଣନା କରିଛନ୍ତି ।

**କଥାବସ୍ତୁ**— ମାନସିଂହ ନିଜର ସମସ୍ତ ସୃଷ୍ଟିକୁ ନାଟକ, ନାଟିକା ଓ ଏକାଙ୍କିକା ନାମରେ ନାମିତ କରିଯାଇଛନ୍ତି । ବର୍ତ୍ତମାନ ପ୍ରଶ୍ନ ଉଠେ; ନାଟ୍ୟତତ୍ତ୍ୱ ଅନୁସାରେ ଏ ସବୁକୁ ସେହି ପର୍ଯ୍ୟାୟରେ ନିଆଯାଇ ପାରିବ କି ନାହିଁ ? ନାଟକକୁ ଆତ୍ମିକ ଓ ଆଙ୍ଗିକ ଦୃଷ୍ଟିରୁ ବର୍ତ୍ତମାନ ବିଗ୍ଭର କରି-ଯାଉଛି । ମାନସିଂହଙ୍କ ନାଟ୍ୟସୃଷ୍ଟି ମଧ୍ୟରେ 'ନଷ୍ଟନୀଡ଼'ର ସ୍ଥାନ ଶ୍ରେଷ୍ଠ । ଓଡ଼ିଆ ସାମାଜିକ ନାଟକ କ୍ଷେତ୍ରରେ ଏହା ପ୍ରଥମ ଟ୍ରାଜେଡ଼ିର ଗୌରବ ଲଭ କରିଛି । 'ନଷ୍ଟନୀଡ଼'ରେ ପୂର୍ଣ୍ଣ ଓ ମାଧବୀଙ୍କ ଅନାବିଳ ପ୍ରେମ ଓ ଆଦର୍ଶର ଚିତ୍ର ଅଙ୍କିତ । ଶିକ୍ଷକ ମଧୁବାବୁଙ୍କ ଝିଅ ମାଧବୀ, କଲେଜଛାତ୍ର ପୂର୍ଣ୍ଣର ଶାନ୍ତ ସରଳ ବ୍ୟବହାର ତଥା ଦେଶ ପ୍ରେମରେ ମୁଗ୍ଧ ହୋଇ ବିବାହ କରିବାପାଇଁ ମନସ୍ଥ କରିଛି । ଏଥିରେ ମଧୁବାବୁଙ୍କ ସମ୍ମତି ଥିଲା; ମାତ୍ର ପୂର୍ଣ୍ଣର ପରିବାର ଏଥିରେ ସମ୍ମତ ନୁହନ୍ତି ଓ ଘଟଣା କ୍ରମେ ସେ ପରୀକ୍ଷାରେ ଫେଲ ହେବାରୁ ବାପା ଓ ଭାଇ ଅସନ୍ତୁଷ୍ଟ ହୋଇ ତାକୁ ତିରସ୍କାର କରିଛନ୍ତି । ସେ କଟକ ଫେରିଆସିଛି । କଟକରେ ପହଞ୍ଚି ଦେଖେ, ସବୁ ଓଲଟପାଲଟ । ମଧୁବାବୁଙ୍କର ଶ୍ୱଶୁରଙ୍କର ଚକ୍ରାନ୍ତରେ ପୂର୍ଣ୍ଣର ବନ୍ଧୁ ତଥା ଚରିତ୍ରହୀନ ଜମିଦାର ପୁତ୍ର କିଶୋର ସହିତ ମାଧବୀର ବିବାହ ହୋଇଛି । ପୂର୍ଣ୍ଣ ମାଧବୀକୁ ନପାଇ ଅଧାପାଗଳ । କିଶୋର ପରିବାରରେ ମାଧବୀ ଶାନ୍ତିରେ ରହିପାରିନି । କିଶୋର ମାଧବୀର ଅନାସକ୍ତ ଭାବ

୧୨—'କାହିଁକି ଏ ନାଟକ ଲେଖିଲି'—ବୁଦ୍ଧ ଓ ବୌଦ୍ଧଧର୍ମ—ମୁଖବନ୍ଧ ବୁଦ୍ଧ ନାଟକ ମାନସିଂହ ଗ୍ରନ୍ଥାବଳୀ ୧ମ ଭାଗ

ଲକ୍ଷ୍ୟକର ସନ୍ଦେହ କରିଛି । ଫଳୋଟି ପରିବାରରେ ଝଡ଼ିଜା ଉଠିଛି । ଜଣେ ପାଇ ସନ୍ତୁଷ୍ଟ ନୁହେଁ; ଅନ୍ୟଜଣେ ନପାଇ ପାଗଳ । ଏହି ଅବସ୍ଥାରେ ମାଧବୀ ଓ କିଶୋର କଟକ ଆସିଛନ୍ତି । ପୂର୍ଣ୍ଣିର ଭୁଲ ବୁଝାମଣା ଯୋଗୁ ସେ ମାଧବୀର ଭାଇ କୃଷ୍ଣ ହାତରେ ମାଧବୀ ପ୍ରଦତ୍ତ ସମସ୍ତ ଚିଠି ଫେରାଇ ଦେଇଛି । ସେ ଚିଠି ଗୁଡ଼ିକ କିଶୋର ଦେଖିଛି । କଳହବହ୍ନି ତେଜି ଉଠିଛି । ମାଧବୀ ଆତ୍ମହତ୍ୟା କରିଛି । ପୂର୍ଣ୍ଣି ଘରଛାଡ଼ି ପଳାଇଛି । ପୂର୍ଣ୍ଣି ହୋଇଛି 'ନଷ୍ଟ ନୀଡ଼'ର ପକ୍ଷୀ । ଏହାର କଥାବସ୍ତୁ ସରଳ । ଖ୍ରୀ ୧୯୩୮ର ପରିବେଶ, ଗାନ୍ଧୀବାଦ ତଥା ଜାତୀୟ ଚେତନାର ପ୍ରକାଶପାଇଁ ନାଟ୍ୟକାର ଏଥିରେ ପ୍ରୟାସୀ । ନିଜର ପ୍ରତିପାଦିତ ମତ ଉପରେ ନାଟ୍ୟକାରଙ୍କର ବଳିଷ୍ଠ ଆସ୍ଥା ନଥିବାରୁ; ଗୋଟିଏ ବିଶେଷ କିଛି ବିପ୍ଳବ ବା ପରିବର୍ତ୍ତନ ଆଣିବା ପାଇଁ ଲେଖକ ସାହସ କରିନାହାନ୍ତି । ତାପରେ ନାଟକକୁ ଟ୍ରାଜେଡ଼ିରେ ଶେଷ କରିବା ଲେଖକଙ୍କର ମୂଳଲକ୍ଷ୍ୟ ଥିଲା; ସେଥିପାଇଁ ନାୟକ ଶେଷରେ ପଳାୟନ କରିଛି, ନାୟିକା ଆତ୍ମହତ୍ୟା କରିଛି ।

ଏହାର ପରବର୍ତ୍ତୀ ଆଲୋଚ୍ୟ ନାଟକ 'ବାରବାଟୀ'ର କଥାବସ୍ତୁ ସ୍ୱର୍ଗତ କୃପାସିନ୍ଧୁ ମିଶ୍ରଙ୍କ 'ଉତ୍କଳ ଇତିହାସ'ରୁ ଗ୍ରହଣ କରାଯାଇଥିଲେ ମଧ୍ୟ ଏଥିରେ କଳ୍ପନାର ଭାଗ ବେଶି । ଲେଖକଙ୍କ ନିଜ ମତରେ—ଉତ୍କଳର ଇତିହାସ ଗୌରବମୟ ବୋଲି ଦେଉଳମାନଙ୍କର ପଥର ବା ତମ୍ବାପଟା କହୁଛି, କିନ୍ତୁ ଏମାନଙ୍କ କହିବା ଏତେ କ୍ଷୁଦ୍ର, ଏତେ ରହସ୍ୟମୟ ଯେ, ତାକୁ ନେଇ ଐତିହାସିକ ନାଟକ ଲେଖିବା—ବାରିବନ୍ଦକୁ ମୁକ୍ତା କରିବା ପରି ଦୁଃସାହସିକତାର ହିଁ ପରିଚୟ ଦେବ । × × × ବାଧହୋଇ ତେଣୁ ଅଧିକାଂଶ ଭାଗରେ ଏ ନାଟକର ଗଳ୍ପାଂଶ କାଳ୍ପନିକ କରିବାକୁ ହୋଇଅଛି, କିନ୍ତୁ ଗଳ୍ପର ମେରୁଦଣ୍ଡଟା ଅର୍ଥାତ ମୋଟ କଥାଟା ଆଦୌ ଅଳୀକ ନୁହେଁ (୧୩) । ବାରବାଟୀ ନାଟକର କଥାବସ୍ତୁ ସରଳ ।

---

**୧୩—ବାରବାଟୀ ନାଟକର ପ୍ରଥମ ସଂସ୍କରଣର ଭୂମିକା ମାନସିଂହ ଗ୍ରନ୍ଥାବଳୀ ୨ୟ ଭାଗ ପୃ ୭୦୯—୧୯୭୪ ସଂସ୍କରଣ**

ନରସିଂହ ଦେବଙ୍କର ଦାକ୍ଷିଣାତ୍ୟ ବିଜୟ-ବିଜୟ, ମୁସଲମାନଙ୍କର ବଙ୍ଗଦେଶ ଆକ୍ରମଣ ଯୋଗୁ ଲକ୍ଷ୍ମଣ ସେନଙ୍କର ଉତ୍କଳରେ ଆଶ୍ରୟ ଗ୍ରହଣ, ପରେ ଅନଙ୍ଗଭୀମଦେବ ମୁସଲମାନଙ୍କୁ ପରାଜିତ କରି ଲକ୍ଷ୍ମଣ ସେନାଙ୍କୁ ବଙ୍ଗରେ ପୁନସ୍ଥାପନ କରାଇବା ନାଟକର ମୁଖ୍ୟ ବିଷୟବସ୍ତୁ । ଏଥିରେ ମାଳବ ରାଜକନ୍ୟା କାଞ୍ଚନମାଳାଙ୍କ ସହିତ ନରସିଂହଙ୍କର ବିବାହ ବର୍ଣ୍ଣିତ ।

'ବୁଦ୍ଧ' ମଧ୍ୟ ଏକ ଐତିହାସିକ ନାଟକ । ଏଥିରେ କଥାବସ୍ତୁରେ ବିଶେଷ କିଛି ନୂତନତା ନାହିଁ । ପ୍ରସ୍ତାବନାରେ ହିମାଳୟର ଏକ ଦୃଶ୍ୟର ବର୍ଣ୍ଣନା ଦିଆଯାଇଛି । ପୃଥିବୀର ଅନୁରୋଧରେ ବ୍ରାହ୍ମଣ୍ୟ ଧର୍ମର ଅତ୍ୟାଚାରରୁ ଶାନ୍ତି ସ୍ଥାପନ ପାଇଁ ଶଙ୍କର ବୁଦ୍ଧଦେବଙ୍କୁ ପ୍ରେରଣ କଲେ । ସିଦ୍ଧାର୍ଥଙ୍କର ସାଂସାରିକ ବିତୃଷ୍ଣା, ବୈଦିକ କର୍ମରେ ଅନାସକ୍ତି, ଜୀବେଦୟା ଓ ମାନବ ସମାଜର ଉଦ୍ଧାର ପାଇଁ ଯେଉଁ କେତେକ ଉପଦେଶ ତାହାହିଁ ବର୍ଣ୍ଣନା କରାଯାଇଛି । ଘଟଣାରେ ଉପସ୍ଥାପନରେ ଯାହା କିଛି ବିଶେଷତ୍ୱ ଦେଖାଯାଏ । କାହାଣୀ ଦୃଷ୍ଟିରୁ ବିଶେଷ ନୂତନତା ନାହିଁ ।

ଉପର୍ଯ୍ୟୁକ୍ତ ତିନୋଟି ନାଟକକୁ ଛାଡ଼ିଦେଲେ ଅନ୍ୟ ଗୁଡ଼ିକ ନାଟକ ଭାବରେ ଗ୍ରହଣ କରାଯିବ କି ନାହିଁ ତାହା ପରେ ବିଚାର୍ଯ୍ୟ; ମାତ୍ର ବିଭିନ୍ନ ଦୃଷ୍ଟିକୋଣରୁ ତାହାର ମୂଲ୍ୟାୟନ କରାଯାଇଛି । ସବୁ ଗୁଡ଼ିକର କାହାଣୀ ବିଚାର ପର୍ଯ୍ୟାୟରେ ବର୍ତ୍ତମାନ 'ଦୁର୍ଭିକ୍ଷ'ର କାହାଣୀ ଦେଖାଯାଉ । ଦୁର୍ଭିକ୍ଷର ଭୂମିକାରେ ମାନସିଂହ କହିଛନ୍ତି—'ଓଡ଼ିଶାର ସୁବିଦିତ ନଅଙ୍କ ଦୁର୍ଭିକ୍ଷର ପଶ୍ଚାତ୍ପଟ ଉପରେ ଗୋଟିଏ ମହାପ୍ରାଣର ମହିମାମୟ ପବିତ୍ର ମଧୁର ବିକାଶହିଁ ଏହି କ୍ଷୁଦ୍ର କାବ୍ୟ ନାଟିକାର ପ୍ରାଣକଥା । × × ବିଭୀଷିକାମୟ ନ'ଅଙ୍କ ଦୁର୍ଭିକ୍ଷର ବୀଭତ୍ସ ରଙ୍ଗଭୂମିରେ କେନ୍ଦୁପଡ଼ାର ବାଳକ ସନାତନର ଶ୍ରେଷ୍ଠ ଅନନ୍ୟ ମାନବିକତାରେ ପ୍ରେମର କାରୁଣ୍ୟର, ନରତ୍ୱର ମହିମାରେ ସେତିକିରେ ଅପୂର୍ବ ।୧୪ । ସନାତନର ମହିମାମୟ କାହାଣୀକୁ

---

୧୪—'ଦୁର୍ଭିକ୍ଷ' ଭୂମିକା ମାନସିଂହ ଗ୍ରନ୍ଥାବଳୀ ୨ୟ ଭାଗ ପୃ-୭୭୦

୧୯୬୪ ମୁଦ୍ରଣ

ଲେଖକ ଏକ ବଙ୍ଗଳା ପାଠ୍ୟ ପୁସ୍ତକରୁ ପଢ଼ିଥିଲେ । ତା’ପରେ ଡକ୍ଟର ଆଇଜାକ ସାନ୍ତ୍ରାଙ୍କ ସମ୍ପାଦିତ ଓଡ଼ିଆ ଖ୍ରୀଷ୍ଟିଆନ ପତ୍ରିକା ‘ପ୍ରଭାତ’ର ୧୯୩୭ ସାଲ ଅଗଷ୍ଟ ସଂଖ୍ୟାରେ "ଅନନ୍ତ ଦାସଙ୍କ ଆତ୍ମଜୀବନୀ" ଉପରେ ଆଧାରକରି ମାନସିଂହ ନାଟିକାଟିକୁ ରଚନା କରିଥିଲେ । ଏହାର ନାୟକ ସନାତନ ଦୁର୍ଭିକ୍ଷ କବଳରେ ପୀଡ଼ିତ ହୋଇ ଭିକ୍ଷାମାଗି ନିଜର ବାପା ମା’ ଓ ଭଉଣୀ କମଳୀକୁ ଆହାର ଯୋଗାଉଛି । ନିଜେ କଙ୍କାଳ, ମାତ୍ର ଭଉଣୀ କମଳୀ ପାଇଁ ସ୍ନେହ, ବାପା ମା’ଙ୍କ ଲାଗି ତା’ ପାଟିକୁ ଖାଦ୍ୟ ଯାଉନି । ସେ ବହୁ କଷ୍ଟରେ ଦୂର ଗାଁରୁ ଫେରୁଛି । ନିଜ ପାଖରେ ଖାଦ୍ୟ ଥାଇ ମଧ୍ୟ ଅନାହାରରେ ମୃତ୍ୟୁ ବରଣ କରୁଛି । ତା’ ନିଜ ଜୀବନ ଅପେକ୍ଷା ଭକ୍ତିର ଡାକ ବଳବତ୍ତର ହୋଇଛି । ସନାତନର ସ୍ତ୍ରୀ ଆସି ଶବକୁ କୋଳେଧରିଛି ଓ ମୃତ୍ୟୁ ବରଣ କରିଛି । ସ୍ନେହ ଓ ପ୍ରେମ କପରି କ୍ଷୁଧାର ତାଡ଼ନାକୁ ବଳିଯାଇଛି,ତାହାହିଁ ନାଟିକାର ପ୍ରତିପାଦିତ ବିଷୟ । ‘ଅନନ୍ତ ଦାସଙ୍କଆତ୍ମଜୀବନୀ’ ଓଡ଼ିଶାର ନଅଙ୍କ ଦୁର୍ଭିକ୍ଷ ଉପରେ ଏକ ବିଳିଷ୍ଟ ପ୍ରାମାଣିକ ଗ୍ରନ୍ଥ । ସନାତନ ଚରିତ୍ର ବ୍ୟତୀତ ଅନ୍ୟ ଗୁଡ଼ିକ କାଳ୍ପନିକ ଚରିତ୍ର । ସନାତନ ଐତିହାସିକ ଚରିତ୍ର ନ ହେଲେହେ ଲୋକ ମୁଖରେ ଏହି ନାମଟି ବହୁ ପ୍ରଚଳିତ । କାହଣୀର ଉପସ୍ଥାପନା ଓ କାହାଣୀ ସହିତ ନାନା କାଳ୍ପନିକ ପରିବେଶ ନାଟିକାଟିକୁ ସୁଖପାଠ୍ୟ କରାଇ ପାରିଛି ।

‘ରାଜକବି ଉପେନ୍ଦ୍ର’ର କାହାଣୀରେ କିଛି ବିଳିଷ୍ଟତା ନାହିଁ । ଘୁମୁସରର ସିଂହାସନ ପାଇଁ ବିବାଦ ମଧ୍ୟରେ ଉପେନ୍ଦ୍ର ରାଜ୍ୟ ବାହାରେ ଅବସ୍ଥାନ କରନ୍ତି । ରାଜ୍ୟର ପୁରୋହିତ, ନାଗରିକ ଓ ରାଜଲକ୍ଷ୍ମୀଙ୍କର ଅନୁରୋଧ ପ୍ରତ୍ୟାଖ୍ୟାନ କରି ସେ ପ୍ରକୃତି କୋଳରେ ବାଣୀ ଆରାଧନା କରିଛନ୍ତି ।

ବିଷୟବସ୍ତୁର ଚମତ୍କାରିତା ଦୃଷ୍ଟିରୁ ‘ପୂଜାରିଣୀ’ରେ ମାନସିଂହ-ଙ୍କର କିଛି ବୈଶିଷ୍ଟ୍ୟ ଦେଖାଯାଏ । ଏହାର ଉତ୍ସ ଏକ କିମ୍ବଦନ୍ତୀରୁ । ସତ୍ୟବାଦୀର ସାକ୍ଷୀଗୋପାଳ ଜନୈକ ବ୍ରାହ୍ମଣର ସୁନ୍ଦରୀକନ୍ୟା ଲକ୍ଷ୍ମୀର ପ୍ରେମରେ ଆକୃଷ୍ଟ ହୁଅନ୍ତି । ଲକ୍ଷ୍ମୀର ହୃଦୟ ସାକ୍ଷୀଗୋପାଳଙ୍କର ବେଶ୍ଚ,

ମୁଦ୍ରିକା, ଓ ଲୁଗା ଆଦି ମିଳିଲା । ମନ୍ଦିରର କର୍ତ୍ତୃପକ୍ଷ ଦେବତାଙ୍କୁ ରାଧାବିରହିତ ଭାବି ସୁବର୍ଣ୍ଣ ରାଧା ପ୍ରତିମା ଗଢ଼ାଇଲେ । ପ୍ରତିମା ଗଠନ ଆରମ୍ଭ ଦିନରୁ ଲକ୍ଷ୍ମୀକୁ ଜ୍ୱରହେଲା ଏବଂ ପ୍ରତିମା ସମ୍ପୂର୍ଣ୍ଣ ହେବା ମାତ୍ରେ ଲକ୍ଷ୍ମୀର ମୃତ୍ୟୁ ହେଲା । ଏହି ହେଲା କାହାଣୀ; ମାତ୍ର ମାନସିଂହ କହନ୍ତି—"ପାଠକେ, ସ୍ମରଣ ରଖିବେ ଯେ ସାକ୍ଷୀଗୋପାଳ ଓ ଲକ୍ଷ୍ମୀର ଉପାଖ୍ୟାନ ଏକ ଉପଲକ୍ଷ୍ୟ ମାତ୍ର । ହିନ୍ଦୁ ଦେବାଦେବୀଙ୍କର ମାହାତ୍ମ୍ୟ ବା ବୈଷ୍ଣବ ଭକ୍ତି ମାର୍ଗର ପ୍ରଚାର ପାଇଁ ମୁଁ ଏ ନାଟିକା ଲେଖି ନଥିଲି, ମୁଁ ପ୍ରକୃତରେ ଲେଖିଥିଲି ମାନବିକ ମନସ୍ତତ୍ତ୍ୱର ଏକ ରହସ୍ୟମୟ ବିଭାବକୁ ରୂପ ଦେବାପାଇଁ । ସେହି ବିଭାବଟି ହେଉଛି ମନୁଷ୍ୟ ଚିତ୍ତ ଯେତେବେଳେ ଉନ୍ମନା ହୋଇଉଠେ ଯାହା ବା ଦୃଶ୍ୟ ସେଥିରେ ସନ୍ତୁଷ୍ଟ ନହୋଇ, ସେଥିପ୍ରତି ଆକୃଷ୍ଟ ନ ରହି ଯାହା ଅଜ୍ଞାତ, ଯାହା ଅଦୃଷ୍ଟ, ଯାହାଦୂର ଓ ଦୂରଧିଗମ୍ୟତାହାରି ପାଇଁ ଗୃହ ଓ ସମାଜର ସମସ୍ତ ନିର୍ଭରତା ଓ ସ୍ୱାଚ୍ଛନ୍ଦ୍ୟ ପରିତ୍ୟାଗ କରି ପଳାୟନ କରିବା—ତରୁଣ ବୟସର ଏ ଭାବ ପ୍ରତ୍ୟେକଙ୍କ ଜୀବନରେ ପ୍ରାୟ ଉଣାଅଧିକେ ଦେଖାଦିଏ । ମୋର ମନେହୁଏ ମାନବ ପ୍ରାଣରେ ଏହା ଉଚ୍ଚତର ଆଧ୍ୟାତ୍ମିକ ଜୀବନର ଅଙ୍କୁରୋନ୍ମେଷ" । ୧୫ ।

'ଶାସନଚକ୍ର' ଏକାଙ୍କିକା ଗଣତନ୍ତ୍ର ରାଷ୍ଟ୍ରରେ ପ୍ରତିଭାର ଅବହେଳା ପ୍ରତି ଦୃଷ୍ଟି ଆକର୍ଷଣ କରେ । ସାଧୁ-ସଚ୍ଚୋଟ କର୍ମୀମାନେ ହୁଅନ୍ତି ଦେଶୀ ସାବସ୍ତ । କବି ଜୀବନବନ୍ଧୁ ଷ୍ଟେଟରେ ଶ୍ରେଷ୍ଠକବି; ମାତ୍ର ସେ ସ୍ୱାଧୀନତା ସରକାରଙ୍କୁ ତୋଷାମଦ କରି ସାହିତ୍ୟ ରଚନାର ସେ ବିରୋଧୀ । କବି ସ୍ୱାଧୀନ, ତା'ର ମନର ସୃଷ୍ଟିକୁ ସେ ଶ୍ରେଷ୍ଠ ସମ୍ମାନ ଦେବ । ଶିକ୍ଷାମନ୍ତ୍ରୀ ପଣ୍ଡିତ ଶଙ୍କର ଶର୍ମା ସରକାରୀ ସାହାଯ୍ୟ ମିଳିବା ପାଇଁ ସୁପାରିଶ କରନ୍ତି, ମାତ୍ର ଦରାଇ ମନ୍ତ୍ରୀ ମିଷ୍ଟର ମହାରଥୀ ଏହାର ବିରୋଧ କରନ୍ତି । କର୍ମୀ ତଥା ସନ୍ନ୍ୟାସୀ ବେଶଧାରୀ ଶିଷ୍ୟାନନ୍ଦ କବିଙ୍କ ବନ୍ଧୁ । ସେ ବିଭିନ୍ନ ଉପାୟରେ କବିଙ୍କୁ ସାହାଯ୍ୟ କରନ୍ତି । ସେ ସାହାଯ୍ୟ କେତେ ଦିନ ବାଟିବ ? କବି

୧୫– 'ପୂଜାରିଣୀ' ନବସଂସ୍କରଣର ଭୂମିକା—ମାନସିଂହ ଗ୍ରନ୍ଥାବଳୀ ୨ୟ ଭାଗ ପୃ-୪୬୦-୬୨

ଜୀବନବନ୍ଧୁ ଦୁଃଖ ଦାରିଦ୍ର୍ୟରେ ମୃତ୍ୟୁ ବରଣ କରନ୍ତି ! ସରକାର ପ୍ରକୃତ ଅବସ୍ଥା ବୁଝିନ୍ତି ଓ ସାହାଯ୍ୟର ବ୍ୟବସ୍ଥା କଲବେଳକୁ ନେଉଁଗୁଡ଼ କନ୍ଦୁଣୀକୁ ବନ୍ଦ୍ୱଯାଇଥାଏ । କାହାଣୀରେ ସରକାରଙ୍କର ଅପାରଗତା ଓ ପ୍ରତିଶ୍ରୁତି ଅବହେଳା ପ୍ରଦର୍ଶିତ । ଏହି ଏକାଙ୍କିକାରେ କବି ମାନସିଂହଙ୍କ ଜୀବନର ବାସ୍ତବ ରୂପ ପ୍ରତିଫଳିତ ।

'ପୁଷ୍ପିତା'ର କଥାବସ୍ତୁ ମାନସିଂହ-ସୃଷ୍ଟିରେ ଏକ ନୂତନ ଦିଗନ୍ତ ଉନ୍ମୋଚନ କରିଛି । 'ଧୂପ'ରେ ଯେଉଁ କଥା ପ୍ରକାଶ କଲେ ତା'ପାଇଁ 'ପୁଷ୍ପିତା'ରେ ଭୂମି ପ୍ରସ୍ତୁତ କରିଥିଲେ । କଣୋଷ୍ଣି ନାମକ ବାଳିକାର ଯୌବନ ପ୍ରାପ୍ତି ନାଟିକାର ପ୍ରାଣବିନ୍ଦୁ । ସେଥିପାଇଁ ପରିବେଶ ସୃଷ୍ଟି କରାଯାଇଛି । ସାଙ୍ଗସାଥି ମେଳରେ କଣୋଷ୍ଣିକୁ ନେଇ ନାନା କଥାବାର୍ତ୍ତା ଆରମ୍ଭ ହୋଇଛି । ଅନୂଢ଼ା ବାଳିକା ସେ ବିଷୟରେ କିଛି ବୁଝିପାରିନି; ମାତ୍ର ବୟସ ବଦଳିବା ବେଳେ ପ୍ରକୃତି ତାକୁ ସାହାଯ୍ୟ କରିଛି । ପୁଷ୍ପ, ବସନ୍ତ, ମଳୟ, ପରିମଳ, କାମଦେବ କଣୋଷ୍ଣିକୁ ଯୁବତୀ କରିବା ପାଇଁ ଲାଗି ପଡ଼ିଛନ୍ତି । ଏହାପରେ ମନରେ ତା'ର ହାହାକାର ଦେଖାଦେଇଛି । ସେ ନିଃସଙ୍ଗ ମନେ କରିଛି । ସାଥିପାଇଁ ବ୍ୟାକୁଳ ହୋଇ ମିଳିବାବେଳେ ମଦନ ଓ ରତି କଣୋଷ୍ଣି ପ୍ରାଣର ଭାବକୁ ପରିବର୍ତ୍ତନ କରିଛନ୍ତି ।

'ପୁଷ୍ପାଭିନୟ'ର କାହାଣୀ ପ୍ରକୃତିର ଏକ ପରିବେଶ । 'ବୁଦ୍ଧଦନ୍ତ'ର କାହାଣୀ 'କଳିଙ୍ଗର ରାଜାବାଳା ହେମମାଳା ବୁଦ୍ଧଦନ୍ତକୁ ନେଇ ବହୁ ବିପଦ ଅତିକ୍ରମି ସିଂହଳରେ ପହଞ୍ଚିଲାପରେ ମୃତ୍ୟୁ ବରଣ କରିଛି । ନାଟକ ଗୁଡ଼ିକ ବିଭିନ୍ନ ପରିବେଶ ଓ ବିଭିନ୍ନ ସମୟରେ ଲିଖିତ ହୋଇଥିବାରୁ ଏହାର ଗୋଟିଏ କଥାବସ୍ତୁ ସହିତ ଅନ୍ୟକଥା ବସ୍ତୁର ବିଶେଷ ସମ୍ପର୍କ ଥିବାର ଦେଖାଯାଏ ନାହିଁ ।

**ଚରିତ୍ର—** ଦୃଶ୍ୟ କାବ୍ୟରେ ଚରିତ୍ରର ସ୍ଥାନ ପ୍ରଥମ । ଚରିତ୍ର ମାଧ୍ୟମରେ ନାଟ୍ୟକାର ନିଜର ଭାବ ଓ ବକ୍ତବ୍ୟକୁ ପରିବେଷଣ କରିବାର ସୁଯୋଗ ପାଆନ୍ତି । ଚରିତ୍ର ନାଟକର ସଫଳତାରେ ଏକ ବିଶେଷ ଭୂମିକା

ଗ୍ରହଣ କରିଥିବାରୁ ତାହାକୁ ଉତ୍ତମ ରୂପେ ପ୍ରତିପାଦିତ କରିବା ନାଟ୍ୟକାରର ପ୍ରଧାନ କର୍ତ୍ତବ୍ୟ ।

ମାନସିଂହଙ୍କ ନାଟକ ଗୁଡ଼ିକର ସମସ୍ତ ଚରିତ୍ର ସରଳ । ନାଟକର ନାୟକନାୟିକାମାନେ ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟ ପ୍ରତିପାଦନ କରିବାପାଇଁ ସେପରି ଉପସ୍ଥିତ ହୋଇଛନ୍ତି । ପୂର୍ଣ୍ଣ ନିଜର ଜାତୀୟତା, ସ୍ୱାବଲମ୍ବନଶୀଳତା, ତଥା ସମାଜ ସଂସ୍କାର ପ୍ରବୃତ୍ତି ଶେଷ ପର୍ଯ୍ୟନ୍ତ ରକ୍ଷା କରିଛି । ନାଟକକୁ ଟ୍ରାଜେଡ଼ିରେ ଶେଷ କରିବା ନାଟ୍ୟକାରଙ୍କର ଉଦ୍ଦେଶ୍ୟ ଥିବାରୁ ଯବନିକାର ଅଳ୍ପସମୟ ପୂର୍ବରୁ ପଳାୟନ କରିବାପାଇଁ ଲେଖକ ନାୟକକୁ ବାଧ୍ୟ କରିଛନ୍ତି । ସେହିପରି ନାୟିକା ମାଧବୀର ଏକନିଷ୍ଠ ପ୍ରେମ ଦେଖାଇବା ଲେଖକଙ୍କର ଉଦ୍ଦେଶ୍ୟ । 'ବାରବାଟୀ'ରେ ନରସିଂହ ଦେବଙ୍କ ଜାତୀୟ ପ୍ରୀତି, ପରିଣାମ ଓ କାଞ୍ଚନମାଳାର ସାହସିକତା ତଥା ଉତ୍କଳୀୟ ପ୍ରୀତି ଦେଖାଇ ଦିଆଯାଇଛି । 'ବୁଦ୍ଧ' ନାଟକରେ ବ୍ରାହ୍ମଣ୍ୟ ଧର୍ମର ଅତ୍ୟାଚାରକୁ ଧ୍ୱଂସ କରି ମାନବ ପ୍ରାଣରେ ଆତ୍ମବିଶ୍ୱାସ ଜାଗ୍ରତ କରିବା ପାଇଁ ଭଗବାନ ବୁଦ୍ଧଙ୍କର ଆବିର୍ଭାବ । 'ରାଜକବି ଉପେନ୍ଦ୍ର' ଚରିତ୍ର ଅତି ଦୁର୍ବଳ । ସେ ଗ୍ରାମ୍ୟ ବାଳିକାମାନଙ୍କ ସହିତ ଉତ୍ସବ କରିବା, ଗୀତ ଶୁଣିବା, ପ୍ରକୃତିକୁ ଉପଭୋଗ କରିବା ବ୍ୟତୀତ ଅନ୍ୟ କିଛି ଜାଣନ୍ତି ନାହିଁ । 'ସନାତନ' ଚରିତ୍ର ସେହିପରି ସ୍ନେହ ଓ ପ୍ରେମର ମହତ୍ତ୍ୱ ପ୍ରକାଶ ପାଇଁ ଆବିର୍ଭୂତ ହୋଇଛି । 'ପୂଜାରିଣୀ'ରେ ସାକ୍ଷୀଗୋପାଳ ଜଣେ ପ୍ରେମିକ ପୁରୁଷ, ଲକ୍ଷ୍ମୀ ଜଣେ ପ୍ରେମିକା । ଯୁବକଯୁବତୀ ପ୍ରାଣର ପ୍ରକୃତ ଭାଷା ଏହି ଚରିତ୍ର ଦୁଇଟି ମୁଖରେ ପ୍ରକାଶ ପାଇଛି । 'ପୁଷ୍ପିତା'ର ନାୟିକା କିଶୋରୀ ନିଜେ କିଛି କରିନି, ପରିବେଶ ଯାହା କରିଛି ସେଥିରେ ସେ ବାଧ୍ୟ ହୋଇ ଗତି କରିଯାଇଛି । 'ପୁଷ୍ପାଭିନୟ'ର ଚରିତ୍ର ଗୁଡ଼ିକ ପ୍ରକୃତିର ବିଭବ । ଏମାନେ ନିଜେ କିଛି କରିନାହାନ୍ତି । 'ବୁଦ୍ଧଦୁର୍ଗ'ରେ 'ହେମମାଳା' ଦୁଃସାହାସିକ ପଦକ୍ଷେପ ନେଇ କଳିଙ୍ଗରୁ ସିଂହଳ ଯାତ୍ରା କରିଛି । 'ଶାସନଚିତ୍ର'ରେ କବି ଜୀବନ କିଛି କେବଳ ନିମିତ୍ତ ମାତ୍ର ।

ମାନସିଂହଙ୍କ ନାଟକରେ ନାୟକ ନାୟିକା ଅପେକ୍ଷା କେତେକ ପାର୍ଶ୍ୱ ଚରିତ୍ର ଓ ପ୍ରତି ନାୟକମାନଙ୍କର ଭୂମିକା ଗୁରୁତ୍ୱପୂର୍ଣ୍ଣ । 'ନଷ୍ଟନୀଡ଼'ର

ମଧୁବାବୁ, କଟଆର, କୃଷ୍ଣ, ହରିଜନବାଳକ, କମଳା, ମଧୁବାବୁଙ୍କ ଶ୍ୱଶୁର, କୁମୁଦର ଭୂମିକା ମୁଖ୍ୟ ଚରିତ୍ର ସୃଷ୍ଟି କରିଛନ୍ତି । ଏମାନଙ୍କ ମାଷ୍ଟ୍ରାଣୀ ଗୃହିଣୀ, ଗ୍ରାମପ୍ରଧାନ, ପୁରୋହିତ, ଗ୍ରାମ ଯୁବକ, ଚରିତ୍ର ରହିଛନ୍ତି ମାତ୍ର ଏମାନଙ୍କ ଉପସ୍ଥିତି ନାଟକର ଅଗ୍ରଗତିରେ କିଛି ସାହାଯ୍ୟ କରି-ନାହିଁ । 'ବାରବାଟୀ' ନାଟକର ମୁଖ୍ୟ ଚରିତ୍ର ଅନଙ୍ଗଭୀମ ଦେବଙ୍କୁ, ଅନଗୁଳ ରାଜା, କଟକେଶ୍ୱର ଦୁର୍ଗ ସାମନ୍ତ, ସଦସ୍ୟ ବଳରାମ ମିଶ୍ର, ବକ୍ତିଆର ଖିଲଜ୍, ସେନାପତି ସିଂରାଜ ପ୍ରଭୃତି ଗୌଣ ଚରିତ୍ର ସୃଷ୍ଟି କରିଛନ୍ତି; ମାତ୍ର ମୁଖ୍ୟ ଚରିତ୍ରରେ କୌଣସି ଉଲ୍ଲେଖଯୋଗ୍ୟ ବୈଶିଷ୍ଟ୍ୟ ଦୃଷ୍ଟିଗୋଚର ହୁଏ ନାହିଁ । ଏମାନଙ୍କ ବ୍ୟତୀତ ଆହୁରି ବହୁ ଚରିତ୍ର ରହିଛନ୍ତି । ନାଟକର ପ୍ରବାହ ମଧ୍ୟରେ ସେମାନେ ଆସି ଉପସ୍ଥିତ ହୋଇଛନ୍ତି ମାତ୍ର । 'ବୁଦ୍ଧ' ନାଟକରେ ସେହିପରି ବହୁତ ଚରିତ୍ର ଆସିଛନ୍ତି । ସେମାନଙ୍କର ମଧ୍ୟରେ ଐତିହାସିକ ଚରିତ୍ର ଭାବରେ, ଆନନ୍ଦ, ଦେବଦତ୍ତ, କିସା, ଶୁଦ୍ଧୋଦନ, ଉପାଳୀ, ଗୋପା, ଛନ୍ଦକ, ଆମ୍ରପାଲ୍ଲୀ ଆଦି । କାଳ୍ପନିକ ଚରିତ୍ର ହେଲେହେଁ ପୁରୋହିତ, ପ୍ରଜାବର୍ଗ, ସୁମିତ୍ରା, ଆଗ୍ରହୀ ବିପ୍ରକୀର୍ତ୍ତ, ଶ୍ରେଷ୍ଠୀ ଆଦି ବହୁ ଗୌଣ ଚରିତ୍ର କେବଳ ନାଟକର ବିକାଶ ପାଇଁ ସଂଯୋଜିତ ହୋଇଛନ୍ତି । ଏଥିରେ ମଧ୍ୟ ସ୍ୱର୍ଗର ଦେବତାମାନଙ୍କୁ ନାଟକର ପ୍ରସ୍ତାବନାରେ ଚରିତ୍ର ଭାବରେ ନିଆଯାଇଛି—ବ୍ରହ୍ମା, ବିଷ୍ଣୁ, ଗୌରୀ, ଶିବ ଓ ପୃଥିବୀ । ମାନବର କେତେକ ଗୁଣ ବା ପ୍ରକୃତି ଯଥା ବିବେକ 'ଓ ମାର ଙ୍କ' ଠାରେ ବ୍ୟକ୍ତିତ୍ୱ ଆରୋପ କରାଯାଇଛି ।

'ଦୁର୍ଭିକ୍ଷ' ନାଟିକାରେ ସନାତନ ଚରିତ୍ରକୁ, ଜୀବାନନ୍ଦ ଶିବାନନ୍ଦ, କାଶୀ, କାଙ୍ଗାଳଦଳ ଓ ପାଦ୍ରି ହିଦ୍ଧୁ ସୃଷ୍ଟି କରିଛନ୍ତି । ନାଟିକାକୁ ପ୍ରାଣପୂର୍ଣ୍ଣ କରିବା ପାଇଁ ସନାତନର ପିତା, ମାତା, କମଳୀ ଓ ପୀତେଇ ନାମର ଉପସ୍ଥିତି ଥିବାପରି ମନେହୁଏ । ରାଜକବି ଉପେନ୍ଦ୍ରରେ ଉପେନ୍ଦ୍ର ଚରିତ୍ର ବ୍ୟତୀତ ପୁରୋହିତ, ବଣ୍ୟ ସର୍ଦ୍ଦାର, ନାଗରିକ, ବନବାଳକ, ବାଳିକା ଚରିତ୍ର ରହିଛି । ଏମାନଙ୍କର ଉପସ୍ଥିତିରେ ନାଟକର ସ୍ଥିତି ସମ୍ଭବ ହୋଇଛି । ମାତ୍ର ନାଟକର ପ୍ରାଣ ପ୍ରତିଷ୍ଠା ହୋଇପାରିନି । ଏହା ବ୍ୟତୀତ ରାଜଲକ୍ଷ୍ମୀ ଓ ସରସ୍ୱତୀ ଚରିତ୍ର ରହିଛନ୍ତି ।

'ପୂଜାରିଣୀ'ରେ ଦେବଦତ୍ତା ଓ ଲକ୍ଷ୍ମୀ ବ୍ୟତୀତ ବେଲେଶ୍ବର ମହାପାତ୍ର, ମହାପାତ୍ରାଣୀ, ପୂଜାରୀ, ପୂଜକ ପତ୍ନୀ, ସୁନାରୀ, ସୁନାରୁଣୀ, ଲକ୍ଷ୍ମୀର ସାଙ୍ଗ, ଦେବଦାସୀ ଚରିତ୍ର ରହିଛନ୍ତି । ଏମାନେ କେବଳ ନାୟକ ନାୟିକାଙ୍କୁ ବଳିଷ୍ଠ ରୂପ ପ୍ରଦାନ କରିବା ପାଇଁ ରହିଛନ୍ତି । 'ପ୍ରତିଷ୍ଠିତା'ରେ କିଶୋରର ବନ୍ଧୁ ହେମା, ସରଳା ଓ ଚଣ୍ଡୀ ନାୟିକା ମନର ଭାବକୁ ପ୍ରକାଶ କରନ୍ତି । ନାଟକମାନଙ୍କ ମଧ୍ୟରୁ ଅଧିକାଂଶ ଉଦ୍ଦେଶ୍ୟ ଧର୍ମୀ ହୋଇଥିବାରୁ ଚରିତ୍ରମାନେ ମଧ୍ୟ କୃତ୍ରିମ ଦୋଷଦୁଷ୍ଟ ମନେ ହୁଅନ୍ତି । କିନ୍ତୁ 'ନଷ୍ଟନୀଡ଼', 'ଶାସନଚକ୍ର', ଏମାନଙ୍କ ମଧ୍ୟରେ ବ୍ୟତିକ୍ରମ ।

**ସଂଳାପ**—ସଂଳାପ ସାହାଯ୍ୟରେ ନାଟ୍ୟକାର ନାଟ୍ୟକାହାଣୀ ବ୍ୟକ୍ତିକର ଚରିତ୍ରକୁ ପରିସ୍ଫୁଟ କରିଥାନ୍ତି । ନାଟ୍ୟକାର ନିଜ ବକ୍ତବ୍ୟକୁ ଚରିତ୍ରର ସଂଳାପ ସାହାଯ୍ୟରେ ପ୍ରକାଶ କରି ରସସୃଷ୍ଟି କରିଥାନ୍ତି । ନାଟକରେ ଚରିତ୍ରର ଭାଷା ପାତ୍ରମୁଖୀ ଓ ବାସ୍ତବ ହେବା ଦରକାର । ଭାଷା ସବୁବେଳେ ଅବିକଳ ହେବ ଏପରି କିଛି ଯଥାର୍ଥତା ନାହିଁ । ସଂଳାପକୁ ହୃଦୟସ୍ପର୍ଶୀ କରିବାକୁ ହେଲେ କିଛି କବିତ୍ୱମୟ କରିବା ଆବଶ୍ୟକ । 'ନଷ୍ଟନୀଡ଼'ର ପରିବେଶ କଟକସହର ଓ ଚରିତ୍ରମାନଙ୍କ ମଧ୍ୟରୁ ଅଧିକାଂଶ ଶିକ୍ଷିତ, ଏମାନଙ୍କର ଯେଉଁପ୍ରକାର ସଂଳାପ ଉଚ୍ଚାରଣ କରିବା କଥା ତାହା ସଫଳତା ଲାଭ କରିଛି । ରାଧୀ, କମଳୀ, ଓ ମଧୁବାବୁଙ୍କ ସ୍ତ୍ରୀଙ୍କ ସଂଳାପ ମଧ୍ୟ ପାତ୍ରୋମୁଖୀ ହୋଇଛି । କିନ୍ତୁ କେତେକ ସ୍ଥାନରେ ଦୀର୍ଘ ଓ ଅସଂଗତ ସଂଳାପ ରହିଥିଲେହେଁ ଆବଶ୍ୟକ ସ୍ଥଳେ ବଳିଷ୍ଠ ସଂକ୍ଷିପ୍ତ ସଂଳାପର ପ୍ରୟୋଗ ହୋଇଛି । ଉଦାହରଣ ସ୍ୱରୂପ—

ମାଧବୀ—(ନୀରବ)

କିଶୋର—ଲଜ୍ଜାନାହିଁ ତୁମର ? ଭାଇକି ଦୂତକରି ପ୍ରେମିକଠୁ ଚିଠି ଆସୁଛି ! କି ବ୍ୟଭିଚାର !

ମାଧବୀ—ମିଥ୍ୟା·········ମିଥ୍ୟା କଥା ।

କିଶୋର—ସବୁମିଥ୍ୟା·········କେବଳ ତୁମର ସତୀତ୍ୱହିଁ ସତ ! ନା ?

ମାଧବୀ—ସତୀତ୍ୱ ସତୀତ୍ୱ କହି ମୋତେ ଆଉ ପରିହାସ କରନି ।

କିଶୋର—'ତଃ ବାଧି ଯାଉଛି ଯେ, ସତକଥା କହିଲେ ବେଶି ସମସ୍ତଙ୍କୁ ବାଧେ ଯେ ।" ।୧୬।

'ବାରବାଟୀ' ନାଟକ ଐତିହାସିକ ପୃଷ୍ଠଭୂମିରେ ଲେଖା ହୋଇଥିବାରୁ ବଭିନ୍ନ ସଂଳାପରେ ଐତିହାସିକ ଗାମ୍ଭୀର୍ଯ୍ୟ ରକ୍ଷା କରିବାକୁ ଲେଖକ ଚେଷ୍ଟା କରିଛନ୍ତି । ରାଜା ବା ସାମନ୍ତମାନେ ରାଜସଭାରେ ଅମିତ୍ରା-କ୍ଷର ସଂଳାପ ବ୍ୟବହାର କରୁଥିବା ସ୍ଥଳେ ସାଧାରଣ ସମୟରେ ବା ରାଜ ଅନ୍ତଃପୁରରେ ସାଧାରଣ ଲୋକଙ୍କଭାଷା ବ୍ୟବହାର କରିଛନ୍ତି । ବ୍ୟକ୍ତିର ପାରିବାରିକ ଜୀବନ ଓ ସାମାଜିକ ଜୀବନ ଦେଖାଇବା ବୋଧହୁଏ ନାଟ୍ୟ-କାରଙ୍କ ଲକ୍ଷ୍ୟ । ଏହା ବ୍ୟତୀତ ସାଧାରଣ ଦୂତ, ସଦସ୍ୟ ବଳରାମ, ପୁରୋହିତ, ମୁସଲମାନସୈନ୍ୟ ଓ ମୌଲବୀମାନଙ୍କ ମଧ୍ୟରେ ସେମାନଙ୍କ ଉପଯୋଗୀ ଭାଷା ପ୍ରୟୋଗ କରିଛନ୍ତି । ସୂକ୍ଷ୍ମ ଭାବରେ ପର୍ଯ୍ୟବେକ୍ଷଣ କଲେ, ନାଟକର ସମସ୍ତ ଚରିତ୍ର ପ୍ରତ୍ୟକ୍ଷ ବା ପରୋକ୍ଷ ଭାବରେ ନିଜ ସଂଳାପ ମାଧ୍ୟମରେ ଉତ୍କଳର ଗୌରବ ଗାନ କରିଛନ୍ତି । ଏଥିରେ ନାଟ୍ୟକାରଙ୍କ ମନର ଛବି ସ୍ପଷ୍ଟ ପ୍ରତିଫଳିତ ହୋଇଛି ।

'ବୁଦ୍ଧ' ନାଟକରେ ନାଟ୍ୟକାର ସମସ୍ତଙ୍କୁ ଓଡ଼ିଶାର ପରିବେଶରେ ରଖିବାକୁ ଚେଷ୍ଟା କରିଛନ୍ତି । ତେଣୁ ଚରିତ୍ର ଗୁଡ଼ିକ ବାଧହୋଇ ଐତିହାସିକ ସ୍ତରରୁ ଆସି ସାମାଜିକ ସ୍ତରରେ ପହଞ୍ଚି ଯାଇଛନ୍ତି । 'ସିଦ୍ଧାର୍ଥ'ଙ୍କୁ 'ବୁଦ୍ଧ'ରେ ପରିଣତ କରିବା ପାଇଁ ଯେଉଁ ପରିବେଶ ଦରକାର ତାହା ସଂଳାପ ମାଧ୍ୟମରେ ସଫଳ ହୋଇଛି । ପାର୍ଶ୍ୱ ଚରିତ୍ରମାନଙ୍କର ସଂଳାପରେ କେତେକ ତ୍ରୁଟି ରହିଛି । ବିଶେଷ ଅଙ୍କ ଷଷ୍ଠ ଦୃଶ୍ୟରେ ଛନ୍ଦକ ସ୍ତ୍ରୀ ଯେଉ ସଂଳାପ ବ୍ୟବହାର କରିଛି ବାସ୍ତବ ଜୀବନରେ ତାହା ସଂଭବ ଓ ପ୍ରାକୃତିକ, ମାତ୍ର ସେହି ଉକ୍ତି ଗୁଡ଼ିକରେ ଐତିହାସିକ ନାଟକର ଗାମ୍ଭୀର୍ଯ୍ୟ ରକ୍ଷା କରାଯାଇ ପାରିନାହିଁ ଏ ସଂଳାପର ଅବର୍ତ୍ତମାନରେ ମୂଳ ନାଟକର କିଛି କ୍ଷତିହୋଇ ନଥାନ୍ତା ।

---

୧୬—'ନଷ୍ଟନୀଡ଼' ୪ର୍ଥ ଅଙ୍କ ୩ୟ ଦୃଶ୍ୟ ଭାଗ ମାନସିଂହ ଗ୍ରନ୍ଥାବଳୀ ପୃ-୫୧୨

ସଳାପ ଦୃଷ୍ଟିରୁ 'ଗଜକଣ୍ଠଉପେନ୍ଦ୍ର' ଏକ ଅସଫଳ ସୃଷ୍ଟି । ନାଟ୍ୟକାରଙ୍କର ଏହା ପ୍ରଥମ ରଚନା ହୋଇଥିବାରୁ ଏଥିରେ ନାଟକର ଗାମ୍ଭୀର୍ଯ୍ୟ ପରିବର୍ତ୍ତେ ନାଟ୍ୟକାର ନିଜର କବିତ୍ୱହିଁ ଫୁଟାଇଛନ୍ତି । 'ପୁଷ୍ପିତା'ର ପରିବେଶ ସମ୍ପୂର୍ଣ୍ଣ ଗ୍ରାମୀଣ । ଗାଁରେ ଅନୂଢ଼ା ବାଳିକାମାନଙ୍କର ନିର୍ଭୋଳ ସ୍ୱାଭାବିକ କଥୋପକଥନକୁ ମାନସିଂହ ଲକ୍ଷ୍ୟ କରିଥିବାରୁ ସଂଳାପ ଗୁଡ଼ିକ ସ୍ୱାଭାବିକ ହୋଇଛି । ତୃତୀୟ ଦୃଶ୍ୟରେ ଦାର୍ଶନିକତୋକ୍ତି ପ୍ରତ୍ୟେକ କିଶୋର କିଶୋରୀଙ୍କର ଅନ୍ତରବାଣୀ । ସେହି ଦୃଶ୍ୟରେ ହେମାର ସଂଳାପରେ ପ୍ରେମର ମୂଳତତ୍ତ୍ୱ ଖୋଜିବାକୁ ଯାଇଛନ୍ତି ।[୧୭] 'ପୂଜାରିଣୀ' ଏକ କାବ୍ୟ-ନାଟିକା । ଏଠାରେ ସଂଳାପ ଦୀର୍ଘ ଓ କବିତ୍ୱମୟ ହୋଇ ଉଠିଛି, ଅବଶ୍ୟ ବଳିଷ୍ଠ ଶବ୍ଦସଂଯୋଜନା ଯୋଗୁ ହୃଦୟସ୍ପର୍ଶୀ ହୋଇଛି । ସ୍ଥାନେ ସ୍ଥାନେ ଏତେଦୀର୍ଘ ସଂଳାପ ରହିଛି ଯାହା ନାଟକରେ ଦର୍ଶକର ଧୈର୍ଯ୍ୟଚ୍ୟୁତି ଘଟାଏ । ତେଣୁ କୁହାଯାଇପାରେ ରଙ୍ଗମଞ୍ଚପାଇଁ ଏହା ଅସଫଳ ହେଲେ ମଧ୍ୟ କାବ୍ୟ-ନାଟିକା ଦୃଷ୍ଟିରୁ ଏହା ବେଶ୍ ସଫଳ ହୋଇ ପାରିଛି । 'ଦୁର୍ଭିକ୍ଷ' ସେହି-ପରି ଏକ କାବ୍ୟନାଟିକା । ଏହା ଅମିତ୍ରାକ୍ଷର ଛନ୍ଦରେ ଲେଖାଯାଇଛି । ସଂଳାପ ଗୁଡ଼ିକ ପାତ୍ରମୁଖୀ ହୋଇଥିବାରୁ ପରିବେଶକୁ ଗୁରୁଗମ୍ଭୀର କରି-ପାରିଛି । ବୁଭୁକ୍ଷୁ କଙ୍କାଳ ମୁଖରେ ସଂକ୍ଷିପ୍ତ ସଂଳାପ ଦେବାବେଳେ ଜୀବାନନ୍ଦ ଓ ଶିବାନନ୍ଦଙ୍କ ପରି ବଳିଷ୍ଠ ସନ୍ୟାସୀଙ୍କ ମୁଖରେ ଦୀର୍ଘ ସଂଳାପ ସଂଯୋଜନ କରାଯାଇଛି । ଏହାଦ୍ୱାରା ଦୁର୍ଭିକ୍ଷର ସ୍ପଷ୍ଟ ଚିତ୍ର ଦର୍ଶକ ବା ପାଠକ ମନରେ ପ୍ରତିଫଳିତ ହୋଇପାରୁଛି ।

'ବୁଦ୍ଧଦୃଷ୍ଟି'ରେ ସଂଳାପ ନାହିଁ । ଏହା ଗୀତିନାଟ୍ୟ ହୋଇଥିବାରୁ ଏଥିରେ ଚରିତ୍ର କେବଳ ମୂକ ଅଭିନୟ କରିଛି । ଧ୍ୱନ୍ୟାଭିନୟ ମଧ୍ୟ ସେହି ଧରଣର । ମାନସିଂହଙ୍କ ସଂଳାପ ଉଚ୍ଚାରଣର ସାର୍ଥକତା ପ୍ରାପ୍ତବୟସ୍କର ରଚନା 'ଶାସନତନ୍ତ୍ର' ଏକାଙ୍କିକାରେ ଦେଖିବାକୁ ମିଳେ । ଏହାର କାହାଣୀ ଯେପରି ବଳିଷ୍ଠ ସଂଳାପ ମଧ୍ୟ ସେହିପରି ଉନ୍ନତ । ଗଭର୍ଣ୍ଣର ମିଷ୍ଟର

---

୧୭— ଦ୍ରଷ୍ଟବ୍ୟ—ପୁଷ୍ପିତା ତୃତୀୟ ଦୃଶ୍ୟ (ସୌରଭ) ମାନସିଂହ ଗ୍ରନ୍ଥାବଳୀ ୨ୟ ଭାଗ ପୃ- ୨୪୮-୧୯୭୪ ମୁଦ୍ରଣ ।

ମହାରଥି ଶର୍ମାଙ୍କ ସଂଳାପ ରାଜନୀତିକ ପୃଷ୍ଠଭୂମିରେ ଜୀବନବନ୍ଧୁ, ସୁକାନ୍ତ, ଦୁଃସ୍ଥ ପାରିବାରିକ ଜୀବନ ଓ ଶିଷ୍ୟାନନ୍ଦଙ୍କ ମୁଖରେ ଆଦର୍ଶବାଦର ସଂଳାପ ସଂଯୋଜିତ ହୋଇଛି । ପ୍ରତ୍ୟେକ ସଂଳାପରେ ନାଟକୀୟ ଉତ୍କଣ୍ଠା ରକ୍ଷା କରାଯାଇ ପାରିଛି ।

ନାଟକ ଓ ନାଟିକାକୁ ସାମଗ୍ରିକ ଭାବରେ ବିଚାର କଲେ କବି ମାନସିଂହଙ୍କ ଭାବପ୍ରବଣତା ପାଠକକୁ ଅଭିଭୂତ କରେ ।

**ଦ୍ୱନ୍ଦ୍ୱ**—ନାଟକୀୟ ଦ୍ୱନ୍ଦ୍ୱର ସୁଷମ ବିକାଶ ଉପରେ ନାଟକର ସଫଳତା ବହୁ ଭାବରେ ନିର୍ଭର କରେ । ଦ୍ୱନ୍ଦ୍ୱ ମୁଖ୍ୟତଃ ଦୁଇ ଭାଗରେ ବିଭକ୍ତ, ଅନ୍ତର୍ଦ୍ୱନ୍ଦ୍ୱ ଓ ବହିର୍ଦ୍ୱନ୍ଦ୍ୱ । ନାଟକରେ ବହିର୍ଦ୍ୱନ୍ଦ୍ୱ ଅପେକ୍ଷା ଅନ୍ତର୍ଦ୍ୱନ୍ଦ୍ୱର ମହତ୍ତ୍ୱ ଅଧିକ । ନାଟ୍ୟକାରଙ୍କ ଦକ୍ଷତା ଅନୁସାରେ ଅନ୍ତର୍ଦ୍ୱନ୍ଦ୍ୱ ରଚିତ ହୋଇଥାଏ । ପ୍ରବୃତ୍ତି ସହିତ ନିବୃତ୍ତିର, ହୃଦପ୍ରବୃତ୍ତି ସହିତ କର୍ତ୍ତବ୍ୟ ବୋଧର, ସମାଜ ଚେତନା ସହିତ ବ୍ୟକ୍ତି ଚେତନାର, ଆଦର୍ଶ ସହିତ ବାସ୍ତବର, ନାନା ବିଚିତ୍ର ଦ୍ୱନ୍ଦ୍ୱ ମାନବ ମନରେ ଦେଖା ଦେଉଥାଏ । ବହିର୍ଦ୍ୱନ୍ଦ୍ୱରେ ସାଧାରଣତଃ ଦୈବୀଶକ୍ତି ବିରୋଧରେ ମାନବ ଶକ୍ତି, ମନୁଷ୍ୟ ସହିତ ସମାଜ ଓ ବ୍ୟକ୍ତି ମଧ୍ୟରେ ସଂଘର୍ଷ ଦେଖାଯାଏ । ଆଧୁନିକ ନାଟକରେ ମାଲିକ ଶ୍ରମିକ ବିରୋଧରେ, ପୁଞ୍ଜିବାଦ ସମାଜବାଦ ବିରୋଧରେ ତଥା ଯନ୍ତ୍ର ଓ ଜୀବନର ପ୍ରତିଦ୍ୱନ୍ଦ୍ୱିତା ଆଦି ବିବିଧ ସଂଘର୍ଷ ଦେଖାଯାଏ । ଏସବୁ ମଧ୍ୟରୁ ମାନସିଂହଙ୍କ ନାଟକରେ କ'ଣ ଅଛି ଦେଖିବା କଥା । 'ନଷ୍ଟନୀଡ଼'ର ପ୍ରଥମ ଅଙ୍କ ତୃତୀୟ ଦୃଶ୍ୟରେ ସମାଜର ସବର୍ଣ୍ଣ ଓ ଅସବର୍ଣ୍ଣଙ୍କ ମଧ୍ୟରେ ଦ୍ୱନ୍ଦ୍ୱର ସୂଚନା ମିଳୁଛି । ଏହା ବ୍ୟତୀତ ପୂର୍ଣ୍ଣର ଆଦର୍ଶ ତାଙ୍କ ପରିବାରରେ ଆଦର୍ଶଗତ ଦ୍ୱନ୍ଦ୍ୱରୁ ଆରମ୍ଭ ହୋଇ ନାଟକର ଶେଷ ପର୍ଯ୍ୟନ୍ତ ଗତି କରିଛି । ମାଧବୀର ବିବାହ ପରେ କିଶୋର ମନରେ ଅନ୍ତର୍ଦ୍ୱନ୍ଦ୍ୱ ଆରମ୍ଭ ହୋଇ ନାଟକର ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ଆଦର୍ଶବାଦ ଓ ବାସ୍ତବବାଦର ସଂଘର୍ଷ ଲାଗି ରହିଛି ।

'ବାରବାଟୀ' ନାଟକ ଐତିହାସିକ ପୃଷ୍ଠଭୂମିରେ ରଚିତ । ଏଥିରେ ନାଟ୍ୟକାର କୌଣସି ବିଶିଷ୍ଟ ଦ୍ୱନ୍ଦ୍ୱ ସୂତ୍ରପାତ କରି ନାହାନ୍ତି ।

ମୂଳରୁ ଶେଷ ପର୍ଯ୍ୟନ୍ତ ରାଜନୈତିକ ସଂଘର୍ଷ ରହିଥିଲେ ମଧ୍ୟ ଏତେ ବଳିଷ୍ଠ ନୁହେଁ । ପ୍ରସ୍ତାବନାର ଧର୍ମଗତ ସଂଘର୍ଷର ପରିବେଶ 'ବୁଦ୍ଧ' ନାଟକଟିରେ ଶେଷ ପର୍ଯ୍ୟନ୍ତ ବର୍ତ୍ତମାନ । ଏହା ବ୍ୟକ୍ତିଗତ ସିଦ୍ଧାର୍ଥଙ୍କ ମନରେ ଦେଖା ଦେଉଥିବା ଭାବକୁ ନାଟ୍ୟକାର 'ମାର' ଓ 'ବିବେକ' ଚରିତ୍ର ସୃଷ୍ଟି କରି ଦେଖାଇ ଦେଇଛନ୍ତି । 'ଦୁର୍ଭିକ୍ଷ' ନାଟିକାରେ ସ୍ନେହ ଓ ସ୍ୱାର୍ଥ ମଧ୍ୟରେ ଦ୍ୱନ୍ଦ୍ୱ ଦେଖାଯାଇଛି । ସାମୟିକ ଭାବରେ କେତେକ ଦୁର୍ଭିକ୍ଷ ପ୍ରପୀଡ଼ିତ ଚରିତ୍ରରେ ପଶୁ ପ୍ରବୃତ୍ତି ଓ ମାନବିକ ପ୍ରବୃତ୍ତି ମଧ୍ୟରେ ଦ୍ୱନ୍ଦ୍ୱ ଦେଖାଯାଇଛି । 'ବୁଦ୍ଧ-ଦୂତୀ'ରେ ବ୍ରାହ୍ମଣ୍ୟଧର୍ମ ଓ ବୌଦ୍ଧଧର୍ମ ମଧ୍ୟରେ ସଂଘର୍ଷରୁ 'ରାଜବାଳା ହେମାମାଳା'ର ଅନ୍ତର୍ଦ୍ୱନ୍ଦ୍ୱ ଦେଖାଯାଇଛି । 'ରାଜକବି ଉପେନ୍ଦ୍ର'ରେ ବ୍ୟକ୍ତି ବ୍ୟକ୍ତି ମଧ୍ୟରେ ଦ୍ୱନ୍ଦ୍ୱ ଲାଗି ରହିଛି । ଉପେନ୍ଦ୍ରଙ୍କ ମନରେ ରାଜଶକ୍ତି ଓ ବାଣୀ ଆରାଧନାର ଦ୍ୱନ୍ଦ୍ୱ ସୃଷ୍ଟି ପାଇଁ ନାଟ୍ୟକାର ଯେଉଁ ଚେଷ୍ଟା କରିଛନ୍ତି ସେଥିରେ ବିଫଳ ହୋଇଛନ୍ତି । 'ମୁକ୍ତିତା' ନାଟିକାରେ କୁମାରୀ କଶୋରୀ ମନରେ ଅନ୍ତର୍ଦ୍ୱନ୍ଦ୍ୱ କେବଳ ଦେଖାଯାଇଛି । ଏହି ଚରିତ୍ରଟି ଦେଖାଇବା ପାଇଁ ନାଟ୍ୟକାର ସମଗ୍ର ନାଟିକାକୁ ଗଢି ତୋଳିଲା ପରି ମନେହୁଏ । 'ପୂଜାରିଣୀ' କାବ୍ୟ ନାଟିକାରେ—ହୃଦୟ ହୃଦୟ ମଧ୍ୟରେ ଦ୍ୱନ୍ଦ୍ୱ ସୃଷ୍ଟି ହୋଇଛି । ବ୍ୟକ୍ତିଗତ ପ୍ରେମ ମଧ୍ୟରେ ଦ୍ୱନ୍ଦ୍ୱ ସୃଷ୍ଟି ହୋଇ ଲକ୍ଷ୍ମୀର ମୃତ୍ୟୁରେ ଏହି ସଂଘର୍ଷର ଅବସାନ ହୋଇଛି ।

'ଶାସନତନ୍ତ୍ର' ଏକାଙ୍କିକାର ପ୍ରଥମ ଦୃଶ୍ୟରେ ସରକାରୀ ଶାସନ କଳରେ ଦ୍ୱନ୍ଦ୍ୱ ଆରମ୍ଭ ହୋଇଛି । ଏ ଦ୍ୱନ୍ଦ୍ୱର କାରଣ ଉନ୍ମୋଚନ କରିବା ପାଇଁ ପୂର୍ବ ଘଟଣାଗୁଡ଼ିକ ଦେଖାଇ ଦିଆଯାଇଛି । କବି ଜୀବନବନ୍ଧୁ ପଟ୍ଟନାୟକଙ୍କ ବ୍ୟକ୍ତିଗତ ଜୀବନପାଇଁ ଶିକ୍ଷାମନ୍ତ୍ରୀ ଓ ସରୋଇମନ୍ତ୍ରୀଙ୍କ ମଧ୍ୟରେ ସଂଘର୍ଷ ହୋଇଛି । ପର୍ଯ୍ୟାୟକ୍ରମେ ଏଥିରେ ଦେଖାଦେଇଛନ୍ତି ସନ୍ନ୍ୟାସୀ ଶିକ୍ଷକ ଶିବ୍ୟାନନ୍ଦ । ତାଙ୍କ ଆଦର୍ଶ ସହିତ ସରକାରୀ ଶାସନ କଳର ସାମାନ୍ୟ ଦ୍ୱନ୍ଦ୍ୱର ସୂଚନା ମିଳେ ।

**ଉତ୍କଣ୍ଠା**— ନାଟ୍ୟକାର କିଛି କହି କିଛି ଅକୁହା ଭାବରେ ଛାଡ଼ି ଦେଇଥାନ୍ତି । ଦର୍ଶକ ଅଜ୍ଞାତ ଘଟଣା ଜାଣିବା ପାଇଁ ଉତ୍କଣ୍ଠିତ

ହୋଇ ବସିରହେ । ନାଟକରେ ଯେତେ ଉତ୍କଣ୍ଠା ସୃଷ୍ଟି ହୋଇଥାଇବ ଦର୍ଶକ ସେତେ କୌତୁହଳୀ ହୋଇ ପରିଣତି ପର୍ଯ୍ୟନ୍ତ ଅପେକ୍ଷା କରି ରହିବେ । 'ନଷ୍ଟନୀଡ଼'ର ପ୍ରଥମ ଅଙ୍କ ଶେଷରେ ଦର୍ଶକ ଦେଖେ, ମାଧବୀ ଓ ପୂର୍ଣ୍ଣ ମଧ୍ୟରେ ବିବାହର ସିଦ୍ଧାନ୍ତ ହୋଇଯାଇଛି; ମାତ୍ର ଦ୍ୱିତୀୟ ଅଙ୍କ ଦ୍ୱିତୀୟ ଦୃଶ୍ୟ ଶେଷରେ ପୂର୍ଣ୍ଣ ପରୀକ୍ଷାରେ ଫେଲ୍ ହେବା, ନିଜର ବାପା ଓ ବଡ଼ବାପାଙ୍କ ସାଙ୍ଗରେ ଦ୍ୱନ୍ଦ୍ୱ ଲଗିବାରେ ଦର୍ଶକ ମନରେ ଆଶଙ୍କା ହୁଏ ଫଳ କ'ଣ ହେବ ? ତୃତୀୟ ଅଙ୍କ ଦ୍ୱିତୀୟ ଦୃଶ୍ୟରେ ମଧୁବାବୁଙ୍କ ଶ୍ୱଶୁର ଯେତେବେଳେ ମାଧବୀର ବିବାହ ପ୍ରସ୍ତାବ ଠିକ୍ କରନ୍ତି ଦର୍ଶକ ମନରେ ଉତ୍କଣ୍ଠା ସେତେବେଳେ ବଢ଼ିଯାଏ । ସେହି ଅଙ୍କର ତୃତୀୟ ଦୃଶ୍ୟରେ ମଧୁବାବୁ ପୂର୍ଣ୍ଣଙ୍କୁ ଫେରାଇ ଦେବାପରେ ପୂର୍ଣ୍ଣପ୍ରତି ଦର୍ଶକ ସହାନୁଭୂତିଶୀଳ ହୋଇଉଠେ । ପଞ୍ଚମ ଅଙ୍କର ତୃତୀୟ ଦୃଶ୍ୟରେ ପୂର୍ଣ୍ଣ ଫେରାଇଦେବା ଚିଠି ଯେତେବେଳେ କିଶୋର ନେଇ ପଢ଼ିଛି ଓ ମାଧବୀକୁ ଏ ବିଷୟରେ ନାନା ପ୍ରଶ୍ନ କରିଛି, ସେତେବେଳେ ପାଠକ ନାଟକର ପରିଣତି ପାଇଁ ଉତ୍କଣ୍ଠିତ ହୋଇ ରହେଁ । ଉତ୍କଣ୍ଠାର ମୋଚନ ପରେ ନାଟକ ଶେଷ ହୋଇଯାଇଛି ।

'ବାରବାଟୀ' ନାଟକର ପ୍ରଥମ ଅଙ୍କରେ ମୁସଲମାନ ଆକ୍ରମଣର ସାମାନ୍ୟ ସୂଚନା ନେଇ ନାଟ୍ୟକାର ଯେଉଁ ଉତ୍କଣ୍ଠା ସୃଷ୍ଟି କଲେ ତାହା ନାଟକ ଶେଷ ପର୍ଯ୍ୟନ୍ତ ରହିଛି । ପ୍ରଥମ ଅଙ୍କ ତୃତୀୟ ଦୃଶ୍ୟରେ ନରସିଂହ ଦେବଙ୍କ ହଠାତ୍ ଯୁଦ୍ଧ ଯାତ୍ରା କେତେକାଂଶରେ ଉତ୍କଣ୍ଠା ସୃଷ୍ଟି କରିଛି । ତାପରେ ହଠାତ୍ ଜଳେଶ୍ୱର ଦୁର୍ଗକୁ ମୁସଲମାନମାନଙ୍କର ଆକ୍ରମଣ ବେଳେ ନରସିଂହ ଦେବ ଅନୁପସ୍ଥିତ ରହିଛନ୍ତି । ତୃତୀୟ ଅଙ୍କର ପ୍ରଥମ ଦୃଶ୍ୟରେ ଜଳେଶ୍ୱର ଦୁର୍ଗର ଲୋକମାନେ ବନ୍ଦୀହୋଇ ରହିଛନ୍ତି । ବାହାରୁ ସାହାଯ୍ୟ କିମ୍ବା ଖାଦ୍ୟ ସାମଗ୍ରୀ ପହଞ୍ଚୁନାହିଁ । ସେତେବେଳର ଅବସ୍ଥା ବିଷୟରେ ସାମାନ୍ୟ ଉତ୍କଣ୍ଠା ଆସେ । ପରେ ତୃତୀୟ ଅଙ୍କର ଶେଷ ଦୃଶ୍ୟରେ ନରସିଂହ ଦେବ ଓ ଓଡ଼ିଆ ସୈନ୍ୟଙ୍କର ପ୍ରବେଶ ସମୟର ଯେଉଁ ପ୍ରତୀକ୍ଷା, ପାଠକକୁ ଉତ୍କଣ୍ଠିତ କରେ । ମାତ୍ର ଚତୁର୍ଥ ଅଙ୍କ ପ୍ରଥମ ଦୃଶ୍ୟରେ ଅତି ସଂକ୍ଷିପ୍ତ ଭାବରେ ତାହାର ଅବସାନ ହୋଇଛି ।

'ବୁଦ୍ଧ' ନାଟକର ପ୍ରସ୍ତାବନାରେ ନାଟ୍ୟକାର କିଛି ଉତ୍କଣ୍ଠା ସୃଷ୍ଟି କରିବା ପାଇଁ ଚେଷ୍ଟା କରିଛନ୍ତି । ମାତ୍ର ଏହାର ଗଳ୍ପାଂଶ ବହୁ ପ୍ରଚଳିତ ହୋଇଥିବାରୁ ଉତ୍କଣ୍ଠା ବିଶେଷ ରକ୍ଷା କରିପାରି ନାହାନ୍ତି । 'ଦୁର୍ଭିକ୍ଷ' ନାଟିକାର ପ୍ରଥମ ଦୃଶ୍ୟରେ ନଅଙ୍କ ଦୁର୍ଭିକ୍ଷର ସୂଚନା ଦେବା-ପରେ ଦର୍ଶକ କ୍ରମେ ତା'ର ପରିଣତି ପାଇଁ ଉତ୍କଣ୍ଠିତ ହୋଇ ରହେ । ପରବର୍ତ୍ତୀ ଦୃଶ୍ୟମାନଙ୍କରେ କେତେକ ପରିବେଶ ଏହି ଉତ୍କଣ୍ଠା ବଢ଼ାଇବାରେ ସାହାଯ୍ୟ କରିଛି । 'ରାଜକବି ଉପେନ୍ଦ୍ର'ର ଦ୍ୱିତୀୟ ଦୃଶ୍ୟରେ ସୈନିକମାନଙ୍କର ଫଳାଫଳରେ ସାମାନ୍ୟ ଉତ୍କଣ୍ଠା ଦେଖାଦେଇଛି । 'ପୁଷ୍ପିତା' ନାଟିକା ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ଉତ୍କଣ୍ଠା ରକ୍ଷା କରିପାରିଛି । ଏହାର ପରିବେଶ ଖୁବ୍ ସୀମିତ ହୋଇଥିବାରୁ ଶୀଘ୍ରଶୀଘ୍ର ପାଠକର ଆଶଙ୍କାର ଅବସାନ ଘଟେ ।

'ପୂଜାରଣୀ' କାବ୍ୟ ନାଟିକାର ତୃତୀୟ ଦୃଶ୍ୟରେ ଦେବତା ଓ ଲକ୍ଷ୍ମୀଙ୍କର କଥୋପକଥନରେ ଯେଉଁ ଉତ୍କଣ୍ଠା ଆସିଛି, ତା'ର ଅବସାନ ସେହି ଦୃଶ୍ୟରେ ହୋଇଯାଇଛି । ପଞ୍ଚମ ଦୃଶ୍ୟରେ ଲକ୍ଷ୍ମୀଙ୍କୁ ଜ୍ୱର ହେବା ଓ ସୁନାର ରାଧାମୂର୍ତ୍ତି ଗଢ଼ା ହେବା ବିଷୟରେ ଦର୍ଶକ ମନରେ ସାମାନ୍ୟ ଉତ୍କଣ୍ଠା ଯାହା ଦେଖାଦେଇଛି । 'ଶାସନଚକ୍ର' ଏକାଙ୍କିକାର ପ୍ରତ୍ୟେକ ଦୃଶ୍ୟ ଶେଷରେ ନାଟ୍ୟକାର ଉତ୍କଣ୍ଠା ରକ୍ଷା କରିବାକୁ ଚେଷ୍ଟା କରିଛନ୍ତି ।

'ନଷ୍ଟନୀଡ଼'କୁ ଛାଡ଼ିଦେଲେ ଉତ୍କଣ୍ଠା ଦୃଷ୍ଟିରୁ କୌଣସି ନାଟକରେ ଆଶାଜନକ ସଫଳତା ମିଳିନାହିଁ । ଯାହା ବା ରକ୍ଷା କରାଯାଇଛି ସେଥିରେ ନାଟକୀୟତା ବିଶେଷ ଦେଖାଦେଇନି ।

ଆଧୁନିକ ନାଟକରେ ମଞ୍ଚସଙ୍ଗୀତ ପ୍ରତି ଗୁରୁତ୍ୱ ଆରୋପ କରାଯାଇ ନାହିଁ । ପ୍ରଚ୍ଛଦ ସଙ୍ଗୀତ ବା ଯନ୍ତ୍ର ସଙ୍ଗୀତରେ ନାଟକୀୟ ଗାମ୍ଭୀର୍ଯ୍ୟ ରକ୍ଷା କରିବାକୁ ଚେଷ୍ଟା କରାଯାଏ । ଖ୍ରୀ ୧୯୨୫ ରୁ ୧୯୫୫ ମସିହା ମଧ୍ୟରେ ମାନସିଂହଙ୍କ ସମସ୍ତ ନାଟକ ଲେଖା ହୋଇଛି । ଖ୍ରୀ ୧୯୪୯ ମସିହା ବେଳକୁ ମନୋରଞ୍ଜନ ଦାସଙ୍କ 'ଆଗାମୀ' ଭଳି ନାଟକରେ ସଙ୍ଗୀତକୁ ଉଠାଇ ଦେବାକୁ ଚେଷ୍ଟା ହୋଇଥିଲେ ମଧ୍ୟ ସଙ୍ଗୀତର ପରମ୍ପରା ବହୁତ

ଦିନ ପର୍ଯ୍ୟନ୍ତ ଚାଲି ଆସିଛି । ନାଟକ ରଚନା କ୍ଷେତ୍ରରେ ମାନସିଂହ ପରମ୍ପରାବାଦୀ ଥିଲେ । ତେଣୁ ସେ ନାଟକର ବହୁଳାଂଶରେ ସଙ୍ଗୀତର ବ୍ୟବହାର କରିଛନ୍ତି । ଏମାନଙ୍କ ମଧ୍ୟରୁ କେତେକର ଆବଶ୍ୟକତା ରହିଛି । କେତେକ ଗୀତ ସଂଯୋଜିତ ନ ହୋଇଥିଲେ ମଧ୍ୟ କିଛି ଅସୁବିଧା ହୋଇ-ନଥାନ୍ତା । 'ରାଜକବି ଉପେନ୍ଦ୍ର'ରେ ଛଅଟି ଗୀତ, 'ନଷ୍ଟନୀଡ଼'ରେ ଛଅଟି, 'ବାରବାଟୀ'ରେ ଛଅଟି, 'ବୁଦ୍ଧ' ନାଟକରେ ବାରଟି ଗୀତ ରହିଛି ଓ 'ଶାସନଚକ୍ର'ରେ ଗୋଟିଏ ଗୀତ ସଂଯୋଜିତ ହୋଇଛି । ଏହି ଗୀତ ଗୁଡ଼ିକର ଉପଯୋଗିତା ବର୍ତ୍ତମାନ ବିଚାର୍ଯ୍ୟ । 'ରାଜକବି ଉପେନ୍ଦ୍ର'ରେ ପାଞ୍ଚୋଟି ଦୃଶ୍ୟ ଓ ଏହା ଏକ ନାଟିକା ହୋଇଥିବାରୁ ଏଥିରେ ସଂଳାପ ସହିତ ଗୀତର ବାହୁଲ୍ୟ ଦେଖାଯାଏ ।

'ନଷ୍ଟନୀଡ଼'ର ପ୍ରସ୍ତାବନାରେ, ନଟୀ ମାଙ୍ଗଳିକ ଗୀତଗାନ କରିଛି । ପ୍ରଥମ ଅଙ୍କ ପ୍ରଥମ ଦୃଶ୍ୟର ନେପଥ୍ୟରେ ମାଧବୀ ଏକ ଗୀତ ଗାନ କରିଛି । ଦ୍ୱିତୀୟ ଅଙ୍କ ପ୍ରଥମ ଦୃଶ୍ୟର ଶେଷରେ ପୂର୍ଣ୍ଣ ସହିତ ଗ୍ରାମ ଯୁବକ-ମାନେ ଶୋଭାଯାତ୍ରା କରି ଯିବା ସମୟରେ ଗୋଟିଏ ଦେଶାତ୍ମବୋଧ ସଙ୍ଗୀତ ସଂଯୋଜନ କରାଯାଇଛି । ଦ୍ୱିତୀୟ ଅଙ୍କ ଶେଷ, ତୃତୀୟ ଅଙ୍କ ଶେଷ ଓ ଚତୁର୍ଥ ଅଙ୍କ ଶେଷରେ ନଟୀର ଗୀତ ଦେଇ ଦର୍ଶକମାନଙ୍କୁ ବିଷୟବସ୍ତୁ ସମ୍ପର୍କରେ ସୂଚନା ଦିଆଯାଇଛି । ଏହାର ଅନୁପସ୍ଥିତିରେ ନାଟକର କିଛି କ୍ଷତି ହୋଇନଥାନ୍ତା । ବରଂ ନାଟକୀୟ ଉତ୍କଣ୍ଠା କେତେକାଂଶରେ କ୍ଷୁର୍ଣ୍ଣ ହୋଇଛି । ଏ ବିଷୟରେ ନାଟ୍ୟକାରଙ୍କର ନିଜ ମତ ପ୍ରଣିଧାନଯୋଗ୍ୟ । "ଚିତ୍ତବିନୋଦନ ଓ ନାଟକକୁ ବର୍ଣ୍ଣାଢ୍ୟ କରିବା ପାଇଁ ନୃତ୍ୟଗୀତ ଦର୍କାର ତାହା ଅନସ୍ୱୀକାର୍ଯ୍ୟ । ସେଥିପାଇଁ ଆମର ଦୂରଦ୍ରଷ୍ଟା ପ୍ରାଚୀନ ଆଳଂକାରିକମାନେ ସୁନ୍ଦର ବ୍ୟବସ୍ଥା କରି ରଖିଥିଲେ । ନଟୀକୁ ନାଟକର ଏକ ଅପରିତେଜ୍ୟ ଅଂଗ ରୂପେ ରଖି ସେକ୍‌ସପିଅରଙ୍କ ନାଟକରେ ସଙ୍ଗୀତର ଏପରି ସ୍ୱତନ୍ତ୍ର ବ୍ୟବସ୍ଥା ଅଛି ।" (ତା ୨୫।୨।୧୯୭୫ ମାନସିଂହ) ସେଥିପାଇଁ ବୋଧହୁଏ ନାଟକରେ ମାନସିଂହ ନଟୀର ପ୍ରବେଶ କରାଇ-ଛନ୍ତି । ତାଙ୍କର ଆଦର୍ଶ ସଂସ୍କୃତ ନାଟକ ଓ ସେକ୍‌ସପିଅର ହୋଇଥିବାରୁ ଏହା ଦେଖାଦେଇଛି ।

'ବାରବାଟୀ' ନାଟକର ପ୍ରଥମ ଅଙ୍କ ତୃତୀୟ ଦୃଶ୍ୟ ଶେଷରେ ଗୀତ ଜାତୀୟତାମୂଳକ; ମାତ୍ର ଏହାର ଅବର୍ତ୍ତମାନରେ ନାଟକର କଛି କ୍ଷତି ହୋଇନଥାନ୍ତା । ଦ୍ୱିତୀୟ ଅଙ୍କର ଦ୍ୱିତୀୟ ଦୃଶ୍ୟଟି ଆଦୌ ନ ଦେଇଥିଲେ ନାଟକର କୌଣସି ଅଙ୍ଗହାନି ଘଟନ୍ତା ନାହିଁ ବରଂ ଏହାଦ୍ୱାରା ନାଟକର ସଂହତି ନଷ୍ଟ ହୋଇଛି । ଏହି ଦୃଶ୍ୟରେ ଶବର ଶବରୁଣୀ, ନାଚଗୀତ, ଖଞ୍ଜଣୀ ଗୀତ ଓ କେନ୍ଦରା ଗୀତ ଦିଆଯାଇଛି । ଦ୍ୱିତୀୟ ଅଙ୍କର ଷଷ୍ଠ ଦୃଶ୍ୟରେ ସଂଯୋଜକ ଗୀତ ନାଟକୀୟ ବିଷୟ ସହିତ ସମ୍ପର୍କ ରକ୍ଷା କରିଛି । ତୃତୀୟ ଅଙ୍କର ତୃତୀୟ ଦୃଶ୍ୟରେ ଜଳେଶ୍ୱର ମୁସଲମାନ ଶିବିରର କବାଲିକୁ ପରିବେଶ, ମାଦକତା ସୃଷ୍ଟି କରିବାରେ ସାହାଯ୍ୟ କରିଛି । ନାଟକର ଶେଷରେ ବନ୍ଦୀମାନଙ୍କର ଗୀତ କେବଳ ଜାତୀୟତାର ଉଦ୍‌ବୋଧନ ଆଣିଛି ।

'ବୁଦ୍ଧ' ନାଟକର ପ୍ରସ୍ତାବନାରେ ଶିବ-ଗୌରୀଙ୍କର ନୃତ୍ୟ ଗୀତ ଧାର୍ମିକ ପରିବେଶ ସୃଷ୍ଟି କରିବାରେ ସାହାଯ୍ୟ କରିଛି । ପ୍ରଥମ ଅଙ୍କର ପ୍ରଥମ ଦୃଶ୍ୟର ନୃତ୍ୟଗୀତ ବିଷୟାନୁସରଣ କରିଛି । ପ୍ରଥମ ଅଙ୍କର ଷଷ୍ଠ ଦୃଶ୍ୟରେ ଗୋପାଙ୍କ ଦ୍ୱାରା ଏକ ନେପଥ୍ୟ ଗୀତ ଦିଆଯାଇଛି । କିନ୍ତୁ ତୃତୀୟ ଅଙ୍କର ତୃତୀୟ ଦୃଶ୍ୟର ଗୀତ କେବଳ ଦୃଶ୍ୟସଜ୍ଜାର ସାହାଯ୍ୟ ପାଇଁ ଦିଆଯାଇଛି । ଏହାର ବିଷୟ ସହିତ ସମ୍ପର୍କ କମ୍ । ତୃତୀୟ ଅଙ୍କର ପ୍ରଥମ ଦୃଶ୍ୟରେ ଗୋପାଙ୍କର ଅବସ୍ଥା ଜଣାଇବା ପାଇଁ ନେପଥ୍ୟ ଗୀତ ଦିଆଯାଇଛି । ଏହି ନାଟକରେ ଆବଶ୍ୟକତାରୁ ଅଧିକ ଗୀତ ପ୍ରୟୋଗ କରାଯାଇଛି । ବୋଧହୁଏ ନାଟକୀୟ ଅବସ୍ଥାର ପରିବର୍ତ୍ତନ ପାଇଁ କବି ଏପରି କରିଥିବା ସମ୍ଭବ । 'ଶାସନଚନ୍ଦ୍ର' ଏକାଙ୍କିକାର ଚତୁର୍ଥ ଦୃଶ୍ୟରେ ଶିଷ୍ୟାନନ୍ଦଙ୍କ ସ୍କୁଲର ବାଳକ ବାଳିକାମାନେ ଶୋଭାଯାତ୍ରାରେ ଗୋଟିଏ ମିଳିତ ସଙ୍ଗୀତ ଗାନ କରି ଚାଲିଛନ୍ତି । କବି ଜୀବନବନ୍ଧୁ ପଟ୍ଟନାୟକଙ୍କ କବିତ୍ୱ, ଶିଷ୍ୟାନନ୍ଦଙ୍କ ସଙ୍ଗଠନ ଓ ଶାସନଚନ୍ଦ୍ରର ଦୋଷ ଦୁର୍ବଳତା ଦେଖାଇବା ପାଇଁ ଏହା ଉପଯୋଗୀ ହୋଇଛି ।

ସମୁଦାୟ ସଙ୍ଗୀତ ସଂଯୋଜନା ଉପରେ ଆଲୋଚନା କଲେ ଜଣାଯାଏ, ମାନସିଂହ ନିଜର କବିତ୍ୱ ଓ ଦେଶାତ୍ମବୋଧର ପ୍ରକାଶ ପାଇଁ ବହୁତ

ପରିମାଣରେ ସଙ୍ଗୀତ ସଂଯୋଜନା କରିଛନ୍ତି । ଏହାଦ୍ୱାରା କେତେକାଂଶରେ ନାଟକର ନାଟକୀୟତା କ୍ଷୁଣ୍ଣ ହୋଇଥିବ; ମାତ୍ର ଏ ଦୃଷ୍ଟିରୁ ମାନସିଂହଙ୍କୁ ଦୋଷଦେଇ ହେବନାହିଁ । କାରଣ ସେ ନୂତନତ୍ୱ ଆଣିବା ଅପେକ୍ଷା ପରମ୍ପରାକୁ ଅଗ୍ରାଧିକାର ଦେଇଛନ୍ତି ।

**ହାସ୍ୟରସ** 'କଷ୍ଟିପଥର'ରେ ନାଟ୍ୟକାର ହାସ୍ୟରସ ସୃଷ୍ଟି କରିବା ପାଇଁ ସୁଯୋଗ ପାଇ ନାହାନ୍ତି । କମଳୀ ଓ ରାଧୀ ଚରିତ୍ର ମଧ୍ୟରେ ହାସ୍ୟରସର ସାମାନ୍ୟ ସୂଚନା ମିଳେ । ଦୁର୍ଭିକ୍ଷ, ଶାସନଚକ୍ର, ପୂଜାରିଣୀ, ବୁଦ୍ଧଦୂତ, ରାଜକବି ଉପେନ୍ଦ୍ର ଇତ୍ୟାଦି ଦୁଃଖ ମୂଳକ ଘଟଣା ହୋଇଥିବାରୁ ଏଥିରେ ହାସ୍ୟରସ ଦିଗଟି ଅତ୍ୟନ୍ତ ଅବହେଳିତ । 'ବୁଦ୍ଧ' ନାଟକର ଦ୍ୱିତୀୟ ଅଙ୍କ ଷଷ୍ଠ ଦୃଶ୍ୟରେ ଛନ୍ଦକ ଓ ଛନ୍ଦକର ସ୍ତ୍ରୀ ମଧ୍ୟରେ ଥିବା ସଂଳାପରେ ହାସ୍ୟରସର ସୃଷ୍ଟି କରାଯାଇଛି । ସେହିପରି ଚତୁର୍ଥ ଅଙ୍କ ତୃତୀୟ ଦୃଶ୍ୟରେ ବ୍ରାହ୍ମଣ-ବ୍ରାହ୍ମଣୀ ସଂଳାପରେ ହାସ୍ୟରସର ସାମାନ୍ୟ ଆଭାସ ଅଛି ।

କେବଳ ବାରବାଟୀ ନାଟକରେ ମାନସିଂହ ହାସ୍ୟରସ ପରିବେଷଣ କରିଛନ୍ତି । ପ୍ରଥମ ଅଙ୍କ ପ୍ରଥମ ଦୃଶ୍ୟରେ ବଙ୍ଗୀୟ ଯାତ୍ରୀ ଓ ପ୍ରହରୀର କଥୋପକଥନରୁ ହାସ୍ୟରସର ଆରମ୍ଭ ହୋଇଛି । ଦ୍ୱିତୀୟ ଦୃଶ୍ୟରେ ହାରୀ ଓ ସଦସ୍ୟଙ୍କ ସଂଳାପ ହାସ୍ୟରସ ସୃଷ୍ଟି କରିଛି । ଦ୍ୱିତୀୟ ଅଙ୍କ ତୃତୀୟ ଦୃଶ୍ୟରେ ବଳରାମ ସଦସ୍ୟଙ୍କ ବକ୍ତବ୍ୟ, ଦ୍ୱିତୀୟ ଅଙ୍କ ଦ୍ୱିତୀୟ ଦୃଶ୍ୟରେ ମୁସଲମାନ ସୈନ୍ୟ ଓ ମୌଲବୀଙ୍କର କଥୋପକଥନରେ ଅସ୍ୱାଭାବିକତା ହାସ୍ୟରସ ସୃଷ୍ଟି କରେ । ତୃତୀୟ ଅଙ୍କର ସପ୍ତମ ଦୃଶ୍ୟରେ ଓଡ଼ିଆ ସୈନ୍ୟଙ୍କର କଥାବାର୍ତ୍ତା, ଅଷ୍ଟମ ଦୃଶ୍ୟରେ ଗୌଡ଼ର ମୁସଲମାନ ଶିବିର, ସିରାଜ ଖାଁ ଓ ଅଧସ୍ତନ କର୍ମଚାରୀଙ୍କର ସଂଳାପରେ ହାସ୍ୟରସର ଆଭାସ ମିଳେ ।

ମୋଟ ଉପରେ କହିବାକୁ ଗଲେ ବଳରାମ ସଦସ୍ୟ ଚରିତ୍ରଟି ହାସ୍ୟରସ ପରିବେଷଣ ପାଇଁ ସୃଷ୍ଟି ହୋଇଛି । ମାନସିଂହଙ୍କ ଅଧିକାଂଶ ସୃଷ୍ଟି ଦୁଃଖମୂଳକ ହୋଇଥିବାରୁ ହାସ୍ୟରସ ଦିଗରୁ ଦୁର୍ବଳ ।

ମାନସିଂହଙ୍କ ନାଟକରେ ଘଟଣାର କାଳଗତ ଓ ସ୍ଥାନ ସମ୍ପର୍କୀୟ ଐକ୍ୟ ରକ୍ଷା କରାଯିବା ପାଇଁ ଚେଷ୍ଟା କରାଯାଇଛି । ଅବଶ୍ୟ ଆରିଷ୍ଟୋଟଲଙ୍କ ସମୟଗତ ଐକ୍ୟ ରକ୍ଷା କରାଯାଇ ପାରିନାହିଁ । 'ବୁଦ୍ଧ' ନାଟକକୁ ଛାଡ଼ିଦେଲେ ଅନ୍ୟ ସମସ୍ତ ନାଟକର ସମୟସୀମା ସୀମିତ । 'ବୁଦ୍ଧ' ନାଟକରେ—ଏଥିରେ ସାମାନ୍ୟ ବ୍ୟତିକ୍ରମ ଦେଖାଯାଏ । ଅଧିକାଂଶ ନାଟକର ପ୍ରାରମ୍ଭ ସମୟକୁ ପୂର୍ଣ୍ଣିମା ଉପରେ ନିର୍ଦ୍ଦେଶ ଦିଆଯାଇଛି । 'ରାଜକବି ଉପେନ୍ଦ୍ର', 'ପୁଷ୍ପିତା', 'ପୂଜାରିଣୀ', 'ବୁଦ୍ଧ', ବୁଦ୍ଧଦୂତୀର କଥାବସ୍ତୁ ପୂର୍ଣ୍ଣିମାରେ ଆରମ୍ଭ ହୋଇଛି । ରୋମାଣ୍ଟିକ କବିର ଆନ୍ତରିକ ଭାବନା ଏଥିରେ ପ୍ରତିଫଳିତ ।

ଯଦିଚ ମଞ୍ଚୋପଯୋଗୀ ନାଟକ ଓ ସାହିତ୍ୟିକ ନାଟକ (Closet play) ଉଭୟେ ନାଟକର ଅନ୍ତର୍ଗତ, ତଥାପି ନାଟକ କହିଲେ ସାଧାରଣତଃ ଅଭିନୟ କୁଶଳ ମଞ୍ଚୋପଯୋଗୀ ନାଟକକୁ ବୁଝା ଯାଇଥାଏ । ନାଟକର ମଞ୍ଚ ସଫଳତା ଉପରେ ଅଭିନୟ ନିର୍ଭର କରେ । ସେଥିପାଇଁ ନାଟକର ନିର୍ଦ୍ଦେଶନା, ଅଭିନୟ, ଦୃଶ୍ୟ ବିଧାନ, ନେପଥ୍ୟ ବିଧାନ, ରଙ୍ଗ ସଜ୍ଜା, ତଥା ନାଟକର ଅନ୍ୟାନ୍ୟ ବିଭାଗ ଉପରେ ଦୃଷ୍ଟି ଦେବାକୁ ପଡ଼େ ।

ଆମର ପୂର୍ବାଲୋଚିତ ନାଟକ ଗୁଡ଼ିକୁ ଏହି ଦୃଷ୍ଟିରୁ ବିଚାର କରିବା । 'ନଷ୍ଟନୀଡ଼' ନାଟକରେ ପାଞ୍ଚୋଟି ଅଙ୍କ ଓ ଷୋଳଟି ଦୃଶ୍ୟ ରହିଛି । ଏହାର ଦୃଶ୍ୟସଜ୍ଜା ଓ ନାଟକୀୟତା ବିପନ୍ନ କଲାଭଳି କୌଣସି ଘଟଣା ବା ଚରିତ୍ରର ଅବତାରଣା କରାଯାଇନି । ମଞ୍ଚ ସଫଳତା ନିମନ୍ତେ ପାତ୍ରୋପଯୋଗୀ ଭାଷା ରହିଛି; ଯାହାକି ଚରିତ୍ର ଗୁଡ଼ିକର ଚାରିତ୍ରିକ ମର୍ଯ୍ୟାଦା ରକ୍ଷଣରେ ସହାୟକ ହୋଇଛି । ମଞ୍ଚମୂଲ୍ୟ ସଂରକ୍ଷିତ ହୋଇଅଛି ।

'ବାରବାଟି' ନାଟକରେ ଚାରୋଟି ଅଙ୍କ ଓ ବାଇଶଟି ଦୃଶ୍ୟ ରହିଛି । ଏହାର ଦୃଶ୍ୟସଜ୍ଜା ଓ ସଂଳାପ ସଂଯୋଜନାରେ ବିଶେଷ କିଛି ଅସୁବିଧା ନାହିଁ । ଅଭିନୟ ପାଇଁ ମଞ୍ଚମୂଲ୍ୟ ରହିଛି । ଏହାର କାହାଣୀ ପରିବେଷଣ ସଫଳ ନୁହେଁ । 'ବୁଦ୍ଧ' ନାଟକରେ ଚାରୋଟି ଅଙ୍କ ଓ

ସତାଇଶଟି ଦୃଶ୍ୟ ରହିଛି ଓ ଏହା ମଧ୍ୟରେ ବହୁ ଅନାବଶ୍ୟକ ଓ ଅବାନ୍ତର ଦୃଶ୍ୟ ରହିଛି ଓ ଏହା ଖୁବ୍ ଦୀର୍ଘ ହୋଇଥିବାରୁ ମଞ୍ଚମୂଲ୍ୟ ହରାଇଛି । କେତେକ ସ୍ଥାନରେ ସଂଳାପ ପାତ୍ରୋପଯୋଗୀ ନୁହେଁ । କେତେକ ସ୍ଥାନରେ ଅଶ୍ରାବ୍ୟ ଗ୍ରାମ୍ୟ ଶବ୍ଦ ପ୍ରୟୋଗ କରି ନାଟକର ମୂଲ୍ୟ କ୍ଷୁଣ୍ଣ କରାଯାଇଛି । 'ଶାସନଚକ୍ର' ଏକାଙ୍କିକାରେ ମଞ୍ଚମୂଲ୍ୟ ରହିଛି ।

'ପୂଜାରିଣୀ' 'ଦୁର୍ଭିକ୍ଷ' ଓ 'ପୁଷ୍ପିତା' ଆଦି ଅଭିନୟ ହୋଇଥିବାର ମାନସିଂହ ଉଲ୍ଲେଖ କରିଛନ୍ତି; ମାତ୍ର ଏହାର ମଞ୍ଚୋପଯୋଗିତା ଅପେକ୍ଷା ସାହିତ୍ୟିକ ମୂଲ୍ୟ ଅଧିକ । ଏଗୁଡ଼ିକରେ ମାନସିଂହଙ୍କ କବିତ୍ୱ ସ୍ପଷ୍ଟ ପ୍ରତିଫଳିତ ।

ବର୍ତ୍ତମାନ ମାନସିଂହଙ୍କ ସମସ୍ତ ନାଟ୍ୟସୃଷ୍ଟି ଆଲୋଚନା କରାଗଲା । ନିଜେ ସ୍ରଷ୍ଟା ଏହାକୁ ନାଟକ, ନାଟିକା, କାବ୍ୟନାଟ୍ୟ ଓ ଏକାଙ୍କିକା ଆଦି ନାମକରଣ କରିଥିବାରୁ ସେହି ନାମରେ ଏହା ନାମିତ ହୋଇଛି ମାତ୍ର ।

ସମସ୍ତ ଦୃଷ୍ଟିରୁ ବିଚାର କଲେ ମାନସିଂହଙ୍କ ନାଟକ ସଂଖ୍ୟା ତିନୋଟି । ସେମାନଙ୍କ ମଧ୍ୟରୁ 'ନଷ୍ଟନୀଡ଼', 'ବାରବାଟୀ' ଓ 'ବୁଦ୍ଧ' ଯଥାକ୍ରମେ ପ୍ରଥମ, ଦ୍ୱିତୀୟ ଓ ତୃତୀୟ ସ୍ଥାନ ଅଧିକାର କରିବେ । ଅନ୍ୟଗୁଡ଼ିକ ମଧ୍ୟରୁ 'ଶାସନଚକ୍ର' ତାଙ୍କର ଶ୍ରେଷ୍ଠ ଏକାଙ୍କିକା । ଏହା ବ୍ୟତୀତ 'ରାଜକବି ଉପେନ୍ଦ୍ର'ରୁ କେତେକ ଅନାବଶ୍ୟକ ଗୀତ ବାଦ ଦେଲେ ଏହା ଏକାଙ୍କିକା ଶ୍ରେଣୀର ହେବ । 'ଦୁର୍ଭିକ୍ଷ', 'ପୂଜାରିଣୀ'କୁ ଏକାଙ୍କି ନାଟ୍ୟକାବ୍ୟ ଭାବରେ ଗ୍ରହଣ କରାଯାଇପାରେ 'ବୁଦ୍ଧବୁଦ୍ଧଦ'ରେ ଛଅଟି ଦୃଶ୍ୟ ରହିଛି । ନାଟ୍ୟତତ୍ତ୍ୱ ଅନୁସାରେ ଏହାକୁ ସଙ୍ଗୀତ ନାଟ୍ୟ (Opera) ଶ୍ରେଣୀର, 'ପୁଷ୍ପିତା'କୁ ନୃତ୍ୟନାଟ୍ୟ (Dance Drama) ଭାବରେ ଗ୍ରହଣ କରାଯାଇପାରେ । ସମସ୍ତ ନାଟକରେ ମାନସିଂହ ତିନୋଟି ବିଷୟ ଉପସ୍ଥାପନ କରିବାପାଇଁ ଚେଷ୍ଟା କରିଛନ୍ତି । ଯଥା ଦେଶାତ୍ମବୋଧ ଓ ଜାତୀୟ ଚେତନା (ନଷ୍ଟନୀଡ଼, ବାରବାଟୀ, ଶାସନଚକ୍ର, ବୁଦ୍ଧବୁଦ୍ଧଦ ଓ ବୁଦ୍ଧ), ପ୍ରେମ ଓ ପ୍ରଣୟ ଚେତନା

(ନଷ୍ଟନୀଡ଼, 'ରାଜକବି ଉପେନ୍ଦ୍ର', 'ପୂଜାରିଣୀ', ପୁଷ୍ପିତା, ଦୁର୍ଭିକ୍ଷ) ଓ ଧର୍ମୀୟ ଭାବଧାରାର ପ୍ରକାଶ (ବୁଦ୍ଧ)।

ମାନସିଂହଙ୍କ ଲେଖନୀ ସର୍ବଗାମୀ। ଉପନ୍ୟାସ ଓ ଗଳ୍ପ ସୃଷ୍ଟିରେ ସେ ଅସଫଳ। ନାଟକ ଭାବରେ ଯାହା ଲେଖିଲେ, ଗୋଟିଏ ସାହିତ୍ୟର ନାଟକ ଇତିହାସରେ ନୂତନତା ଆଣି ସଫଳ ନାଟ୍ୟକାରର ସମ୍ମାନ ପାଇବା ଭଳି ନୁହେଁ। ଗୋଟିଏ ଦୁଇଟି ନାଟକ ଜଣେଜଣେ ନାଟ୍ୟକାରଙ୍କୁ ପ୍ରତିଷ୍ଠିତ କରାଇ ଦେଇଥାଏ। 'ନଷ୍ଟନୀଡ଼'ରେ ସେ ପ୍ରକାର ଗୁଣ ଅଛି; ମାତ୍ର ମାନସିଂହଙ୍କୁ କାବ୍ୟକବିତା, ସମାଲୋଚନା ତଥା ପ୍ରବନ୍ଧ ସୃଷ୍ଟି ଯେଉଁ ସମ୍ମାନ ଦେଇଛି ନାଟକ ରଚନାକରି ସେ ସେହି ସମ୍ମାନର ଅଧିକାରୀ ହୋଇପାରି ନାହାନ୍ତି। ସ୍ଥୂଳତଃ କହିବାକୁ ଗଲେ ତାଙ୍କର ଏକମାତ୍ର ସଫଳ ନାଟକ 'ନଷ୍ଟନୀଡ଼' ପ୍ରକୃତରେ ନୀଡ଼ ହରାଇ ବସିଛି। ଓଡ଼ିଆ ନାଟକର ଇତିହାସରେ ମାନସିଂହ ଏକ ଅନାଲୋଚିତ ଅଧ୍ୟାୟ। ମଞ୍ଚମୂଲ୍ୟ ଦୃଷ୍ଟିରୁ ନହେଲେ ହେଁ ସାହିତ୍ୟିକ ମୂଲ୍ୟ ଦୃଷ୍ଟିରୁ ତାଙ୍କ ନାଟକ ଗୁଡ଼ିକର ଚିରନ୍ତନ ମୂଲ୍ୟ ରହିଛି। ପାରିପାର୍ଶ୍ୱିକ ପରିବେଶ, ଦେଶର ଗୌରବମୟ ଇତିହାସ, ନାଟକୀୟ ଉପାଦାନ, ପ୍ରାଚ୍ୟ ପାଶ୍ଚାତ୍ୟ ନାଟ୍ୟକାରଙ୍କ ପରୋକ୍ଷ ପ୍ରେରଣା ସବୁ ଥିବା ସତ୍ତ୍ୱେ ମାନସିଂହ ବିପୁଳ ସଂଖ୍ୟାରେ ନାଟକ ସୃଷ୍ଟି କରିପାରି ନାହାନ୍ତି। ତାହାର କାରଣ ମାନସିଂହଙ୍କ ନାଟ୍ୟ ପ୍ରତିଭାଟି କବିତ୍ୱ ପ୍ରତିଭାରେ ମ୍ଳାନ ହୋଇଯାଇଛି।



# ମାନସିଂହ ସାହିତ୍ୟରେ
# ଜାତୀୟ ଚେତନା

**ଜାତୀୟ ଚେତନା**— "ଭୂମିଖଣ୍ଡ ପ୍ରତି ଆସକ୍ତି ଓ ଗୋଷ୍ଠୀପ୍ରତି ଆକର୍ଷଣ ସଭ୍ୟତାର ଆଦ୍ୟ ବିକାଶ ଦିନରୁ ଘଟିଅଛି । ଭାଷାର ଜନ୍ମପରେ ଭୂମି ଚେତନା ସହିତ ଏକଭାଷାଭାଷୀ ସମାଜ ମଧ୍ୟରେ ଗୋଷ୍ଠୀ ଚେତନା ପ୍ରାଞ୍ଜଳ ଭାବରେ ପ୍ରକାଶ ପାଇ ଆସିଛି । ଏହି ଭୂମି ଓ ଗୋଷ୍ଠୀ ଚେତନାହିଁ ଜାତୀୟତାର ମୂଳଦୁଆ । ଏହି ଜାତୀୟ ପ୍ରବାହରେ ମନୁଷ୍ୟ ପ୍ରଥମେ ଆତ୍ମୋତ୍ସର୍ଗ କରିବାକୁ ଶିଖିଛି । ନିଜର ସୀମିତ ବ୍ୟକ୍ତିସତ୍ତାକୁ ଦେଶ ବା ଜାତିର ବୃହତ୍ତର ସତ୍ତାରେ ଉପଲବ୍ଧି କରିଛି । ଏଇଥି ପାଇଁ ପ୍ରକାଶ ପାଇଛି, ପୁରାଣ, ଧର୍ମ, ଦର୍ଶନ, ଓ ସାହିତ୍ୟ । ଏଥିରୁ ବିକଶିତ ହୋଇଛି ବିଜ୍ଞାନ, ଚିତ୍ରକଳା ଓ ଭାସ୍କର୍ଯ୍ୟ" (୧)

ମାତୃଭୂମି, ମାତୃଭାଷା, ନିଜ ଧର୍ମ ସଂସ୍କୃତି ଓ ସମାଜ ପ୍ରତି ପ୍ରାଣମୟ ମମତାର ଉତ୍ସ ସଭ୍ୟତା'ର ଆଦିମ ଅନ୍ଧକାର ଯୁଗରୁ ଉତ୍ସାରିତ । ଆଦିମର ଗୋଷ୍ଠୀ ଚେତନା, ଆଧୁନିକ ଜାତୀୟତା'ର ଏକ ବର୍ଣ୍ଣାଢ୍ୟ ରୂପାନ୍ତର । ଏହି ଜାତୀୟତାର ଅଭ୍ୟୁତ୍ଥାନ ଘଟେ ସାଧାରଣତଃ ଅଷ୍ଟାଦଶ ଶତାବ୍ଦୀରେ, ପାଶ୍ଚାତ୍ୟ ଭୂଖଣ୍ଡରେ । କ୍ରମବିବର୍ତ୍ତନରେ ଗୋଷ୍ଠୀକୈନ୍ଦ୍ରିକ, ଧର୍ମମୂଳକ, ଭାଷାକୈନ୍ଦ୍ରିକ, ଆର୍ଥନୀତିକ ଚେତନା ସ୍ତରକୁ ଆସି ଊନବିଂଶ ଶତାବ୍ଦୀରେ ଏହା ସ୍ୱଦେଶପ୍ରୀତିରେ ପହଞ୍ଚି ପାରିଲା । ନବଜାଗରଣ, ଶିଳ୍ପ ବିପ୍ଳବ, ଆନ୍ତର୍ଜାତୀୟ ବାଣିଜ୍ୟ କାରବାର ସଙ୍ଗେ ଜାତିଗତ ବିଭେଦର ବୀଜ ଶୁଣାଗଲା । ପ୍ରଥମ ବିଶ୍ୱଯୁଦ୍ଧ ବୈଜ୍ଞାନିକ ଉଦ୍ଭାବନ, ଯନ୍ତ୍ରଶକ୍ତିର ବିକାଶ,

---

୧—ଆଧୁନିକ ଓଡ଼ିଆ କାବ୍ୟଧାରା (ଆଦିଯୁଗ)
**ଡଃ ନରେନ୍ଦ୍ରନାଥ ମିଶ୍ର, ବିଶ୍ୱଭାରତୀ ଶାନ୍ତିନିକେତନ—**

ଇତିହାସ ଚେତନା, ଓ ଆର୍ଥିକ ସଂଗଠନ, ଜାତୀୟ ଚେତନା ତଥା ଦେଶପ୍ରେମ ବିକାଶରେ ସାହାଯ୍ୟ କଲା । ଆଧୁନିକ ଶିକ୍ଷା ପ୍ରଣାଳୀ, ସମ୍ବାଦ-ପତ୍ର ଓ ବେତାରଯନ୍ତ୍ର ମଧ୍ୟରେ ଆଧୁନିକ ଜାତୀୟ ଚେତନା ପ୍ରସାର ଲାଭକଲା ।

**ଓଡ଼ିଆ ସାହିତ୍ୟରେ ଜାତୀୟ ଚେତନା ଓ ତା'ର ପ୍ରବାହ**—ଇଂରେଜମାନେ ଭାରତକୁ ଆସିବା ପରେ ଏ ଦେଶରେ ଆଧୁନିକ ଜାତୀୟ ଚେତନାର ରୂପ ଦେଖିବାକୁ ମିଳିଲା କିନ୍ତୁ ଓଡ଼ିଆ ସାହିତ୍ୟର ଆଦି ଯୁଗରୁହିଁ ସାହିତ୍ୟରେ ଜାତୀୟତାର ସ୍ୱର ଶୁଣିବାକୁ ମିଳେ । ସାରଳା, ବଳରାମ, ଜଗନ୍ନାଥ ଆଦିଙ୍କ ପୁରାଣ ଗୁଡ଼ିକ ପଢ଼ିଲେ ଏହା ଅନୁଭୂତ ହୁଏ । ପଣ୍ଡିତ ନୀଳକଣ୍ଠ ସ୍ପଷ୍ଟ ଭାବରେ କହିଛନ୍ତି :—"ସାରଳା ଦାସଙ୍କ ରାଷ୍ଟ୍ର-ପ୍ରୀତି ଓ ଦେଶାତ୍ମତା ଦେଖିବାର କଥା । ଓଡ଼ିରାଷ୍ଟ୍ରଇ ତାଙ୍କର ଉପାସ୍ୟ । ତାଙ୍କର ସବୁ ଏଇ ଭୂମିରେ ପୁଣି ସବୁ ଦେବତା । ଏଇ ଭୂମିରେ ସବୁ ତୀର୍ଥ । ଏଇ ଭୂମିର ଗ୍ରାମ, ବଣ, ଏପରିକି, ମାଟିବାଲି ପର୍ଯ୍ୟନ୍ତ ତାଙ୍କର ପାଖରେ ପବିତ୍ର ସ୍ମରଣୀୟ" । (୨) ଅଷ୍ଟାଦଶ ଶତାବ୍ଦୀର କବି ବ୍ରଜନାଥ ବଡ଼-ଜେନାଙ୍କ ସମୟକୁ ସ୍ୱଦେଶପ୍ରୀତିର ରାଜନୈତିକ ରୂପ ପ୍ରାପ୍ତ ଦେଖିବାକୁ ମିଳିଥିଲା । ବ୍ରଜନାଥଙ୍କ ବର୍ଣ୍ଣନାରେ ମିଳେ ଓଡ଼ିଆ ସେନାଙ୍କର କୃତିତ୍ୱର ଅତୁଳନୀୟ ଗୌରବବୋଧ । କହ୍ନେଇ ଚମ୍ପତିରାୟଙ୍କର 'ପାଇକ ଖେଦା', ଓ ପୁରୁଷୋତ୍ତମ ଦାସଙ୍କ 'କାଞ୍ଚିକାବେରୀ' କାବ୍ୟରେ ଏହି ଚିନ୍ତାଧାରାର ସମ୍ୟକ ସ୍ଫୁରଣ ଘଟିଅଛି । ଆଧୁନିକ ଯୁଗର ଯେଉଁ ଜାତୀୟ ଚେତନା—ଭୂଗୋଳ ଇତିହାସ ତଥା ଆର୍ଥିକ ସଂଘର୍ଷମୟ ଜୀବନ ଉପରେ ପ୍ରତିଷ୍ଠିତ, ତାହାର ପ୍ରଥମ ସ୍ୱର ଆମେ ରାଧାନାଥଙ୍କ କାବ୍ୟ-କବିତାମାନଙ୍କରେ ଦେଖିବାକୁ ପାଉଁ । ଊନବିଂଶ ଶତକର ଶେଷ ଦୀଦଶକରୁ ଓଡ଼ିଆ ଜାତୀୟବାଦୀ ସାହିତ୍ୟର ସୂତ୍ରପାତ ହୋଇଅଛି । ଚଳିତ ଦଶକର ମଧ୍ୟଭାଗ ପର୍ଯ୍ୟନ୍ତ, ଜାତୀୟ ଜୀବନରେ ନାନା ଚେତନା, ଭାବନା, ଆଶା, ଆକାଂକ୍ଷା ଓ ପରିବର୍ତ୍ତନଶୀଳ ଭାବାବେଗ ଏହି ଜାତୀୟବାଦୀ ସାହିତ୍ୟ ମୁକୁରରେ

୨—ଓଡ଼ିଆ ସାହିତ୍ୟର କ୍ରମ ପରିଣାମ, ପୃ- ୩୮ ପଣ୍ଡିତ ନୀଳକଣ୍ଠ ଦାସ

ପ୍ରତିବିମ୍ବିତ ହୋଇଅଛି । ଭକ୍ତ କବି ମଧୁସୂଦନ ରାଓ, ବ୍ୟାସକବି ଫକୀରମୋହନ, ସ୍ୱଭାବ କବି ଗଙ୍ଗାଧର ମେହେର, ଓ ଦେଶପ୍ରାଣ ମଧୁସୂଦନ ଦାସଙ୍କ ରଚନାରେ ଜାତୀୟ ଚେତନାର ସ୍ୱର ଝଙ୍କୃତ । ଖ୍ରୀ ୧୯୦୨ ମସିହାର 'ଗଞ୍ଜାମ ଜାତୀୟ ସମିତି' ଓ ଖ୍ରୀ ୧୯୦୩ ରେ ଓଡ଼ିଶାର ଜାତୀୟ ମିଳନ ପୀଠ-'ଉତ୍କଳ ସମ୍ମିଳନୀ'ର ପ୍ରତିଷ୍ଠା ଓ ଦେଶ ମିଶ୍ରଣ ଆନ୍ଦୋଳନ ଜାତୀୟବାଦୀ ସାହିତ୍ୟ ସୃଷ୍ଟି କରିବାରେ ନୂତନ ପ୍ରେରଣା ଯୋଗାଇ ଦେଲା ।

ଡଃ ଜାନକୀ ବଲ୍ଲଭ ମହାନ୍ତିଙ୍କ ଭାଷାରେ "ଏହି ସମୟର ପ୍ରାୟ ସମସ୍ତ ସ୍ରଷ୍ଟାଙ୍କ ରଚନାରେ ଜାତୀୟତା ଅଭିବ୍ୟକ୍ତ ଲାଭ କରିଛି, ବିଶେଷତଃ ଫକୀରମୋହନ, ମଧୁସୂଦନ, ଗୋପବନ୍ଧୁ, ନନ୍ଦକିଶୋର, ରାମଶଙ୍କର, ପଦ୍ମଚରଣ, ଚନ୍ଦ୍ରମୋହନ, ବ୍ରଜସୁନ୍ଦର ଦାସ, ଶଶୀଭୂଷଣ, ମୃତ୍ୟୁଞ୍ଜୟ ରଥ ପ୍ରଭୃତିଙ୍କ ରଚନାରେ ତାହା ଦେଖିବାକୁ ମିଳିଥାଏ । ଉକ୍ତ କବିମାନଙ୍କ କବିତାରେ (କ) ଉତ୍କଳକୁ ମାତୃ ରୂପରେ ବର୍ଣ୍ଣନା (ଖ) ଉତ୍କଳର ଅତୀତ ଗୌରବ, (ଗ) ଭାରତ ଜନନୀ ବନ୍ଦନା (ଘ) ଦେଶ ସେବାଲାଗି ଆତ୍ମୋତ୍ସର୍ଗ ଓ ତ୍ୟାଗ ବରଣର ଗୌରବ, (ଙ) ମାତୃଭାଷାର ସେବା (ଚ) ଉତ୍କଳ ବ୍ୟାପୀ ଏକତା ଓ ଭାତୃଭାବର ଜାଗରଣ ଇତ୍ୟାଦି ଭାବଧାରାର ସନ୍ଧାନ ମିଳେ ।"(୩) ଏଥିରୁ ଲକ୍ଷ୍ୟ କରିବାର କଥା ଯେ ଖ୍ରୀ ୧୯୨୧ ପର୍ଯ୍ୟନ୍ତ ଓଡ଼ିଆ ଲେଖକଙ୍କ ସାହିତ୍ୟ କୃତିରେ ଉତ୍କଳୀୟ ଜାତୀୟତାହିଁ ସ୍ପଷ୍ଟ ଭାବରେ ପ୍ରକାଶିତ ହୋଇଥିଲା କିନ୍ତୁ ଏହା ଭାରତୀୟ ଜାତୀୟତାର ବିରୋଧୀ ନଥିଲା ।

ଖ୍ରୀ ୧୯୨୧ରେ ଅସହଯୋଗ ଆନ୍ଦୋଳନ ପରଠାରୁ ଓଡ଼ିଆ କବିମାନେ ବହୁ ସଂଖ୍ୟାରେ ସ୍ୱାଧୀନତା ଆନ୍ଦୋଳନର ମନ୍ତ୍ର ପ୍ରଚାର କରିବାକୁ ଲାଗିଲେ । ଉତ୍କଳୀୟ ଜାତୀୟ ଚେତନା ପରିବର୍ତ୍ତେ ସେମାନଙ୍କଠାରେ ସର୍ବଭାରତୀୟ ଜାତୀୟ ଚେତନା ଦେଖାଦେଲା । ଲେଖକମାନେ ସଚେତ

---

**୩—ଆଧୁନିକ ଓଡ଼ିଆ ସାହିତ୍ୟ-ଡଃ ଜାନକୀବଲ୍ଲଭ ମହାନ୍ତି (ଭରଦ୍ୱାଜ) ପୃ- ୯୭**

ଯେପରି ଗୋପବନ୍ଧୁଙ୍କ ଜାତୀୟତା ମନ୍ତ୍ରରେ ଉଦ୍‌ବୁଦ୍ଧ ହୋଇ ମହାଭାରତୀୟ ଜାତୀୟ ପ୍ରବାହେ ମିଶୁ ଉତ୍କଳ ପ୍ରବାହର ଝଙ୍କାର ତୋଳିଥିଲେ । ସେମାନଙ୍କ ମଧ୍ୟରୁ, ଗୋଦାବରୀଶ ମିଶ୍ର, ନୀଳକଣ୍ଠ ଦାସ, କୁନ୍ତଳାକୁମାରୀ ସାବତ, କୃଷ୍ଣପ୍ରସାଦ ବସୁ, ବାଞ୍ଛାନିଧି ମହାନ୍ତି, ନାରକିଶୋର ଦାସ, କୃଷ୍ଣ-ମୋହନ ପଟ୍ଟନାୟକ, ଗୋବିନ୍ଦଚନ୍ଦ୍ର ଶୂରଦେଓ, ଗୋଦାବରୀଶ ମହାପାତ୍ର ଆଦି ପ୍ରଧାନ ।

**ଜାତୀୟବାଦୀ କବି ମାନସିଂହ**—କୈଶୋରରୁ ମାନ-ସିଂହଙ୍କର ଜାତୀୟତା ଓ କବିତାର ଉଷାକାଳ । ସେ 'ଶିକ୍ଷାବିତ୍ତର ଗାଥା'ରେ ଲେଖିଛନ୍ତି—"ଖ୍ରୀ ୧୯୧୬ରେ ପୁରୀରେ ଉତ୍କଳ ସମ୍ମିଳନୀର ଏକ ଅଧିବେଶନ ବସିଥିଲା × × × ଏହି ସମ୍ମିଳନୀର ସଭାପତି ଥିଲେ ସ୍ୱର୍ଗତ ଚନ୍ଦ୍ରଶେଖର ବେହେରା । × × × ମୋର ପିଲାଦିନେ ସାହିତ୍ୟରେ ନିରତିଶୟ ଆଗ୍ରହ ଦେଖି ସାନ୍ତ ବାପା ମୋତେ ସାଥିରେ ନେଇ ଯାଇଥିଲେ ଏହି ସମ୍ମିଳନୀ ଦେଖାଇ ଆଣିବା ପାଇଁ । ଏ ସୁଯୋଗ ସତେ ଯେପରି ନେଇ ଏକ ସୁନ୍ଦର ସଂସାରରେ ପହଞ୍ଚାଇ ଦେଲା । କାରଣ ସେଥର ସେହିଠାରେହିଁ ଓଡ଼ିଶାର ସେକାଳର ସକଳ ବିଖ୍ୟାତ ଲୋକଙ୍କୁ ଦେଖିବାର ସୁଯୋଗ ପାଇଲି । ସେଇଠି ପ୍ରଥମେ ମଧୁବାବୁଙ୍କୁ ଦେଖିଲି, ଦେଖିଲି ଗୋପବନ୍ଧୁଙ୍କୁ, ଦେଖିଲି ସତ୍ୟବାଦୀର ବରେଣ୍ୟ ଶିକ୍ଷକ ବୃନ୍ଦଙ୍କୁ । ପଣ୍ଡିତ ନୀଳକଣ୍ଠ, ଗୋଦାବରୀଶ ଓ କୃପାସିନ୍ଧୁଙ୍କୁ । ୧୧।୧୨ ବର୍ଷର ବାଳକର ଅନ୍ତରତମ ଗହନ ତଳେ ହୁଏତ ସ୍ୱପ୍ନ ଗଜୁରି ଉଠିଥିବ । ଏମାନଙ୍କ ପରି ଜଣେ ହେବାକୁ । × × × ଜାତୀୟ ଜୀବନର ପୁଣ୍ୟ ସ୍ରୋତରେ ପୂର୍ଣ୍ଣ ଅବଗାହନର ଆଶା" (୪)

ମାନସିଂହଙ୍କ ଜାତୀୟ ଚେତନାର ତିନୋଟି ପ୍ରବନ୍ଧ ମୁଖ୍ୟ—ଉତ୍କଳୀୟ ଜାତୀୟତା, ମହାଭାରତୀୟ ଜାତୀୟତା ଓ ବିଶ୍ୱମାନବିକ ଚେତନା । ଏଥିମଧ୍ୟରୁ ତାଙ୍କ ହୃଦୟରେ ଉତ୍କଳୀୟ ଜାତୀୟ ଚେତନା ଅତ୍ୟନ୍ତ ତୀବ୍ର ।

---

**୪—ଶିକ୍ଷାବିତ୍ତର ଗାଥା-ଡ଼ଃ ମାୟାଧର ମାନସିଂହ ପୃ- ୧୭-୧୮**

ମାନସିଂହ ଉତ୍କଳୀୟ ଜାତୀୟ ଚେତନାର ପ୍ରେରଣା ଉତ୍କଳ ସମ୍ମିଳନୀ, ସତ୍ୟବାଦୀ ଗୋଷ୍ଠୀ ଓ କବିବର ରାଧାନାଥ, ଫକୀର ମୋହନ, ମଧୁସୂଦନଙ୍କଠାରୁ ପାଇଥିବେ । ସ୍ୱାଧୀନତା ସଂଗ୍ରାମ, ବିଭିନ୍ନ ସ୍ଥାନ ଭ୍ରମଣ ଓ ଅଧ୍ୟୟନରୁ ସେ ମହାଭାରତୀୟ ଜାତୀୟ ଚେତନାର ପ୍ରେରଣା ଲାଭ କରିଥିବେ । ବୌଦ୍ଧଧର୍ମ, ମହାନ୍ ଗ୍ରନ୍ଥ ଅଧ୍ୟୟନ, ଭାରତୀୟ ସଂସ୍କୃତିର ଅଧ୍ୟୟନ ତଥା ସ୍ୱମାନବିକ ପ୍ରେରଣାରୁ ମାନସିଂହ ମହାମାନବୀୟ ଜାତୀୟ ଚେତନାମୂଳକ ସାହିତ୍ୟ ରଚନାରେ ବ୍ରତୀ ହୋଇଥିଲେ ।

ବାସ୍ତବଚେତା, ସତ୍ୟନିଷ୍ଠ, ସାହିତ୍ୟିକ ମାନସିଂହ ଓଡ଼ିଶାର ରାଜନୀତିକ ସ୍ୱାଧୀନତା ସହିତ ଓଡ଼ିଆ ପ୍ରାଣର ସ୍ୱାଧୀନତା, ଆମ ସଂସ୍କୃତିର ସ୍ୱାଧୀନତା, ଆମ କଳାର ସ୍ୱାଧୀନତା ତଥା ଆମ ପରମ୍ପରାର ସ୍ୱାଧୀନତା ପାଇଁ ସ୍ୱର ଉତ୍ତୋଳନ କରିଥିଲେ । ତାଙ୍କ ଜାତୀୟବାଦୀ ସାହିତ୍ୟରେ ଆମେ ସ୍ୱାଧୀନତା ପାଇଁ ଗୋପବନ୍ଧୁଙ୍କ ଲୋତକ ବର୍ଷଣ, ବାଞ୍ଛାନିଧିଙ୍କ କବିତାର ଅଗ୍ନି ବର୍ଷଣ, ଗୋଦାବରୀଶଙ୍କ ରକ୍ତିତା ଆହ୍ୱାନ ବା ଲକ୍ଷ୍ମୀକାନ୍ତଙ୍କର ତୂର୍ଯ୍ୟନାଦ ଶୁଣିବାକୁ ନପାଇ, ପାଉ ଓଡ଼ିଆମାନଙ୍କ ଉପରେ ରୋଷ, ଗାଳିବର୍ଷଣ । ସେ ଗାଳି ପ୍ରତିହିଂସାର ନୁହେଁ, ଅସୂୟାର ନୁହେଁ, ସେ ଗାଳି ଅନ୍ତରଙ୍ଗ ବନ୍ଧୁର ଡାକରା, ଆତ୍ମୀୟର ଡାକରା ।

ମାନସିଂହଙ୍କ ପରିଚୟ ପ୍ରଥମେ ସେ ଜଣେ ଓଡ଼ିଆ । ଓଡ଼ିଶାର ଅବନତି ଦେଖିଲେ ତାଙ୍କ ପ୍ରାଣ ବ୍ୟଥିତ ହେଉଥିଲା । ଓଡ଼ିଶାର ଅତୀତ ଇତିହାସ, ଚଳଚଳନ, ଧର୍ମଧାରା, କ୍ରିୟାକଳାପ, ଉଦାହରଣ ସବୁ ଉନ୍ନତ ଥିଲା; ମାତ୍ର ତାହା ଆଜି ନାହିଁ । ଆମେ ଅନ୍ୟର ପୋଷାକ ଖାଦ୍ୟ ଆଦିର ହୀନ ଦିଗକୁ ଅନୁକରଣ କରୁଛୁ । କିନ୍ତୁ ସେ ଜାତିର ମହାନ୍ ଗୁଣ, ଉନ୍ନତିର ବାଟ, ମହତ ଆଦର୍ଶକୁ ଅନୁକରଣ କରିବାକୁ ଭୁଲିଯାଉଛୁ । ତେଣୁ ମାନସିଂହ ଜଣେ ସଫଳ ଚିକିତ୍ସକ ଭାବରେ ଜାତିର ଶରୀରକୁ ଆଘାତ ଦେଇ ସଫଳ ଅସ୍ତ୍ରୋପଚାର କରିବା ପାଇଁ ଚେଷ୍ଟା କରିଛନ୍ତି । ସେଥିପାଇଁ ସେ ବହୁ ସ୍ଥାନରେ ଅସନ୍ତୁଷ୍ଟ ହୋଇ ତାଙ୍କ ରଚନାକୁ ଶାଣିତ କରିଛନ୍ତି । ଶ୍ରୀ କେଶବ ମେହେର କବି ଗଙ୍ଗାଧରଙ୍କ ଉଦ୍ଦେଶ୍ୟରେ ଯେଉଁ ବାକ୍ୟ ବ୍ୟବହାର କରିଛନ୍ତି ତାହାକୁ ଆମେ ମାନସିଂହଙ୍କ ସ୍ଥଳରେ ମଧ୍ୟ

ଲଗାଇ ପାରିବା । "ସେ ଥିଲେ ସ୍ପଷ୍ଟବାଦୀ, ନିର୍ଭୀକପ୍ରାଣ ଓ ଜାତିର ଉପଚିକିତ୍ସ୍ । ତେଣୁ କାହାର ଦୋଷ ଦୁର୍ବଳତାକୁ ସେ ଘୋଡ଼ାଇ ଦେଇ ନାହାନ୍ତି । ଜାତିର ଦୁର୍ଗନ୍ଧ, ଦୂଷିତ, ଦୁଷ୍ପ୍ରବେଗ୍ୟ ବ୍ରଣ ଉପରେ ମୋଟା ମଇଳା କପଡ଼ାର ଲୁଗା ବାନ୍ଧି ତା ଉପରେ ମଲମ ପ୍ରଲେପ କରିନାହାନ୍ତି । ଏ ଜାତିର ଦୁର୍ବଳତାର ଠିକ୍ ସ୍ଥାନମାନଙ୍କୁ ଅଙ୍ଗୁଳି ନିର୍ଦ୍ଦେଶ କରି ବାକ୍ୟବାଣ ପ୍ରୟୋଗ କରିଛନ୍ତି । (*)

ମାନସିଂହଙ୍କୁ ଯଦି ଆମ୍ଭେ କେବଳ ଉତ୍କଳୀୟ ଜାତୀୟ ଚେତନାରେ ସୀମାବଦ୍ଧ କରିଦେଉ ତେବେ ଗୋଟିଏ ଅମ୍ଳାନ ବ୍ୟକ୍ତିତ୍ୱର ଅବମାନନା ହୋଇଯିବ । କାରଣ ଉତ୍କଳୀୟ ପ୍ରୀତି ଥିଲେ ମଧ୍ୟ ଏ ସଙ୍କୀର୍ଣ୍ଣ ପ୍ରାଦେଶିକ ଗଣ୍ଡି ମଧ୍ୟରେ ସେ ଆବଦ୍ଧ ନଥିଲେ । ତାଙ୍କ ସାହିତ୍ୟରେ ସେ ମହାଭାରତୀୟ ଚେତନା ତଥା ବିଶ୍ୱମାନବୀୟ ଜାତୀୟ ଚେତନାର ଆଲେଖ୍ୟ ରଖିଯାଇ-ଛନ୍ତି । କିନ୍ତୁ ମାନସିଂହଙ୍କ ଜାତୀୟ ଚେତନା ଓ ଅନ୍ୟ ଜାତୀୟବାଦୀମାନଙ୍କ ଭିତରେ ତେର୍ ତଫାତ୍ । ମୁଁ ଆଗରୁ କହି ରଖିଛି ସେ ମାନସିଂହ ଜାତିର ଶରୀରକୁ କେବଳ ଦେଖୁନଥିଲେ, ସେ ଜାତିର ପ୍ରାଣକୁ ଦେଖୁଥିଲେ ।

ମାନସିଂହ ପ୍ରତିଭା ବହୁମୁଖୀ । ସାହିତ୍ୟର ବିଭିନ୍ନ ବିଭାଗ ଉପରେ ସେ ଲେଖଣୀ ଚାଳନା କରିଯାଇଛନ୍ତି । କାବ୍ୟ, କବିତା, ନାଟକ-ନାଟିକା ଗୀତିକବିତା, ମହାକାବ୍ୟ, ପ୍ରବନ୍ଧ, ଭ୍ରମଣ କାହାଣୀ, ଉପନ୍ୟାସ, ସମାଲୋଚନା, ଇତିହାସ, ଗୀତାର ଭାଷ୍ୟ ଆଦି ପ୍ରଧାନ । ଓଡ଼ିଆ ସାହିତ୍ୟ ବ୍ୟତୀତ ଇଂରାଜୀରେ ମଧ୍ୟ ତାଙ୍କର ଉତ୍ତମ ଜ୍ଞାନ ଥିଲା । ତାଙ୍କର ଇଂରାଜୀ ରଚନା ହେଲା—(କ) Citizen Education (1942) (ଖ) History of Oriya Literature (1962) (ଗ) Dreams in Educations (1968) (ଘ) Kalidas & Shakespeare (1969) (ଙ) Ripples of Mohanadi (1971) (ଚ) The Saga of the Land of Jagannath (1971) (ଛ) Fakirmohan Senapati, Makers of Indian Literature (1976)। ଏହା ମଧ୍ୟରେ ଆମେ ଜାତୀୟବାଦୀ ମାନସିଂହଙ୍କର ସ୍ୱଦେଶପ୍ରୀତିର ସ୍ୱରୂପ ଦେଖିବାକୁ ପାଇବା ।

* —ମେଦ୍ଧେର ସାହିତ୍ୟ—ଶ୍ରୀ କେଶବ ମେହେର ପୃ-୧୮୦

**କବିତା ରେ ଉତ୍କଳୀୟ ଚେତନା**—ମା' ଓଡ଼ିଶା ଉତ୍କଳୀୟ ଜାତୀୟ ଚେତନାର ଏକ ମହାନ ଦୃଷ୍ଟାନ୍ତ । ଏହି କବିତାରେ କବି ମା' ଓଡ଼ିଶାର ବର୍ଣ୍ଣନା କରିବାକୁ ଯାଇ ତାହାର ଐତିହ୍ୟ ଦର୍ଶାଇଛନ୍ତି । ବୀରମାତା ଉତ୍କଳଜନନୀ କବି ଭୂମି ଶିଳ୍ପୀ-ଧାତ୍ରୀ । ତା'ର କୋଳରେ ପବିତ୍ର ସନ୍ତାନ ଜନ୍ମଲାଭ କରି ବିଶ୍ୱକର୍ଣ୍ଣରେ ତା'ର ମଧୁର ଗାଥା ଶୁଣାଇଲେ । ତା'ର ସନ୍ତାନଙ୍କର ଉଦାର ହୃଦୟ ପାଇଁ ବିଶ୍ୱ ସତୃଷ୍ଣ ନୟନରେ ଗୁହିଁ ରହିଥିଲା । ସାଗର ବକ୍ଷରେ ଉତ୍କଳୀୟ ସାଧବଙ୍କର ସହସ୍ର ବୋଇତ ଧାବମାନ ହେଲେ । ଅମୃତ ପ୍ରସବିନୀ ମା' ଉତ୍କଳ ଜନନୀ । ତା'ର ଅମୃତର ସନ୍ତାନ ଢାଲ ତରବାରୀ ଧରି ସ୍ୱାଧୀନତା ପାଇଁ ଭୀଷଣ ଚିତା ଜାଳିଲେ । ତା'ର ନୀଳାଚଳ ପୀଠ ବିଶ୍ୱରେ ଶ୍ରେଷ୍ଠ ସ୍ଥାନ ଅଧିକାର କଲା—

"ପ୍ରଜାଗଣେ ଦେବାକୁ ମା' ସ୍ୱରଗର ଅମୃତ ସନ୍ଦେଶ
ରାଜା ତୋର ଧରିଅଛି ଦରିଦ୍ରର ସନ୍ନ୍ୟାସୀର ବେଶ ।
ନୀଳାଚଳ ପୁଣ୍ୟ ତଳେ ମନୁ ତେଜି ଗର୍ବ ଅହଂକାର
ସହସ୍ର ଜୀବନ ସଙ୍ଗେ ମିଶାଇଛି ତା' ହୃଦ ଉଦାର ।
ଚଣ୍ଡାଳର ବେଢ଼େ ବିପ୍ରେ ମିଶାଇଛି ଭାବ ଗରୀୟାନ
ସମସ୍ତେ ସମାନ ।" (୬)

ଏହି ଉତ୍କଳମାତାର କୋଳରେ ବୈଷ୍ଣବ, ଶୈବ, ଶାକ୍ତ, ଗାଣପତ୍ୟ, ବୌଦ୍ଧ, ଜୈନ ସମସ୍ତଙ୍କର ଆଦର ଥିବାରୁ ବିଧାତା ସହିଲା କିପରି ? ତେଣୁ ବିଦେଶୀର ନିର୍ମମ ଶାସନରେ ଦାରିଦ୍ର୍ୟର କ୍ରୂର ନିପୀଡ଼ନରେ ତା'ର ସିଂହ ଶିଶୁ ଆଜି ଶୃଗାଳରେ ପରିଣତ । 'ବନ୍ଦେ ଉତ୍କଳ ଜନନୀ' କବିତାରେ ମଧ୍ୟ ତାହାର ଯଶୋଗାନ କରି ଉତ୍କଳର ଗୌରବ ବର୍ଣ୍ଣନା କରିଛନ୍ତି । "ଉଠିଷ୍ଠ ଉତ୍କଳ" ସୀମା ଆନ୍ଦୋଳନ ସମୟର ଲେଖା । ଯେଉଁ ଉତ୍କଳ ଦିନେ ପାଇକମାନଙ୍କର 'ଜୟ ଗଜପତି

---

୬ - ସେ ଦିନର କବିତା ଡଃ ମାନସିଂହ ମା' ଓଡ଼ିଶା ଗ୍ରନ୍ଥାବଳୀ ୧ମ ଖଣ୍ଡ ପୃ ୨୫

ଜୟ ଜଗନ୍ନାଥ' ସ୍ୱରରେ ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ବ୍ୟାପ୍ତ ଥିଲା, ସେ ଆଜି ଉତ୍କଳ, ଅନ୍ଧ୍ର, ବଙ୍ଗ ନାମରେ ଲାଞ୍ଛିତ ।

ଉତ୍ତରେ ଅଛି ଚତୁର ବଙ୍ଗ
ଦେଖି ତା ରହିଛି ଝାଳ ତେଲଙ୍ଗ
ମୃଧ୍ର ସମାନ ଖୁମ୍ପିବେ ଅଙ୍ଗ

× × ×

ନେବେ ଆନନ୍ଦେ ବାଣ୍ଟି ।

ତେଣୁ ସେ ଡାକଦେଲେ—

ଉଠରେ ସୁପ୍ତ ଜାତି
ନିଦ୍ରା ବଢେର ଦେଖି ତୋ ସନ୍ତ୍ରାଶୀ
ନେବେ ତୋ ଅଙ୍ଗ କାଟି (୭)

'ତୀର୍ଥ ଧୂଳି' କବିତାରେ ମାଳାଙ୍କ ପୀଠର ଜୟଗାନ କରି କହିଛନ୍ତି—'ଏ ଧୂଳି ପଡ଼ୁ ମୋ ମୁଣ୍ଡେ ଜନ୍ମ ଜନ୍ମାନ୍ତରେ' ରେ ସାଂସ୍କୃତିକ ଚେତନା ପରିଦୃଷ୍ଟ । 'କୋଣାର୍କ' କବିତା ସଂକଳନରେ କବିଙ୍କର ଜାତୀୟ ଚେତନା ଅତି ଉଗ୍ର । ବିଗତଯୌବନା 'କୋଣାର୍କ'ର ଅଂଗ ଚୁମ୍ବନ କରିବାକୁ ବର୍ତ୍ତ୍ତ ଏବେ ମଧ୍ୟ ଲାଳାୟିତ । ଦିନ ଥିଲା ଯେତେବେଳେ ବାରଶତ କାଳକା ଶିଳ୍ପୀଙ୍କ କଳ୍ପନାରେ କୋଣାର୍କ ଯୌବନର ମାଧୁରିମା ବହିଥାଇ ଦେଉଥିଲା । କୋଣାର୍କର ଅଂଗରୁ ରାଜାର ଯୁଦ୍ଧ ଅଭିଯାନ, ପାତ୍ର ମନ୍ତ୍ରୀର ମନ୍ତ୍ରଣାଦାନ, ପ୍ରେମିକ ପ୍ରେମିକାଙ୍କ ପ୍ରେମ, ବୀର ଯୁଦ୍ଧର କୌଶଳ, ଅବଧାନର ଶାସନ, କବି କବିତାର ସ୍ୱର ଶିଖିବାକୁ ପାଇଲା । କୋଣାର୍କ ଯୌବନ ସମୟରେ ବିଶ୍ୱନୟନର ଦୃଷ୍ଟିପଥାରୂଢ଼ ହୋଇଥିଲା । କିନ୍ତୁ ତାହାର ବିଲୟ ଘଟିଲା ।

---

୭—ମାଟିବାଣୀ—ଡଃ ମାନସିଂହ, ହିଡିଷ୍ଟ ଉତ୍କଳ—ଗ୍ରନ୍ଥାବଳୀ ୧ମ ଭାଗ ପୃ *୭୦ ।

ନୁଭି ହେଲ କାନ୍ତିକାଠ କାଳ
ସମେ ହେଲ ପ୍ରକୃତି କରାଳ
ଗଉରବ ଅସ୍ତ ଭୁଲାଇଦେଲ ନୂତନ ବିକ୍ରମ

× × ×

ବନ୍ଧୁ, ଦେଖେ ଆଜି ମାତ୍ର ସେ ଗୌରବର ଖଣ୍ଡିତ କଙ୍କାଳ
ଲାବଣ୍ୟର ନଷ୍ଟ ଅସ୍ଥିମାଳ ।" (୮)

କିନ୍ତୁ ସେହି ଜୀର୍ଣ୍ଣବେଶ ମଧ୍ୟ ଆଜି ବନ୍ଧୁଙ୍କୁ ସ୍ତମ୍ଭୀଭୂତ କରେ । 'ଶିଳ୍ପୀ କଳନା' କବିତାରେ ସେ ବାରଶତ ଶିଳ୍ପୀଙ୍କର ଜୟଗାନ କରିଛନ୍ତି । 'ମୁମୂର୍ଷୁ କୋଣାର୍କ' କବିତାରେ ଜାତୀୟତାବାଦୀ କବିଙ୍କର ପ୍ରାଣ କୋଣାର୍କର ଜୀର୍ଣ୍ଣାବସ୍ଥା ପାଇଁ କାନ୍ଦି ପକାଇଛି । ତାହାର ବିଲୟ ପାଇଁ ପଞ୍ଚମହାଭୂତଙ୍କୁ ଦାୟୀ କରିଛନ୍ତି ।

'ମାଟିବାଣୀ' କବିତା ସଂକଳନର 'ମହାନଦୀରେ ଜ୍ୟୋତ୍ସ୍ନା ବିହାର' କବିତାରେ କବି ଉତ୍କଳୀୟ ପ୍ରକୃତିର ବର୍ଣ୍ଣନା କରିଛନ୍ତି । ପ୍ରଥମାଂଶରେ ପ୍ରାକୃତିକ ଶୋଭା ବର୍ଣ୍ଣନା କରି ଦ୍ୱିତୀୟାଂଶରେ ଉତ୍କଳରେ ମନ୍ଦାକିନୀ ସମାନ ନଦୀ ଓ ଶିବ ସମ ଗିରି କାନନ ଆଦି ଶୋଭାର ଭଣ୍ଡାର ଥାଉଁଥାଉଁ ତାହାର ଦୁର୍ଦ୍ଦଶା ପାଇଁ କ୍ଷୋଭ ପ୍ରକାଶ କରିଛନ୍ତି । ଯାହା ସ୍ୱର୍ଗର ସୁଷମା, ଅନିନ୍ଦ୍ୟ ଶୋଭାର ଆଧାର, ସେ ପୁଣି ଅଭିଶପ୍ତା । ମହାନଦୀ ନୌବାଣିଜ୍ୟର ଆଧାର ଥିଲା, ଗଜପତିଙ୍କର ମହିମା ଗାନ କରୁଥିଲା । ସେ ଆଜି ନିଷ୍ଠୁର, ପରିହାସ କରି ବ୍ୟଥା ଦେଉଛି । ଯାହାର ଶିଳାରେ ରାଜବାଳାର ଲକ୍ଷାପଦ ରଞ୍ଜିତ ହୋଇଥିବ, ମାତା ବିଜୟୀ ପୁତ୍ରର ମଙ୍ଗଳ କାମନା କରିନେଇ ଯାଇଥିବ, ସିଂହଳର ମୁକ୍ତା ଆନୟନ କରି ଆଣିଥିବା ବୋଇତ ବୀର-ରମଣୀଙ୍କର ଚକ୍ଷୁ ଆନନ୍ଦାଶ୍ରୁରେ ସିକ୍ତ କରିଥିବ, ସେହି ନଦୀର ସୋପାନ ପ୍ରସ୍ତରରେ ମୁଣ୍ଡ ଲଗାଇ ଅପଦାର୍ଥ ପ୍ରାଣ କୃତକୃତ୍ୟ କରିବାକୁ କବି ପ୍ରୟାସ କରିଛନ୍ତି । ଆଜି ସେ ଗୌରବ ନ ଥିବାରୁ କବି ମର୍ମାହତ । କାଞ୍ଚୀ ଅଭି-

---

୮ — କୋଣାର୍କ ମାନସିଂହ ଗ୍ରନ୍ଥାବଳୀ ୧ମ ଭାଗ ପୃ- ୬୩୬

ଯାନର ଚିତ୍ରଦେଇ କବି ପୁରୁଷୋତ୍ତମ ଦେବଙ୍କର ଜୟଯାତ୍ରା ବିଷୟ ଚିନ୍ତା କରିଛନ୍ତି ।

'ବାରବାଟୀ' ଉତ୍କଳ ଇତିହାସର ଶିରରେ ରାଜଟୀକା ସଦୃଶ । ବୀର ରକ୍ତରେ ସିକ୍ତ ବାରବାଟୀର ପ୍ରସ୍ତର ଖଣ୍ଡ ଏବେମଧ୍ୟ ତାହାର ପୂର୍ବ ବୀରତ୍ୱର ମୂକସାକ୍ଷୀ । ବାରବାଟୀର ଅତୀତ ଗୌରବ ବର୍ଣ୍ଣନା କରିବାକୁ ଯାଇ ସାମ୍ୟବାଦ ଚିନ୍ତାରେ, ଉତ୍କଳର କୃଷକସେନା, ନାରୀ ସୈନିକ, ବିଜୟ ଉତ୍ସବ ବେଳେ ମନସ୍ୱିନୀ ନାରୀର ନୂପୁର ନିକ୍ୱଣ ଓ ହୁଳହୁଳି ସ୍ୱନକୁ ରୂପ ଦେଇଛନ୍ତି । ଉତ୍କଳ ରମଣୀଙ୍କର ଯୁଦ୍ଧ କୌଶଳ ବର୍ଣ୍ଣନା କରି ମହାନ୍ ଜାତୀୟ ଚେତନାର ପରିଚୟ ଦେଇଛନ୍ତି । କବିଙ୍କର କିଶୋର ବୟସର କବିତା 'ସାଧବ ପୁଅ', 'ସାଗର ତୀରେ', 'ଶୁକଦେଈ', କବିତାରେ ଉତ୍କଳୀୟ ଜାତୀୟ ଚେତନାର ସ୍ୱର ପ୍ରଥମନ୍ତ ହିଁ ଶୁଣାଇଯାଇଥିଲା । ତଅପୋଇ-ବିଳାପ ଓ ବୋଇତ ବନ୍ଦାଣ କବିତାରେ ମଧ୍ୟ ଉତ୍କଳର ସାଧବ, ବୋଇତ ଜଳଯାତ୍ରା ଆଦି ବର୍ଣ୍ଣିତ । ଏ କବିତାରେ ଉତ୍କଳୀୟ ବାଣିଜ୍ୟ ପ୍ରସଙ୍ଗରେ ବିଭିନ୍ନ ସ୍ଥାନମାନଙ୍କର ନାମଉଲ୍ଲେଖ ରହିଛି । ରଣପୁର, ବାଣପୁର, ଚେଳତୋଳା ଆଦି କବିଙ୍କର ଜନ୍ମସ୍ଥାନର ନିକଟବର୍ତ୍ତୀ । ସେଥିପାଇଁ ସେ ଆଞ୍ଚଳିକ ପ୍ରୀତିର ସ୍ୱରୂପ ବୋଇତ ବନ୍ଦାଣର ପ୍ରଥମା ଦ୍ୱିତୀୟା ଓ ତୃତୀୟା ମୁଖରେ ସ୍ଥାନର ମାହାତ୍ମ୍ୟ ବର୍ଣ୍ଣନା କରିଛନ୍ତି । 'ସୋହାଗ' କବିତାରେ ଉତ୍କଳୀୟ ଭାଷାପ୍ରୀତି ଫୁଟି ଉଠିଛି ।

'ଗୋପବନ୍ଧୁ' ଓ 'ଚନ୍ଦ୍ରଶେଖର' କବିତାରେ ଗୋପବନ୍ଧୁଙ୍କୁ ଦରିଦ୍ର ବନ୍ଧୁ ତଥା ଚନ୍ଦ୍ରଶେଖରଙ୍କୁ ଜ୍ଞାନଯୋଗୀ ତପସ୍ୱୀ ଭାବରେ ବର୍ଣ୍ଣନା କରିଛନ୍ତି । 'ଗୋପ-ତର୍ପଣ କବିତା'ରେ, ଶାନ୍ତ, ସତ୍ୟର ପୁରୋହିତ, ସନ୍ନ୍ୟାସୀ, ତୃପ୍ତି ନିଖିଳ ପତିତ ଜନର ବନ୍ଧୁ ଓଡ଼ିଆର ଅତି ଆପଣାର ଗୋପବନ୍ଧୁଙ୍କ ବିୟୋଗରେ ତାଙ୍କର ମହାନ୍ ଚିନ୍ତାର ଧାରାକୁ ବର୍ଣ୍ଣନା କରିଛନ୍ତି । ଓଡ଼ିଆ ମହାଜାତିର ମହାବୀର ଗୋପବନ୍ଧୁଙ୍କ ମହାପ୍ରୟାଣରେ କବିଙ୍କ ପ୍ରାଣ କିପରି ବିଳପି ଉଠିଥିଲା ତାହାର ନମୁନା—

ମହାବୀର ମହାପ୍ରୟାଣ ରଚିଲା ଆଜି
ତା' ମହାଜାତିର ଗର୍ବ ଗଲା ଯେ ଭାଜି ।

× × ×

ଘରେ ଘରେ ଉଠେ କ୍ରନ୍ଦନ ରୋଳ ଆଜ
ବିରାଟ ଓଡ଼ିଆ ଜାତି ମଥାମଣି ଲୁଟିଲେ ଖସିଲ ଆଜ (୯)

ନାଗରିକ, ରାଜା, ଧନିକ, ବଣିକ, ଋତ୍ୱିକ, କୃଷକ, ଷଣ୍ଢୀ, ସମସ୍ତେ ତାହାର ଶବ ସାଥିରେ ଚାଲିବା ପାଇଁ, ଜନପଦ ବାସୀ, ଖୋଳ କରତାଳ ଧରି କୁଳ-ବଧୂ ଗବାକ୍ଷ- ଚୂଡ଼ା ଧରି, ସନାତନୀ, ଖ୍ରୀଷ୍ଟାନ, ମୁସଲମାନ ଜାତିଧର୍ମ ଭୁଲି, ଜାତିର ରାଜାଙ୍କୁ ସମ୍ମାନିତ କରିବାପାଇଁ ଜାତୀୟଚେତା କବି ଆହ୍ୱାନ ଦେଇଛନ୍ତି । କୃଷକର ବନ୍ଧୁ ବ୍ରାହ୍ମଣର ମନ୍ଦିରର ସେହି ଦେବତା, ନିଖିଳ ଓଡ଼ିଆ ଜାତିର ସେନାପତି, ସେ ଚାଲିଗଲେ, ତେଣୁ ସମସ୍ତେ ବିଳାପ କରନ୍ତୁ । ଯେପରି ମରଣ ମଧ୍ୟ ଜାଣିପାରୁ ଯେ ଆମର କର୍ମବୀର କେତେ ଜନପ୍ରିୟ ଥିଲେ । କଥା କଥାକେ ଯାହାର ଚକ୍ଷୁରୁ ଓଡ଼ିଆ ଜାତିର ଅପମାନ ଶୁଣିଲେ ଲୋତକ ଝରିପଡ଼େ, ଯେ ବୁଭୁକ୍ଷୁ ଜନତା ପାଇଁ ଦେଶଦେଶ ବୁଲି ଅନ୍ନ ସଂଗ୍ରହ କରୁଥିଲେ, ଏ ଜାତିର ସେନାପତି ସେ ଚାଲିଗଲେ । କବିଙ୍କ ଭାଷାରେ ସେ ଦେବତାର ଦର୍ଶନ ପାଇଁ ଯାଇଛନ୍ତି । ତେଣୁ—

ଜଗନ୍ନାଥର ସିଂହଦୁଆରେ କିଏ ଅଛୁ ପ୍ରତିହାରୀ
ପଥ ଛାଡ଼ିଦିଅ ଯାଉଛି ଦେବତା ଶ୍ରେଷ୍ଠ ସେ ପୂଜାହାରୀ

× × ×

ପତିତପାବନ ଦର୍ଶନବେଳେ ନିଖିଳ ଓଡ଼ିଆ ଜାତି
ବାଇଶ ପାବଚ୍ଛେ ପାଇବ ପତିତ ବନ୍ଧୁ ଚରଣ ମାଟି (୧୦)

'ସେନ୍ଦ୍ରିନର କବିତା' ସଂକଳନରେ 'ମାଟିର ସନ୍ତତି' କବିତାରେ କବି ଓଡ଼ିଆ କୃଷକ ଜୀବନର ଦୁରବସ୍ଥା ସହିତ ମାଟି ମାଆର ରକ୍ଷଣାବେକ୍ଷଣ ପାଇଁ ଉଦ୍ଭୂତ ପ୍ରାଣର ବ୍ୟଥାକୁ ବର୍ଣ୍ଣନା କରିଛନ୍ତି । 'ତଳିଆ ଜୀବର ବିଳାପ' କବିତାଗୁଚ୍ଛରେ କବି ରିକ୍ସାବାଲା, ମଜଦୂର, କୃଷକ

୯ – ମାଟିବାଣୀ-ମାନସିଂହ ଗ୍ରନ୍ଥାବଳୀ ୧ମ ଭାଗ ଗୋପପ୍ରୟାଣ ପୃ ୩୨୯
୧୦—ତତ୍ରୈବ ପୃ-୩୪୩

ବଢ଼େଇ, କିରାଣୀ, କଳାସେବକ, ସ୍କୁଲ ମାଷ୍ଟର ଆଦିଙ୍କର କରୁଣ ଚିତ୍ର ଦେବା ସଙ୍ଗେ ସଙ୍ଗେ ସେମାନେ ସମାଜରେ କିପରି ଅବହେଳିତ ଅବସ୍ଥାରେ ଅଛନ୍ତି ତା'ର ଏକ ମର୍ମଭେଦୀ ଚିତ୍ର ଦେଇଛନ୍ତି । ଶେଷରେ 'କବି କହେ' କବିତାରେ ମାନସିଂହ ସେମାନଙ୍କୁ ଏକାଠି ହେବାର ଆହ୍ୱାନ ଦେଇଛନ୍ତି ଓ ଏକ ନୂତନ ସମାଜ ଗଠନର ପରିକଳ୍ପନା କରିଛନ୍ତି, ଯେଉଁଠାରେ "ସକଳେ ସହିଁ ସେବକ ଖାଲି, ହାକିମ ନାହିଁ ସକଳେ ଭାଇ" ।

## କବିତାରେ ମହାଭାରତୀୟ ଚେତନା

ଭାରତର ସ୍ୱାଧୀନତା ଆନ୍ଦୋଳନର ସ୍ୱର ମାନସିଂହଙ୍କ କବିତାରେ ପ୍ରତିଫଳିତ । କେତେକ ସ୍ଥଳରେ ଇତିହାସ ଧର୍ମଚିନ୍ତା ତଥା ମାନବପ୍ରୀତିର ଧାରା ପ୍ରବାହିତ । ଏହା କିନ୍ତୁ ଉତ୍କଳୀୟ ଚେତନା ପରି ବିଶେଷ ଉଗ୍ର ନୁହେଁ । ଖ୍ରୀ ୧୯୩୦-୩୧ ମସିହାରେ କବିଙ୍କ 'ଭାରତ ଗୀତି' ସେ ସମୟର ଲବଣ ଆନ୍ଦୋଳନକୁ ଲକ୍ଷ୍ୟ କରି ଲେଖା ଯାଇଥିଲା । ବିଶ୍ୱକବି ରବୀନ୍ଦ୍ରନାଥଙ୍କ ଜନଗଣ ମନର ପ୍ରଭାବ ପଡ଼ିଥିଲେ ମଧ୍ୟ ଏହା କବିଙ୍କର ଜାତୀୟ ଚେତନାର ପ୍ରତୀକ । ଜାତି, ଧର୍ମ ପ୍ରାଦେଶିକ ସଂକୀର୍ଣ୍ଣତା ଭେଦଭାବ ଭୁଲି ନର ନାରୀ ନିର୍ବିଶେଷରେ ମହାଭାରତୀୟ ଚେତନାରେ ଉଦ୍‌ବୁଦ୍ଧ ହୋଇ ପରାଧୀନ ଅନ୍ଧକାରକୁ ଦୂର କରିବାକୁ କବିଙ୍କର ଜାତି ପ୍ରତି ଆହ୍ୱାନ ଥିଲା ।

'ନବ ଅଭିଯାନ' କବିତା କବିଙ୍କର ପ୍ରାଥମିକ ସ୍ତରର ଲେଖା । କବି ଶିବଶଙ୍କର ଭଗବାନଙ୍କୁ ପ୍ରାର୍ଥନା କରିଛନ୍ତି ତ୍ରିଶୂଳ ପ୍ରହାର କରି ପରାଧୀନ ଭାରତର ଦୁଃଖ ଦୂର କରିବା ପାଇଁ । କବିଙ୍କ 'ଶୂଳରେ ଶୂଳ' କବିତାରେ ମଧ୍ୟ ମହାଭାରତୀୟ ଚେତନାର ଦୃଷ୍ଟାନ୍ତ ପାଇଥାଉଁ । ଯେପରି—

ସନ୍ତାନ ଆମେ ଏକା ମାଆର
ରଖିବା ମହତ ସଭିଏ ତା'ର । (୧୧)

୧୧—କାଶୀର କବିତା-ମାନସିଂହ ଗ୍ରନ୍ଥାବଳୀ-ଶୂଳରେ ଶୂଳ ପୃ ୭୬୮

'କୃଷକ' କବିତା ସଙ୍କଳନର, 'ଯିଏ କଲ ତୁମର ପ୍ରଶ୍ନର' 'ଅଗ୍ରଣୀ ଭାରତ' 'ଭବିଷ୍ୟତ ଭାରତ ବର୍ଷ' କବିତାରେ ସ୍ୱାଧୀନ ଭାରତର ମହିମା ଗାନ କରିବା ସଙ୍ଗେ ସଙ୍ଗେ ପ୍ରାଚୀନ ଭାରତର ଐତିହ୍ୟକୁ ଫେରାଇ ଆଣିବାର ସ୍ୱପ୍ନ ଦେଖିଛନ୍ତି । 'ରକ୍ତ ଭାରତୀୟ' 'ଗୃହ ସଂସ୍କାର' 'ମାତୃଦ୍ରୋହୀ' କବିତାରେ ମହାଭାରତୀୟ ଚେତନା ଦେଖାଯାଏ । ଦେଶ ମାଆର ଆହ୍ୱାନ ମଧ୍ୟ ଏହି ଶ୍ରେଣୀର ।

ପ୍ରାଚୀନ ଭାରତର ଗୌରବମୟ ଚିତ୍ରକଳାରେ ଶ୍ରେଷ୍ଠ ସ୍ଥାନ ଅଧିକାର କରିଥିବା ଅଜନ୍ତା ଓ ଏଲିଫେଣ୍ଟାର ଛବି କବିଙ୍କ ପ୍ରାଣରେ ଏକ ବିଶେଷ ରେଖାପାତ କରିଛି । ସିନ୍ଧୁ ଓ ବିନ୍ଧ୍ୟର କେତେକ କବିତା ବିଶେଷ କରି 'ଜାନୁୟାରୀ ଛବିଶ'ରେ ଦେଶାତ୍ମବୋଧର ଛାପ ସ୍ପଷ୍ଟ ।

ତାଙ୍କ କବିତାଗୁଛରେ 'ବାପୁ ତର୍ପଣ' କାବ୍ୟ ସଙ୍କଳନର ସ୍ଥାନ ସ୍ୱତନ୍ତ୍ର । ତନ୍ମଧ୍ୟରୁ ବାପୁଜୀ, ଗାନ୍ଧିଜୀ କବିତା ବିଶେଷ ଉଲ୍ଲେଖଯୋଗ୍ୟ । ମହାମାନବ ମହାତ୍ମା ଗାନ୍ଧୀଙ୍କ ଉଜ୍ଜ୍ୱଳ ଦିଗକୁ ଆଲୋକପାତ କରି ତାଙ୍କୁ ବୁଦ୍ଧ, ଖ୍ରୀଷ୍ଟ, କୃଷ୍ଣ ନିମାଇଁ ରସୁଲ ଆଦିଙ୍କ ସହିତ ତୁଳନା କରିବା ସଙ୍ଗେ ସଙ୍ଗେ ସେ ସମସ୍ତଙ୍କ ଠାରୁ ମହତ୍ତର ବୋଲି ଦର୍ଶାଇଛନ୍ତି । ପତିତ, ଦଳିତ ମାନଙ୍କର ତ୍ରାଣକର୍ତ୍ତା ଗାନ୍ଧୀଜୀ କବିଙ୍କ ଆଖିରେ ଅତ୍ୟନ୍ତ ମହାନ୍ । ପୃଥିବୀରେ ନୂତନ ଉପାୟରେ ନୂତନ ନୂତନ ଅସ୍ତ୍ରରେ ସଂଗ୍ରାମ କରିଥିବାରୁ ସେ ବାପୁଜୀଙ୍କ ଠାରେ ମହାମାନବତ୍ୱ ଅର୍ପଣ କରିଛନ୍ତି । 'ସଙ୍କଳ୍ପ', 'ତାହାର ସ୍ୱରରେ ଭାଇ', 'ଅଗଷ୍ଟ ପନ୍ଦର (୧୯୪୮)'; 'ଭାରତ ପୁତ୍ର' 'ଦିଅ ଗୁଡ଼ିଦିଅ ବାରେ' 'ଦୀପ ନିର୍ବାପିତ', ପ୍ରାଣର ବାପୁଜୀ', 'ନିର୍ମମ ଭଗବାନ 'ମହାଯାତ୍ରୀ' 'ନାପିତୁଣୀର ଗାନ୍ଧୀ ପୂଜା', ଆଦି କବିତାରେ ତାଙ୍କ ଜାତୀୟ ଭାବନା ସ୍ପଷ୍ଟ ପ୍ରତିଫଳିତ ।

**କାବ୍ୟରେ**--କବି ନିଜ ଦେଶର ଗୌରବମୟ ଇତିହାସ ଓ ପରମ୍ପରା ପ୍ରତି ଜୀବନର ପ୍ରଥମ ପର୍ଯ୍ୟାୟରୁ ଆକୃଷ୍ଟ । "ଡକ୍ଟର ମାନସିଂହଙ୍କ କାବ୍ୟ ପଢ଼ିବାବେଳେ ଏ ଦେଶର ମଧ୍ୟଯୁଗୀୟ ଇତିହାସର ଗୌରବମୟ

ଐତିହ୍ୟ ପୁନର୍ଜୀବିତ ହୋଇ ଉଠିଛି । ଏ ଦେଶର ସାଧବ ଝିଅର ଅଶ୍ରୁ, ବେଦନା, ଯାହାକି ଅକାଶ ବତାସରେ ଭାସି ଭାସି ଶୂନ୍ୟ ମନରେ ନିଜର ରୂପ ପ୍ରକାଶ ପାଇଁ ଶିଳ୍ପୀ ପ୍ରାଣରେ ଆସନ ଖୋଜି ବୁଲୁଥିଲା, ସେ ପ୍ରତି କବିପ୍ରାଣର ସହାନୁଭୂତି ପାଇ ମୂର୍ତ୍ତି ପରିଗ୍ରହ କରି ଆମ ସମ୍ମୁଖରେ ତା'ର ଅଶ୍ରୁ ଅର୍ଘ୍ୟ ଧରି ଛିଡ଼ା ହୋଇଛି ।" (୧୨) ମାନସିଂହଙ୍କ ଅଧିକାଂଶ କାବ୍ୟର ବାହ୍ୟରୂପ ପ୍ରେମପ୍ରଣୟ ମୂଳକ ହେଲେହେଁ ତାହାର ଅନ୍ତଃସ୍ୱର ଜାତୀୟପ୍ରୀତିମୂଳକ । ଓଡ଼ିଆ ପରିବାରରେ ସାଧବ ଘରର ବୋହୂ ଓ ଝିଅ ମାନଙ୍କୁ ନେଇ କରୁଣ ରସାଣିତ ଲୌକିକ କାହାଣୀମାନ ରହିଛି, ମାତ୍ର ଏହା କାବ୍ୟ ଗୌରବରେ ଅଧିକାରୀ ହେବାର ସୌଭାଗ୍ୟ ପାଇ ନଥିଲା । କବି ଉତ୍କଳର ନୌବାଣିଜ୍ୟର ଚିତ୍ର ଦେବାକୁ ଯାଇ 'ସାଧବ' ଝିଅ, କାବ୍ୟରେ ଲେଖିଛନ୍ତି—

> "ସାଧବ ଧୁଅ ମୁଁ ବୋଇତରେ ମୋ ଜୀବନ
> ସାଗର ଲହରୀ ଗଣି ଘରେ ଯଉବନ । (୧୩)

ଉପକୂଳ ଅଞ୍ଚଳର ବାଲୁକାକୀଙ୍କ ପୂଜାର ଚିତ୍ରାଧାର "ମାଟିର ଶିବ ଯେ ନିତି ନିତି ପୂଜେ ମନାସିଲ ଦେବାଦେବୀରେ ସ୍ପଷ୍ଟ (୧୪) ।" ଏହା ସଙ୍ଗେ ସଙ୍ଗେ ଅତ୍ୟାଗ୍ରହୀ ଖିଆଲି ରାଜାମାନଙ୍କର ଅତ୍ୟାଚାରର ଚିତ୍ର ଦେବାକୁ ଯାଇ ଲେଖିଛନ୍ତି—

> 'ଗର୍ଭିଣୀକୁ ଚିରି ଦେଖିଛି ଶିଶୁ ଖେଳେ କପରି
> ଅଞ୍ଜଳିକୁ ଫିଙ୍ଗି ମନିଷ ଦେଖେ ପତନ ଶିରୀ' । (୧୫)

କାବ୍ୟର ନାୟକକୁ କବି କଳିଙ୍ଗର ସାଧବ ପୁଅ ରୂପେ ଚିତ୍ରଣ କରିଛନ୍ତି । ତାହାର କଳା କୁନ୍ତଳତାକୁ ମଧ୍ୟ "କନ୍ଧିବୁ ମାଳୀ କଳିଙ୍ଗ'ର

---

୧୨ ମାନସିଂହଙ୍କ କାବ୍ୟ ପ୍ରତିଭା—ଅଧ୍ୟାପକ ଚନ୍ଦ୍ରମଣି ବେହେରା-ଡଗର ୧୯୫୭ ଅଗଷ୍ଟ ।

୧୩—ସାଧବ ଝିଅ - ମାନସିଂହ ଗ୍ରନ୍ଥାବଳୀ ୨ୟ ଭାଗ ପୃ- ୧୩୨

୧୪—ତତ୍ରୈବ ପୃ— ୩୨

୧୫—ସାଧବ ଝିଅ -ଗ୍ରନ୍ଥାବଳୀ ୨ୟ ଭାଗ ପୃ—୧୪୩

ପଦରେ ପରିସ୍ଫୁଟ କରିଛନ୍ତି । ପରେ ତାହାର ସାହସିକତାର ସ୍ୱର ଶୁଣାଇ କହିଛନ୍ତି, 'ତରୁଣ କହଇ ମୁଖ ଲେଉଟାଇ ଧାୟୁ ନାହିଁ' ।

'ଜେମା' କାବ୍ୟ ପ୍ରେମମୂଳକ ହେଲେହେଁ ତାହାର ପାଶ୍ଚାତ୍-ପଟରେ ଆମ୍ଭର ଜାତୀୟଜୀବନର ଅଧୋଗତିର ସ୍ୱର ଝଙ୍କୃତ ହୋଇଛି । ଓଡ଼ିଶାର ଜାତୀୟ ଚରିତ୍ରକୁ ପ୍ରକାଶ କରିବା ପାଇଁ କବି ସଚେତନ ।

'କମଳାୟନ' ମାନସିଂହଙ୍କର କାବ୍ୟକୃତି ମଧ୍ୟରେ ସର୍ବବୃହତ୍ କୃତି ହୋଇପାରେ । କବି ଆଧୁନିକ ଯୁଗର ବିଷୟବସ୍ତୁକୁ ନେଇ ଏକ ମହାକାବ୍ୟ ରଚନା ପାଇଁ ପ୍ରୟାସ କରିଛନ୍ତି । ସମସାମୟିକ ଜୀବନର ବୃହତ୍ତର ଚିତ୍ର ଆମେ 'କମଳାୟନ' କାବ୍ୟରେ ଦେଖିବାକୁ ପାଉଁ । କବି ଭାରତର ସ୍ୱାଧୀନତା ସଂଗ୍ରାମର ଅତୀତ ଓ ବର୍ତ୍ତମାନ ଏବଂ ବିପର୍ଯ୍ୟସ୍ତ ମାନବଜୀବନ ବର୍ତ୍ତମାନ ଓ ଭବିଷ୍ୟତ ଏହି କାବ୍ୟରେ ବର୍ଣ୍ଣନା କରିଛନ୍ତି । ମହାଭାରତୀୟ ଜାତୀୟଚେତନା ସହିତ 'ବସୁଧୈବ କୁଟୁମ୍ବ-କମ୍'ର ସ୍ୱପ୍ନ ଦେଖିଛନ୍ତି ।

ଦୁର୍ଭିକ୍ଷର ନିପୀଡ଼ନରେ 'ଓଡ଼ିଆ'ର ଜନଜୀବନ ବିପନ୍ନ । 'ଅନ୍ନଂ ଦେହି' ଚିତ୍କାର ଦେଖି ଗୋପବନ୍ଧୁଙ୍କର ପ୍ରାଣର ବେଦନାକୁ ପ୍ରକାଶ କରିଛନ୍ତି—

"କମଳ କରିଲ ଯା'କୁ ଭୂମି ତିରସ୍କାର
ଓଡ଼ିଆ ଜାତିର ତା'କୁ ପ୍ରତୀକ ବିଚାର ।" (୧୭)

ଯେଉଁମାନେ ଦେହର ଲହୁ ଢାଳି ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ବିସ୍ତୃତ ଉତ୍କଳ ସାମ୍ରାଜ୍ୟ ଗଢ଼ିଥିଲେ, ପାହାଡ଼କୁ ଚୂନା କରି ଗଗନଭେଦୀ ମନ୍ଦିର ଗଢ଼ିଥିଲେ, ସାଗରକୁ ଚିରି ସାମ୍ରାଜ୍ୟ ସ୍ଥାପନ କରି-ଥିଲେ, ସେ ଓଡ଼ିଆର ରାଜ୍ୟ ଆଜି ଛିନ୍ନଭିନ୍ନ । ସେ ଓଡ଼ିଆ ଆଜି ଅନ୍ୟ ନିକଟରେ ଘୃଣିତ ତିରସ୍କୃତ । ବିଦେଶୀ ଶାସନରେ ଦାରିଦ୍ର୍ୟ, ଅଜ୍ଞତା ଯୋଗୁ ସେ ଆଜି ଜୀବନମରଣ ଅବସ୍ଥାରେ ରହିଛି ।

---

୧୭—କମଳାୟନ-ମାନସିଂହ ଗ୍ରନ୍ଥାବଳୀ ୨ୟ ଖଣ୍ଡ ପୃ —୧୭୫

ସବେଁ ମତ୍ତ କ୍ଷଣିକର ଆଶୁ ସୁଖସ୍ୱାଦେ
ଜାତିର ମରମ ବ୍ୟଥା କା'ରେ ନାହିଁ ବାଧେ । (୧୭)

ତେଣୁ କବି ଆଶା ପ୍ରକାଶ କରିଛନ୍ତି ଏହି ତରୁଣ ଗୋଷ୍ଠୀରୁ ଜାତିର ମହାନ୍ ବ୍ୟକ୍ତି ବାହାରି ଜାତି ଭାଗ୍ୟର ପରିବର୍ତ୍ତନ କରାଇ ପାରିବେ, ମାନବ ସେବାରେ ନିଜର ସର୍ବସ୍ୱ ଦେଇ ପାରିବେ । କାରଣ "ଇଚ୍ଛା ଥିଲେ ନରପୁଙ୍ଗବ ସବୁ କରିପାରେ" (୧୮) ଉଦ୍ଧୃତାଂଶରୁ ତାଙ୍କର ମହନୀୟ ଜାତୀୟ ଚେତନାର ସମ୍ୟକ ପରିଚୟ ମିଳେ ।

**ନାଟିକାରେ**—'ବୁଦ୍ଧଦୂତୀ' ନାଟିକାରେ କଳିଙ୍ଗର ରାଜବାଳା ହେମମାଳାର ସାହସିକତା ବର୍ଣ୍ଣନା କରାଯାଇଛି, ବୌଦ୍ଧ ଧର୍ମର ପ୍ରସାର ହିଗରେ କଳିଙ୍ଗହିଁ ମହାନ ଗୌରବର ଅଧିକାରୀ । 'ଦୁର୍ଭିକ୍ଷ' କାବ୍ୟ ନାଟିକାର ବ...ୟବସ୍ତୁ ନଅଙ୍କ ଦୁର୍ଭିକ୍ଷର ପୃଷ୍ଠଭୂମିରେ ରଚିତ ହୋଇଥିଲେ ମଧ୍ୟ ଏହାର ଚରିତ୍ରଗୁଡ଼ିକ କାଳ୍ପନିକ ବୋଲି ନାଟ୍ୟକାର ଦର୍ଶାଇଛନ୍ତି । କେବଳ ବିଷୟବସ୍ତୁ ଓ ସନାତନ ଚରିତ୍ରଟି ସତ୍ୟ । ଏହି ଦୁର୍ଭିକ୍ଷ ସମୟରେ 'ପତିତପାବନ' ଦେଶର ସନାତନ ମୁଖରେ ନାଟ୍ୟକାର ମାନବିକତାର ସ୍ୱର ତୋଳିଛନ୍ତି ।

**ନାଟକରେ**—'ବାରବାଟୀ' ନାଟକରେ ଉଗ୍ର ଜାତୀୟ ଚେତନା ଦେଖାଦେଇଛି । ନାଟକର ବିଭିନ୍ନ ଦୃଶ୍ୟରେ ଚରିତ୍ରମାଙ୍କ ମାଧ୍ୟମରେ ଉତ୍କଳର ଗୌରବାବହ ଅତୀତ ରୂପାୟନ କରାଯାଇଛି । ପ୍ରଥମ ଅଙ୍କ ତୃତୀୟ ଦୃଶ୍ୟରେ ଥିବା ଗୀତ 'ଜୟ ଉତ୍କଳ ପାଟରାଣୀ'ରେ ଉତ୍କଳର ଗୌରବ ଗାନ କରାଯାଇଛି । ପ୍ରଥମ ଅଙ୍କ ଚତୁର୍ଥ ଦୃଶ୍ୟରେ ବଙ୍ଗରାଜା ଲକ୍ଷ୍ମଣସେନଙ୍କୁ ଆଶ୍ରୟ ଦେଇ ଉଦାର ଉତ୍କଳୀୟ ଭାବଧାରା ସହିତ ଅଙ୍ଗନଭୀମ ଦେବଙ୍କ ସଂଳାପ ମାଧ୍ୟମରେ ଓଡ଼ିଆଙ୍କର ଓ ନୀଳାଚଳ ପୀଠର ମହନୀୟତା ବର୍ଣ୍ଣନା କରାଯାଇଛି ।

---

୧୭—ତତ୍ରୈବ ପୃ—୧୭୭
୧୮—ତତ୍ରୈବ ପୃ—୧୭୭

ଉତ୍କଳୀୟ ସମ୍ରାଟ ମନେକରେ 'ରାଜସିଂହାସନ ଏକ ଫୁଲଟାଳଟି ନୁହେଁ, ସେ ଏକ ପ୍ରକାର କୁଶଶଯ୍ୟା । ରାଜ୍ୟ ଶାସନ ଓ ରାଜ୍ୟ ପାଳନ ରାଜାର କଠୋର ତପୋସାଧନ ।' (୧୯) ସେଥିପାଇଁ ସେ ରାଜ୍ୟ ଶାସନ ସଙ୍ଗେ ସଙ୍ଗେ ଜନହିତକର କାର୍ଯ୍ୟ କରିଚାଲନ୍ତି । ଓଡ଼ିଆର ପାଇକ ସୈନିକ ମଧ୍ୟ କୃଷକ । ସେ ଆଗେ ବୁଝେ ଦେଶ, ତା'ପରେ ତା'ର ରାଜ୍ୟ ଓ ଜଗନ୍ନାଥ, ତା'ପରେ ନିଜକଥା । ସେ ଦୁର୍ଦ୍ଦମ ସେ ଦୁର୍ଦ୍ଧର୍ଷ' (୨୦) ବକ୍ତିଆର ଖିଲିଜ ଫଳାପରେ "କାଲୁ ଲକ୍ଷ୍ମଣ ସେନ ଯେଉଁ ଦେଶରେ ଆଶ୍ରୟ ନେବାକୁ ପଳାଇଲା ସେ ରାଜ୍ୟ ନୁହେଁ କ୍ଷୁଦ୍ର ଆକାରରେ, ନୁହେଁ ଦୁର୍ବଳ ଶକ୍ତିରେ । କ୍ଷୁଦ୍ର ବଡ଼ ପଥର ସବୁଯାକ ହୋଇ ଯେପରି ପ୍ରକାଣ୍ଡ ପାହାଡ଼ ଦୃଢ଼ତାର ସହିତ ଠିଆ ହୋଇଥାଏ, ପ୍ରକୃତିର ଶକ୍ତି ସମୂହକୁ ତାଚ୍ଛଲ୍ୟ କରେ, ବହୁ ସାମନ୍ତ ପରିବେଷ୍ଟିତ ଉତ୍କଳ ରାଜ୍ୟ ସେହିପରି ଦୁର୍ଜେୟ' (୨୧) ସିରାଜ ଖାଁ ଓ ସେନାପତିଙ୍କ ଫଳାପରେ 'କିଏ ଭାବିଥିଲା ଓଡ଼ିଆ ରାଜା ଏତେ ଟାଣୁଅ ବୋଲି, ଖଣ୍ଡାୟତମାନେ ଆମ୍ଭମାନଙ୍କର ଜାନ୍ ଛୁଟାଇ ଦେଲେ ।' (୨୨)

ସାମନ୍ତ ବିକ୍ରମ ଭଞ୍ଜ ଜଳେଶ୍ୱର ଦୁର୍ଗର ପାଇକମାନଙ୍କୁ ଉତ୍ସାହ-ବାଣୀ ଶୁଣାନ୍ତି "ଶେଷ ପାଇକ ବଞ୍ଚିଥିବା ଯାଏ ଦୁର୍ଗର ମାନ ରଖିବ" (୨୩) ପାଇକମାନେ ମଧ୍ୟ ଶପଥ ନିଅନ୍ତି "ପ୍ରତି ହାତ ଭୂମିପାଇଁ ଲଢ଼ିବୁ ଅରିରେ । ରାଜା ଓ ଧର୍ମଲାଗି ଦେବୁ ଏ ପରାଣ । ଜୟ ଜଗନ୍ନାଥଙ୍କ ଜୟ ।" (୨୪) ନାଟକର ପ୍ରଥମ ଅଙ୍କ ଚତୁର୍ଥ ଦୃଶ୍ୟରେ ଅନଙ୍ଗଭୀମ ଦେବଙ୍କ ମୁଖରେ କବିଙ୍କର ଉଗ୍ର ଜାତୀୟବାଦ ପ୍ରକାଶ ପାଇଛି । ନାଟକର

---

୧୯—ବାରବାଟୀ ୧ମ ଅଙ୍କ ୩ୟ ଦୃଶ୍ୟ
୨୦—ବାରବାଟୀ ୧ମ ଅଙ୍କ ୪ର୍ଥ ଦୃଶ୍ୟ
୨୧—ବାରବାଟୀ ୨ୟ ଅଙ୍କ ୪ର୍ଥ ଦୃଶ୍ୟ
୨୨—ବାରବାଟୀ ୩ୟ ଅଙ୍କ ୮ମ ଦୃଶ୍ୟ
୨୩—ବାରବାଟୀ ୩ୟ ଅଙ୍କ ୧ମ ଦୃଶ୍ୟ
୨୪—ତତ୍ରୈବ ।

ଶେଷ ଦୃଶ୍ୟରେ ଅନଙ୍ଗଭୀମ ଦେବଙ୍କ ମୁଖରେ ମଧ୍ୟ ଉତ୍କଳର ଗୌରବ ନେଇ ଓ ଉଦାହରଣ ନେଇ ଏକ ଦୀର୍ଘ ସଂଳାପ କହିଛନ୍ତି । ନାଟ୍ୟକାର କେବଳ ସଂକୀର୍ଣ୍ଣ ପ୍ରାଦେଶିକତାରେ ଅନ୍ଧ ନଥିଲେ । ଜାତୀୟ ସଂହତି ରକ୍ଷା ପାଇଁ ଅନଙ୍ଗଭୀମ ଦେବଙ୍କ ମୁହଁରେ କହିଛନ୍ତି "ଏକ ଦୁର୍ଦ୍ଧର୍ଷ, ଦୁର୍ଜେୟ ଶତ୍ରୁ ଆର୍ଯ୍ୟାବର୍ତ୍ତରେ ରାଜ୍ୟ ପରେ ରାଜ୍ୟ ନେଇ ଯାଉଥିଲା ବେଳେ ଆମେ ପରସ୍ପରକୁ ହାଣକାଟ କରିବା ବିଜ୍ଞତାର କାର୍ଯ୍ୟ ନୁହେଁ ।" (୨୫) କାଞ୍ଚନ ପ୍ରଭୁଙ୍କ ସଂଳାପ "ଏକ ବିଧର୍ମୀ ଶତ୍ରୁ ଯେତେବେଳେ ଦ୍ୱାରଦେଶରେ ଛିଡ଼ା ହେଲଣି ସେତେବେଳେ ନିଜ ଲୋକଙ୍କ ସଙ୍ଗେ କଳହହିଁ ସୁନ୍ଦର ଦିଶୁ-ନାହିଁ । କାକତିୟମାନଙ୍କୁ ଦମନ କରି କି ଯଶ ପାଇବା, ଯଦି ଦିନେ ଯବନର ଦାସ ହେବା ।" (୨୬)

ଅସ୍ପୃଶ୍ୟତା ଆମ ସମାଜର କଳଙ୍କ, ତେଣୁ ଐତିହାସିକ ନାଟକରେ ମଧ୍ୟ ନାଟ୍ୟକାର ଅସ୍ପୃଶ୍ୟତା ଦୂରୀକରଣ ପାଇଁ ଉଲ୍ଲେଖ କରିଛନ୍ତି 'ଶ୍ରୀକ୍ଷେତ୍ର ସର୍ବଧର୍ମ ସମନ୍ୱୟ ପୀଠ/ମହାପୁଣ୍ୟ ଭେଦାଭେଦ ଭୁଲି ଏଠି/ସୌର ଗାଣପତ୍ୟ, ଶାକ୍ତ, ଶୈବ, ବୈଷ୍ଣବ, ବେଦାନ୍ତ/ଚାର୍ବାକ ସକଳେ ପୂଜିବେ ଇଷ୍ଟ ଆପଣା ବିଶ୍ୱାସେ । ଆଉ ମଧ୍ୟ ଏହି ସିଂହଦ୍ୱାରରେ, ପ୍ରଭୁଙ୍କର ମୂର୍ତ୍ତିସମ ଆଉ ଏକ ମୂର୍ତ୍ତି ହୋଇବ ସ୍ଥାପିତ । /ଯା'କୁ କରି ଦରଶନ/ଅସ୍ପୃଶ୍ୟ ପତିତ ସବୁ ପ୍ରଭୁ ଦରଶନ ଫଳ ପାଇ ହେବେ ଧନ୍ୟ" (୨୭) ଜାତୀୟଚେତା ନାଟ୍ୟକାର ଲୋକସଂସ୍କୃତି ଓ ଲୋକଗୀତକୁ ମଧ୍ୟ ଏହି ଐତିହାସିକ ନାଟକରେ ସ୍ଥାନ ଦେଇଛନ୍ତି । (୨୮)

ବୁଦ୍ଧ—ଧର୍ମର ଘୋଡ଼ଣୀ ମଧ୍ୟରେ ମଣିଷ ନାନା କୁକର୍ମ କରି-ଯାଏ । ପ୍ରଥମେ ମାନବ, ତା'ପରେ ତା'ର ଧର୍ମ । ମାତ୍ର ଅନ୍ଧ ଧର୍ମଭୀରୁମାନେ ଦେଖନ୍ତି ପ୍ରଥମେ ଧର୍ମ ତା'ପରେ ମାନବ । ତେଣୁ ବିଶ୍ୱର ବିଭିନ୍ନ ଧର୍ମ

---

୨୫—ବାରବାଟୀ ୨ୟ ଅଙ୍କ ୫ମ ଦୃଶ୍ୟ
୨୬—ବାରବାଟୀ ୩ୟ ଅଙ୍କ ୫ମ ଦୃଶ୍ୟ
୨୭—ବାରବାଟୀ ୨ୟ ଅଙ୍କ ୧ମ ଦୃଶ୍ୟ
୨୮—ବାରବାଟୀ ୨ୟ ଅଙ୍କ ୨ୟ ଦୃଶ୍ୟ

ପରସ୍ପରକୁ ହୀନଦୃଷ୍ଟିରେ ଦେଖେ । ଅନ୍ୟର ବିନାଶ ପାଇଁ ଚେଷ୍ଟା କରେ । ଫଳରେ ଧର୍ମ ଆଚରଣ ପରିବର୍ତ୍ତେ ଆମ ଭିତରେ ପାଶବିକ ଚିନ୍ତା ଜାଗରିତ ହୋଇଉଠେ । ଧର୍ମର ଘଟାଟୋପ ମଧ୍ୟରେ ମାନବ ମାନବିତାକୁ ଭୁଲିଯାଇ କୁସଂସ୍କାରରେ ଜଡ଼ୀଭୂତ ହୋଇ ଧର୍ମର ମୌଳିକ ଚିନ୍ତାକୁ ଭୁଲିଯାଏ । ମାନସିଂହଙ୍କ ପ୍ରାଣ ଏଥିରେ ବ୍ୟଥିତ ହୋଇଛି । ସେ ଆଞ୍ଚଳିକତା, ପ୍ରାଦେଶିକତା, ରାଷ୍ଟ୍ରୀୟତା ତଥା ହିନ୍ଦୁ ଧର୍ମର ସଂକୀର୍ଣ୍ଣତାରେ ବନ୍ଦୀ ନହୋଇ ମହାମାନବୀୟ ଚେତନା ପଥରେ ଅଗ୍ରସର ହୋଇଛନ୍ତି । ଏ ମାନବ ଜାତିର ଉଦ୍ଧାର ପାଇଁ ଆମକୁ ହିନ୍ଦୁ, ଖ୍ରୀଷ୍ଟିୟାନ, ଇସଲାମ୍ ଆଦି ଧର୍ମକୁ ଛାଡ଼ି ଏକ ମହତ୍ତର ବୌଦ୍ଧ ଧର୍ମର ଆଶ୍ରୟ ନେବାକୁ ପଡ଼ିବ । ଯେଉଁ ଧର୍ମ ଉଦାର, ଯାହାର ପ୍ରତିଷ୍ଠା ଇଟ୍ୟାକ୍ତ ବନ୍ଧନରେ ନୁହେଁ କିମ୍ବା ଯାହା କେତେକ ଲୋକଙ୍କର ଲୁହାଲହୁରେ ନୁହେଁ । ଏହିପରି ଭାବରେ ମାନସିଂହଙ୍କର ଜାତୀୟ ଚେତନା ମହାଜାତୀୟ ଭାବରେ ପରିଣତ ହୋଇଛି ।

**ଭ୍ରମଣ କାହାଣୀରେ**—ମାନସିଂହଙ୍କ ଭ୍ରମଣ କାହାଣୀ ପଶ୍ଚିମ ପଥିକ କେବଳ ଭ୍ରମଣ କାହାଣୀ କହିଲେ ହୁଏତ ଭୁଲ୍ ହେବ । ଏ ବହିର ଛତ୍ରେଛତ୍ରେ, ବିଭିନ୍ନ ପରିବେଶ, ଜାତି ତଥା ବିଭିନ୍ନ ଦେଶ ସହିତ ସେ ଭାରତୀୟମାନଙ୍କର ତଥା ଓଡ଼ିଶାର ତୁଳନାତ୍ମକ ବିଶ୍ଳେଷଣ କରିଛନ୍ତି । ଯାତ୍ରା ସମୟରେ ପଥ ମଧ୍ୟରେ ନାନା ଅଭିଜ୍ଞତାରୁ ତାଙ୍କ ପ୍ରାଣ ଜାତି ଉଦ୍ଦେଶ୍ୟରେ ବିଳାପ କରିଉଠିଛି । ବିଭିନ୍ନ ପଂକ୍ତିରୁ ଆମେ ତାଙ୍କର ଜାତୀୟ ଚେତନାର ସ୍ୱର ଶୁଣିବାକୁ ପାଉଁ—"ଆମ ଦେଶରେ ଦି'ପଦ ଇଂରାଜୀ ଜାଣିଲେ ଲୋକଙ୍କ କମ ଅହଂକାର, ଏଇଟା ଯେ ଦାସତ୍ୱର ଚିହ୍ନ ଏକଥା ବୁଝିବାକୁ ଆମ ଦେଶର ଲୋକଙ୍କ କଳ୍ପନାର ଅଭାବ ।" (୨୯) ତାଙ୍କର ବିଦେଶଯାତ୍ରାର ସମୟ ଖ୍ରୀ ୧୯୩୭ ମସିହା ଅଗଷ୍ଟ ମାସ କୋଡ଼ିଏ ତାରିଖ । ସେତେବେଳେ ଭାରତ ପରାଧୀନ । ଭାରତର ସ୍ୱାଧୀନତା ପାଇଁ ତାଙ୍କ ଅନ୍ତରର ସ୍ୱର ଆମେ ନିମ୍ନୋକ୍ତ ପଂକ୍ତିରୁ ଶୁଣିବାକୁ ପାଉ—"ମୋ ଦେଶରେ ମାନବ ସଭ୍ୟତାର ପ୍ରଭାତ ହେଲାବେଳେ ହୁଏତ ସମସ୍ତ

୨୯—ପଶ୍ଚିମ ପଥିକ—ମାନସିଂହ ଗ୍ରନ୍ଥ ସଂସ୍କରଣ ପୃ ୮୯

ଜଗତ ନିଦ୍ରିତ ଥିଲା, କିନ୍ତୁ ଆଜି ? ଆଜି ଯେ ସମସ୍ତ ଜଗତ ଜାଗ୍ରତହୋଇ ଆମର ବହୁ ଆଗରେ, ଆମେ ପଛରେ ପଡ଼ିଛେ ।" (୩୦) ଜାହାଜରେ ଭାରତୀୟ କୁଲି ବିକାଳିଙ୍କ ପ୍ରତି ଦରଦ ଆଣି କହିଲେ—"ମୋ ଦେଶ ସ୍ୱାଧୀନ ହୋଇଥିଲେ ଏମାନେ କୁଲି ବିକା ନହୋଇ ଭଦ୍ର ବଣିକ ହୋଇ-ଥାଆନ୍ତେ ।" (୩୧) ସେଥିପାଇଁ ସେ ଦୁଃଖିତ ହେବା ସଙ୍ଗେ ସଙ୍ଗେ ଆଶା ପ୍ରକାଶ କରନ୍ତି—"ବିଭିନ୍ନ ଜାତିର ଭଲ ଜିନିଷ ଆମକୁ ଗ୍ରହଣ କରିବାକୁ ପଡ଼ିବ । ନହେଲେ ଆମେ ପ୍ରତିଯୋଗିତାରେ ପାରିହେଇ ଉଠିବା ବଡ଼ କଠିନ । କ୍ଷୁଦ୍ର ଜାପାନ ( ସେତେବେଳେ ) ସ୍ୱାଧୀନ, ମାତ୍ର ଆମର ବିରାଟ ଭାରତବର୍ଷ ପରାଧୀନ । (୩୨)

**ଗୀତା ମହାତ୍ମ୍ୟ ଓ ସାର୍ବଜନୀନ ଗୀତାରେ**—ଗୀତାମହାତ୍ମ୍ୟ ଓ ସାର୍ବଜନୀନ ଗୀତାର ମାନସିଂହ ଧୂପ, ମାଟିବାଣୀ, କମଳାୟନ, ବାରବାଟୀ ବା ଅନ୍ୱେଷଣର ମାନସିଂହଙ୍କଠାରୁ ସମ୍ପୂର୍ଣ୍ଣ ପୃଥକ । ଏଥିରେ କବି ଉତ୍କଳ ପ୍ରୀତି ଓ ମହାଭାରତୀୟ ଚେତନାର ଊର୍ଦ୍ଧ୍ୱରେ ରହିଛନ୍ତି । "ସତ୍ୟାନୁସନ୍ଧାନ ପାଇଁ ସ୍ୱଧର୍ମ, ପରଧର୍ମ ମଧ୍ୟରେ କୌଣସି ଭେଦପ୍ରଦ ବା ଅଲଂଘ୍ୟ ପାଚେରି ଦେଖିପାରି ନାହାନ୍ତି । ଫଳରେ ସେ ସକଳ ଧର୍ମର ମହତବାଣୀ ଓ ସକଳ ଧର୍ମର ପ୍ରଚାରକଙ୍କର ଆପେକ୍ଷିକ ମହିମା ସମ୍ମୁଖରେ ମୁଗ୍‌ଧ ଆନନ୍ଦରେ ନତମସ୍ତକ ହୋଇ ଦଣ୍ଡାୟମାନ ହୋଇପାରିଛି । (୩୩)

**ପ୍ରବନ୍ଧ ଓ ସମାଲୋଚନାରେ**—ମାନସିଂହଙ୍କ ପ୍ରବନ୍ଧଗୁଡ଼ିକ ମଧ୍ୟରୁ କବି ଓ କବିତା (୧୯୪୮), ଜୀବନପଥ (୧୯୪୯), ଓଡ଼ିଆ ସମାଜ ଓ ସାହିତ୍ୟ ( ୧୯୫୧ ) ସାହିତ୍ୟପ୍ରଭା, ଶିକ୍ଷା, ଶିକ୍ଷକ, ଶିକ୍ଷାୟତନ (୧୯୫୩), ମାଟିର ମହାକବି ସାରଳା ଦାସ, ଶିକ୍ଷାବିତ୍ତର ଗାଥା (୧୯୬୫), ଜୀବନୀ ଓ ପ୍ରବନ୍ଧ (୧୯୫୨), ଓଡ଼ିଆ ସାହିତ୍ୟର ଇତିହାସ (୧୯୬୭) ସରସ୍ୱତୀ ଫକୀର ମୋହନ (୧୯୭୨) ବିଭିନ୍ନ ସମୟରେ ରଚିତ ହୋଇଥିଲେ

୩୦—ତନ୍ନୈବ ପୃ-୨୨

୩୧—ତନ୍ନୈବ ପୃ-୪୦

୩୨ ତନ୍ନୈବ—ପୃ-୨୨

୩୩ ଗୀତାମାହାତ୍ମ୍ୟ ମୁଖବନ୍ଧ

ମଧ୍ଯ ପ୍ରବନ୍ଧ ଗୁଡ଼ିକରେ ଅଧିକାଂଶ ସ୍ଥଳରେ ଜାତୀୟତାର ସ୍ୱର ଶୁଣିବାକୁ ମିଳେ । ପ୍ରବନ୍ଧର କଳେବର ସୀମିତ ହୋଇଥିବାରୁ ସମ୍ୟକ ଆଲୋଚନା ସମ୍ଭବ ନୁହେଁ । ତଥାପି 'ଜୀବନପଥ' ପ୍ରବନ୍ଧ ପୁସ୍ତକର 'ସୁସ୍ଥ ଶରୀର' ଓ 'କୁଟୁମ୍ବ' ପ୍ରବନ୍ଧରେ ଓଡ଼ିଶାର ସାମାଜିକ ଜୀବନର ଅଧୋଗତି ପାଇଁ ପାଶ୍ଚାତ୍ୟ ଶିକ୍ଷା ଓ ଆଧୁନିକ ସଭ୍ୟତାକୁ ଦାୟୀ କରିଛନ୍ତି । ଓଡ଼ିଆର ଜାତୀୟ ଖାଦ୍ୟ, ପୋଷାକ, ଆଚାର ବ୍ୟବହାର ଖୁବ୍ ଉନ୍ନତ ଥିଲା, ମାତ୍ର ପଡ଼ୋଶୀ ବଙ୍ଗଳା ପ୍ରଭାବରେ ପଡ଼ି ତାର ଅବନତି ଘଟିଛି । 'କବି ଓ କବିତା'ର ବିଭିନ୍ନ ପ୍ରବନ୍ଧରେ ତାଙ୍କର ସ୍ୱଦେଶପ୍ରୀତି ପ୍ରକାଶ ପାଇଛି । ପ୍ରାୟ ୩୦ ପୃଷ୍ଠା ଧରି ଗୋପାଳକୃଷ୍ଣ ପଦ୍ୟାବଳୀର ସମାଲୋଚନାରେ ସମାଲୋଚକ ବୈଷ୍ଣବ ସାହିତ୍ୟ ଓଡ଼ିଆ କବି ଗୋପାଳକୃଷ୍ଣଙ୍କର ଉତ୍କର୍ଷ ଓ ଭାରତୀୟ ସାହିତ୍ୟରେ ସ୍ୱାତନ୍ତ୍ୟ ପ୍ରତିପାଦନ କରିଛନ୍ତି ।

'ଶିକ୍ଷାବିତ୍‌ର ଗାଥା' ମାନସିଂହଙ୍କର ଏକ ଅଭିନବ ସୃଷ୍ଟି । ଏହା ଏକାଧାରରେ ଜୀବନୀ ଓ ସମାଲୋଚନା । ଏଥିରେ ଜାତୀୟ ଜୀବନରେ ଶିକ୍ଷକର ଭୂମିକା ସହିତ ଆମ ଜାତିର ଶିକ୍ଷାକ୍ଷେତ୍ରରେ ବହୁ ଦୋଷ ଦୁର୍ବଳତାକୁ ଦେଖାଇ ତା'ର ସମାଧାନର ବାଟ ମଧ୍ଯ ଦେଖାଇଛନ୍ତି—"ଆମେ ଶିକ୍ଷକଙ୍କୁ ଯେ ପର୍ଯ୍ୟନ୍ତ ସମ୍ମାନ ଦେବାପାଇଁ ପ୍ରସ୍ତୁତ ନ ହୋଇଛୁ ସେ ପର୍ଯ୍ୟନ୍ତ ଆମ ଜାତୀୟ ଚରିତ୍ରର ମୂଳପତ୍ତନ ଦୁର୍ବଳ ରହିବହିଁ ରହିବ ।" (୩୪)

'ସରସ୍ୱତୀ ଫକୀର ମୋହନ' ତାଙ୍କର ଏକ ଉଚ୍ଚକୋଟୀର ଜୀବନୀ-ଗ୍ରନ୍ଥ ଓ ଆଲୋଚନା । ଏଥିରେ ସେ ଫକୀର ମୋହନଙ୍କ ସମୟରେ କତିପୟ ବଙ୍ଗାଳୀଙ୍କର ଭାଷାବିଲୋପୀ ଆନ୍ଦୋଳନର ବର୍ଣ୍ଣନା ଦେଇ କହିଛନ୍ତି—"ଆତତାୟୀମାନେ ହୁଏତ କେତୋଟି ଲୋକଙ୍କୁ ହତ୍ୟାକରନ୍ତି ମାତ୍ର ବଙ୍ଗାଳୀମାନେ ଯେ ଓଡ଼ିଆ ଭାଷାକୁ ଉଠାଇ ଦେବାକୁ ଚେଷ୍ଟା କରିଥିଲେ ଓ ମେଦିନୀପୁରରୁ ଓଡ଼ିଆ ଭାଷାକୁ ଉଠାଇ ନେଇ ଏକ ମହାଜାତିର ଆତ୍ମାକୁ ହତ୍ୟାକଲେ ।" ଏଥିରୁ ମାନସିଂହଙ୍କର ଜାତି ପ୍ରୀତିର ଦୃଷ୍ଟାନ୍ତ ଦେଖାଯାଏ ।

---

୩୪—ଶିକ୍ଷାବିତ୍‌ର ଗାଥା—ଡ଼ଃ ମାନସିଂହ ପୃ—୨

ମାନସିଂହ ଜୀବନର ଶେଷ ପର୍ଯ୍ୟାୟ ପର୍ଯ୍ୟନ୍ତ ଲେଖନୀ ଚାଳନା ଅବ୍ୟାହତ ରଖିଥିଲେ ଓ ତାହା ମଧ୍ୟ ସମସାମୟିକ ପତ୍ର ପତ୍ରିକାରେ ପ୍ରକାଶ ପାଉଥିଲା । ସେଗୁଡ଼ିକ ମଧ୍ୟରୁ ସାମାନ୍ୟ ମାତ୍ର କେତେକ ପ୍ରବନ୍ଧ ଦୃଷ୍ଟାନ୍ତ ସ୍ୱରୂପ ଆଲୋଚିତ ହେଉଛି । ନବରବି ୩ୟ ବର୍ଷ ପଞ୍ଚମ ସଂଖ୍ୟାରେ ପ୍ରକାଶିତ 'ଜୀବନର ଚରମ ପ୍ରଶଂସନୀୟତା କେଉଁଠି ?' ଶୀର୍ଷକ ପ୍ରବନ୍ଧରେ ଭାରତୀୟ ଜାତୀୟ ଜୀବନର ଅଧୋଗତି ବିଷୟ ବର୍ଣ୍ଣନା କରି ସେ ଆମର ଧର୍ମଚେତନା ହୀନ ଅବସ୍ଥା ପ୍ରଦର୍ଶନ କରିଛନ୍ତି । ବୁଦ୍ଧ, ଶଙ୍କର, ରାମକୃଷ୍ଣ, ବିବେକାନନ୍ଦ, ଗାନ୍ଧିଜୀଙ୍କ ଭାରତରେ ଆଜି ନୈତିକ ଅଧଃପତନ ଦେଖାଦେଇଛି । ତା'ର କାରଣ ଆମେ ଆମର ପରମ୍ପରା ଓ ଧର୍ମଧାରାକୁ ଭୁଲି ଯାଉଛୁଁ । ମାତ୍ର ବିଦେଶୀମାନେ ସେହି ଧର୍ମଧାରାକୁ ନେଇ ଉନ୍ନତିର ଚରମ ସୀମାରେ ପହଞ୍ଚିଛନ୍ତି । ( ୩୫ ) 'ଇଂଗ-ଭାରତୀୟ ସାହିତ୍ୟ' ପ୍ରବନ୍ଧର ପାଦଟୀକାରେ ସେ ଜାତୀୟ ସାହିତ୍ୟ ରଚନା କରିବାକୁ ହେଲେ ନିଜ ମାତୃଭାଷାରେ ହିଁ ଲେଖିବାକୁ ପଡ଼ିବ ବୋଲି ଦର୍ଶାଇଛନ୍ତି । ଇଂରାଜୀ ଭାଷାରେ ଭାବ ପ୍ରକାଶ-ପାଇଁ ଉପଯୁକ୍ତ କ୍ଷମତା ନଥାଇ ଲେଖିଲେ କେବଳ ଆମର ବନ୍ଧୁମାନେ ପ୍ରଶଂସା କରିବେ, ମାତ୍ର ସମାଲୋଚକମାନେ କରି ନ ପାରନ୍ତି । (୩୬)

ମାନସିଂହଙ୍କ ମତରେ ଜାତି ବଡ଼ ହୁଏ ତା'ର ଐତିହ୍ୟ ଓ କର୍ତ୍ତବ୍ୟବୋଧକୁ ନେଇ । ଯେଉଁମାନେ ବଡ଼ ହୋଇଛନ୍ତି ସେମାନଙ୍କ ମୂଳମନ୍ତ୍ର ସତ୍ୟର ଅନୁସନ୍ଧାନ, ସଂସ୍କୃତିସଚେତନା ଓ କର୍ତ୍ତବ୍ୟନିଷ୍ଠା । ଭାରତୀୟ ଜୀବନର ଅଧୋଗତିର କାରଣ ଆପଣା ସଂସ୍କୃତି ବିମୁଖତା ବୋଲି ସେ ମନେ କରନ୍ତି (୩୭)

ମୃତ୍ୟୁର ମାଇଲ ଖୁଣ୍ଟଠାରୁ ଅଳ୍ପ ଦୂରରେ ଥାଇ ସେ ଓଡ଼ିଆଙ୍କର ଭଲମନ୍ଦର ଠିକଣାଠି ଖବର ରଖୁଥିଲେ । ନବରବିରେ ପ୍ରକାଶିତ ତାଙ୍କର ପ୍ରବନ୍ଧ "ଓଡ଼ିଆମାନେ ପଛୁଆ ଓ ଦରିଦ୍ର କାହିଁକି ?"ରେ ସେ ତାଙ୍କ ପ୍ରାଣର

---

୩୫ — ଜୀବନରେ ଚରମ ପ୍ରଶଂସନୀୟତା କେଉଁଠି—ନବରବି ୩ୟ ବର୍ଷ ୫ମ ସଂଖ୍ୟା

୩୬—ଇଂଗ-ଭାରତୀୟ ସାହିତ୍ୟ—ନବରବି ପୂଜାସଂଖ୍ୟା ୧୯୭୨

୩୭— ଭାରତରେ କର୍ତ୍ତବ୍ୟବୋଧ—ନବରବି ୨ୟ ବର୍ଷ ୧୧ଶ ସଂଖ୍ୟା

ଏକ ଗଭୀର ଭାବାବେଗକୁ ଉପସ୍ଥାପନ କରିଛନ୍ତି । ସ୍ୱାଧୀନତା ଲାଭର ପଚାଶ ବର୍ଷ ମଧ୍ୟରେ ସେ ତାଙ୍କର ସ୍ୱପ୍ନର ଓଡ଼ିଶାକୁ ଦେଖିପାରି ନାହାନ୍ତି । ବଳକା ରାଜ୍ୟ ଓଡ଼ିଶାର ଲୋକେ ବର୍ଷେ ଫସଲ ନ ହେଲେ ଖାଇବାକୁ ପାଉ ନାହାନ୍ତି । ଓଡ଼ିଶା କେବଳ ସୁଜଳା ସୁଫଳା ଶସ୍ୟ ଶ୍ୟାମଳା ନୁହେଁ, ଖଣିଜ, ବନଜ, ଜଳଦ-ଏହି ତ୍ରିବିଧ ଜାତୀୟ ସମ୍ପଦରେ ମଧ୍ୟ ଓଡ଼ିଆ ଭାରତବର୍ଷର ଅନ୍ୟାନ୍ୟ ପ୍ରଦେଶବାସୀଙ୍କ ଠାରୁ ଏକ ଉଚ୍ଚ-କୋଟିର ମାଲିକ କିନ୍ତୁ ଏସବୁ ପ୍ରକାର ପ୍ରାକୃତିକ ଅନୁକୂଳତା ଥାଇ ମଧ୍ୟ ଓଡ଼ିଆ କେବଳ ଲୋକଚକ୍ଷୁ ଓ ଲୋକଚିନ୍ତାରେ ନୁହେଁ, ସରକାରୀ ଗଣନାରେ ମଧ୍ୟ ଭାରତବର୍ଷର ଦରିଦ୍ରତମ ଜାତି । (୩୮) ଏହିପରି ବିଭିନ୍ନ ସମସ୍ୟା ଉତ୍ଥାପନ କରି ତା'ର ପ୍ରତିକାର ସ୍ୱରୂପ ଆମକୁ ମନ୍ତ୍ରୀ କିମ୍ବା ନେତାଙ୍କ ଭାଷଣ ପରି କଥା ନ କହି ଅତି ଆପଣାର ପରି ବାସ୍ତବ-ବାଦୀ କଥା କହିଛନ୍ତି "ହେ ମୋର ଓଡ଼ିଆ ଭାଇ ଭଉଣୀମାନେ ତୁମେ-ମାନେ ଅନ୍ତତଃ ଏହି ପଞ୍ଜାବୀ ମାନଙ୍କୁ ଅନୁକରଣ କର । ନାରୀ ଓ ପୁରୁଷ ସେହି ମାନଙ୍କ ପରି କର୍ମଠ ହୁଅ, ବଳବାନ ହୁଅ ଓ ସେମାନଙ୍କ ପରି ଖାଅ ଓ ରହ । ଆଳସ୍ୟ ଓ ଅଜ୍ଞ ହୋଇ ରହିବା ଠାରୁ ଲଜ୍ଜାକର ଅପମାନ କିଛି ଥାଇ ନପାରେ ।" (୩୯)

**ଓଡ଼ିଆ ସାହିତ୍ୟର ଇତିହାସରେ**—The Saga of the land of Jagannath ପୁସ୍ତକରେ ତାଙ୍କର ସ୍ୱଦେଶପ୍ରୀତିର ସ୍ୱାକ୍ଷର ମିଳେ । ଏହା ପୂର୍ବରୁ ତାଙ୍କ ଲିଖିତ History of Oriya Literature କେନ୍ଦ୍ର ସାହିତ୍ୟ ଏକାଡ଼େମୀ ଦ୍ୱାରା ପ୍ରକାଶିତ ହୋଇଥିଲା । ତାହାର ମଧ୍ୟ ଏକ ଓଡ଼ିଆ ସଂସ୍କରଣ ଡ଼ଃ ମାନସିଂହ କରିଛନ୍ତି । ଜାତିର ଇତିହାସ ପ୍ରଣୟନ ସମ୍ବନ୍ଧରେ ମାନସିଂହ କହନ୍ତି । "ଓଡ଼ିଆ ସାହିତ୍ୟର ଇତିହାସକୁ ଓଡ଼ିଆ ଜାତିର ଆତ୍ମାର ଇତିହାସ କରି ଗଢ଼ିବାର ମୂଳରୁ ମନସ୍ଥ କରି

---

୩୮—ଓଡ଼ିଆମାନେ ପଛୁଆ ଓ ଦରିଦ୍ର କାହିଁକି ? ନବରବି ଡ଼ିସେମ୍ବର ୧୯୬୨
୩୯—ତତ୍ରୈବ

ରଖିବାର କେବଳ କାଳ ସଂପୃକ୍ତ ସାହାଯ୍ୟ ଛଡ଼ା ଅନ୍ୟ କେଉଁଥିରେ ଏହି ବରେଣ୍ୟ ପୂର୍ବସୂରୀମାନଙ୍କୁ ଅନୁସରଣ ନକରି, ମୁଁ ନିଜର ସାମାନ୍ୟ ଗ୍ରନ୍ଥଟିକୁ ସମ୍ପୂର୍ଣ୍ଣ ନିଜ ଭାବରେ ହିଁ ଲେଖି ଗଲିଲି ଏବଂ ଗ୍ରନ୍ଥଟି ଓଡ଼ିଶା ବାହାରେ ସମାଦୃତ ହେବାର ବିଶେଷ କାରଣ ବୋଧହୁଏ ଏହି ଯେ ଏହା ଏହିପରି ଭାବରେ ଏକ ଐତିହାସିକ ଜାତିର ଆତ୍ମାର ଇତିହାସ ରୂପେହିଁ ଲିଖିତ । (୪୦) ନାମଧାମ ତାଲିକାରୁ ଏହି ଇତିହାସ ସ୍ୱତନ୍ତ୍ର । ତାଙ୍କ ଭାଷାରେ ସାହିତ୍ୟ ବା ଜାତିର ଇତିହାସ ଯଦି ନାମଧାମ ତାଲିକାର ଘଟଣା ମାତ୍ର ବୋଲି ଧରାଯାଏ, ତେବେ ତାହା ଯେକୌଣସି ଲୋକ ଲେଖି ପାରନ୍ତେ । ସେଥିପାଇଁ ଲେଖକ ବାଛିବା ଦରକାର ପଡ଼ନ୍ତା କାହିଁକି ? କିନ୍ତୁ ଏକ ସାହିତ୍ୟର ବା ଏକ ଜାତିର ଇତିହାସ ସଂପୃକ୍ତ ଜାତିର ଆତ୍ମାର ଇତିହାସ । ସେଠି ଲେଖକ ପାଞ୍ଜିକାର ମାତ୍ର ନୁହନ୍ତି, ଏ କ୍ଷେତ୍ରରେ ନିଜ ଜାତି ବା ସାହିତ୍ୟର ଗୁଣାଗୁଣର ପରୀକ୍ଷକ, ଗ୍ରାହକ, ପ୍ରଚାରକ ଏବଂ ଦରକାର ପଡ଼ିଲେ ନିନ୍ଦୁକ ମଧ୍ୟ । ଯେ କୌଣସି ଇତିହାସ କେବଳ ଏହି ଦୃଷ୍ଟିରୁହିଁ ମୂଲ୍ୟବାନ । (୪୧) ଇତିହାସର ବିଭିନ୍ନ ପୃଷ୍ଠାରେ ମାନସିଂହ ନିଜ ଜାତିର ଲେଖକ କବିମାନଙ୍କର ସ୍ୱାତନ୍ତ୍ର୍ୟ ଓ ବିଶେଷତ୍ୱ ଦେଖାଇ ଜାତୀୟ ଦରବାରରେ ଗୌରବାନ୍ୱିତ କରିବାକୁ ଚେଷ୍ଟା କରିଛନ୍ତି । ସେଥିପାଇଁ ବାଧ୍ୟହୋଇ ସେ କେତେକ ଅନାମଧେୟ ସାହିତ୍ୟିକଙ୍କୁ ବାଦ ଦେଇଛନ୍ତି ଓ କେତେକ ସ୍ଥାନରେ ଗତାନୁଗତିକତାରୁ ମୁକ୍ତ ହୋଇ ସ୍ୱମତ ପ୍ରଦାନ କରିଛନ୍ତି । ସେଥିପାଇଁ ଏ ରାଜ୍ୟର ବହୁଲୋକ ତାଙ୍କ ବିରୋଧରେ କୁତ୍ସାରଟନା କରିଥିଲେ । ତାଙ୍କପାଇଁ ମାନସିଂହଙ୍କର ଉତ୍ତର ଥିଲା, "ଏହା ଚିତ୍ରଗୁପ୍ତର ପାଞ୍ଜି ନୁହେଁ ଯେ ଅଗା, ବଗା, ଖଗାଙ୍କ ନାଆଁ ଏଥିରେ ରହିବ । ଏହା ଓଡ଼ିଆ ଜାତିର ଚରିତ୍ର ଇତିହାସ । ସେଥିକି ଯଦି କିଛି ମୌଳିକ ଦାନ କେହି ଦେଇଥିବେ ତେବେ ତାଙ୍କ କଥା ସେଥିରେ ବଳେ ଆସିବ ।" (୪୨)

୪୦—ଓଡ଼ିଆ ସାହିତ୍ୟର ଇତିହାସ ଡଃ ମାନସିଂହ ପୃ—୧୧
୪୧—ତତ୍ରୈବ ପୃ—୭
୪୨—ଓଡ଼ିଆ ସାହିତ୍ୟର ଇତିହାସ ପୃ—୧୧

ମାନସିଂହ ଜଣେ ନିଷ୍ଠାପର ସ୍ୱଦେଶପ୍ରେମୀ ଜାତୀୟବାଦୀ କବି । ପ୍ରାଚୀନ ଉତ୍କଳର ସଭ୍ୟତା ଓ ସଂସ୍କୃତିର ସୂକ୍ଷ୍ମାତିସୂକ୍ଷ୍ମ ବିଶ୍ଳେଷଣ କରି ଆମକୁ ଗୌରବ ମଣ୍ଡିତ ଅତୀତ ପ୍ରତି ସଚେତନ କରାଇ ଦିଅନ୍ତି । ଓଡ଼ିଆ ସାହିତ୍ୟରେ ଏହି ସ୍ୱଦେଶାନୁରାଗର ପ୍ରଥମ ବାଣୀ ଶୁଣାଇଥିଲେ ଯୁଗସ୍ରଷ୍ଟା ରାଧାନାଥ । ମାତ୍ର ଆମ ସମାଜର ଆଦର୍ଶ ଓ ନୈତିକତା ତାଙ୍କ ଲେଖାରେ ଅନ୍ତଃସାରଶୂନ୍ୟ ହୋଇଥିଲା । ସତ୍ୟବାଦୀ ଯୁଗର ଜାତୀୟ ପ୍ରେରଣା, ସେବା, ଆଦର୍ଶ, ଉପଦେଶାତ୍ମକ ଭାବଧାରାର କେନ୍ଦ୍ରବିନ୍ଦୁ ଉପରେ ଆଧାରିତ । କବି ମାନସିଂହ ଜଣେ କଳାର ପୂଜାରୀ । କଳାକୁ ଆଧାର କରି ତାଙ୍କ ଜାତୀୟ ଭାବ ବିକଶିତ । ସେ କଳାକୁ କଳା ଭାବରେ ଦେଖିଛନ୍ତି । ସୁନ୍ଦର ବସ୍ତୁର ଯଥାଯଥ ବିଶ୍ଳେଷ ଓ ବିନ୍ୟାସ ତାଙ୍କ ଲେଖାର ବୈଶିଷ୍ଟ୍ୟ । ମାନସିଂହ ଦେଶର ଦୁର୍ଗତିରେ ପ୍ରାଣରେ ବେଦନା ପାଇଥିଲେ ମଧ୍ୟ ଭବିଷ୍ୟତର ଉନ୍ନତି ପାଇଁ ଆଶାୟୀ ଥିଲେ । ତାଙ୍କ ଦେଶାତ୍ମବୋଧକ କବିତା ରାଜନୀତି ପ୍ରଭାବିତ ପ୍ରଚାରଧର୍ମୀ ନୁହେଁ ।

ମାନସିଂହଙ୍କ ଦେହାନ୍ତ ପରେ ତାଙ୍କର ପ୍ରକାଶିତ ପ୍ରବନ୍ଧ ମଲ୍ଲି ଯୋନେସ୍ ମଧୁସୂଦନରେ ସେ ମଧୁସୂଦନଙ୍କ ପ୍ରତି ଲେଖିଥିଲେ ।' 'ବସ୍ତୁତଃ, ମଧୁସୂଦନଙ୍କ କର୍ମ ଓ ବ୍ୟକ୍ତିତ୍ୱର ମୂଲ୍ୟ ଓଡ଼ିଆମାନେ ଏପର୍ଯ୍ୟନ୍ତ ଉତ୍ତମରୂପେ ହୃଦୟଙ୍ଗମ କରିଛନ୍ତି ବୋଲି କୁହାଯାଇ ପାରିବ ନାହିଁ । ମାନସିଂହଙ୍କ ନିଜ ଉକ୍ତିକୁ ଆମେ ମଧ୍ୟ ଏହି ଭାବରେ ଗ୍ରହଣ କରିପାରୁ ଯେ ମାନସିଂହଙ୍କ କର୍ମ, ବ୍ୟକ୍ତିତ୍ୱର ମୂଲ୍ୟ ଓଡ଼ିଆମାନେ ଏପର୍ଯ୍ୟନ୍ତ ହୃଦୟଙ୍ଗମ କରିପାରି ନାହାନ୍ତି । ବୋଧହୁଏ ଏହିପରି ଏକ ବିରାଟ ଅବଶୋଷ ନେଇ କବି ମାନସିଂହ ତାଙ୍କର ପ୍ରିୟମାଟିରୁ ବିଦାୟ ନେଇଛନ୍ତି ।

———

# ମାନସିଂହଙ୍କ ରସ ଚେତନା

ବିଂଶ ଶତାବ୍ଦୀର ଓଡ଼ିଆ ସାହିତ୍ୟରେ ସ୍ୱର୍ଗତ କବି ମାୟାଧର ମାନସିଂହ ଏକ ଅନନ୍ୟ ପ୍ରତିଭା । ସମଗ୍ର ଜୀବନ କାବ୍ୟ ସାଧନାରେ ତପସ୍ୟା ମଗ୍ନ ରହି ସେ ଓଡ଼ିଆ ସାହିତ୍ୟକୁ ଏକ ସଂଭ୍ରାନ୍ତ ସାହିତ୍ୟର ଗୌରବ ପ୍ରଦାନ କରିଛନ୍ତି । ତାଙ୍କର ଅବ୍ୟଭିଚାରୀ କାବ୍ୟପ୍ରତିଭା ତାଙ୍କ ସାହିତ୍ୟରେ ପରିସ୍ଫୁଟ । ଭାରତୀୟ କାବ୍ୟଧାରାରେ ଏକ ସ୍ୱତନ୍ତ୍ର ବ୍ୟକ୍ତିତ୍ୱର ସଙ୍କେତ ବହନ କରି ତାହା ଆମ ସମ୍ମୁଖରେ ପ୍ରତିଭାତ । ଏହି ସାହିତ୍ୟର ରସାନୁଶୀଳନ ବସ୍ତୁତଃ ଯେକୌଣସି ମୁଗ୍ଧ ପାଠକ ପକ୍ଷେ ଏକ ଗୌରବାବହ କାର୍ଯ୍ୟ ।

ଭାରତୀୟ କାବ୍ୟ ପରମ୍ପରାରେ ରସର ସ୍ଥାନ ଗୌଣ ନୁହେଁ । ସୁସମୃଦ୍ଧ ବୈଦିକ, ସଂସ୍କୃତ, ପ୍ରାକୃତଠାରୁ ଆରମ୍ଭ କରି ସାଂପ୍ରତିକ ଆଧୁନିକ ଭାରତୀୟ ସାହିତ୍ୟ ପର୍ଯ୍ୟନ୍ତ, ସବୁଠାରେ ପ୍ରତ୍ୟକ୍ଷ ବା ପରୋକ୍ଷରେ ରସକୁ ମୁଖ୍ୟସ୍ଥାନ ଦିଆଯାଇଛି । ନାଟ୍ୟଶାସ୍ତ୍ରର ପ୍ରଣେତା ଭରତ ମୁନିଙ୍କ ପୂର୍ବରୁ ରସର ସ୍ଥିତି ଥିଲେ ମଧ୍ୟ, ଭରତ ପ୍ରଥମେ ରସବାଦ ପ୍ରତିଷ୍ଠିତ କରିଗଲେ । ଭାରତୀୟ କାବ୍ୟତତ୍ତ୍ୱରେ କାବ୍ୟର ଆତ୍ମା ନେଇ ନାନା ବାଦବିବାଦ ଦେଖାଦେଇ ବିଭିନ୍ନ ତତ୍ତ୍ୱବାଦୀମାନେ ନିଜର ମତ ପ୍ରତିଷ୍ଠା କରିଯାଇଛନ୍ତି । ସେମାନେ ରସ, ଧ୍ୱନି, ରୀତି, ଗୁଣ, ବକ୍ରୋକ୍ତି, ଔଚିତ୍ୟ ଓ ଅଳଙ୍କାରକୁ କାବ୍ୟର ଆତ୍ମା ଭାବରେ ପ୍ରତିପାଦନ କରିବାକୁ ଚେଷ୍ଟା କରିଥିଲେ । ଏହି ବିଭିନ୍ନ ମତବାଦର ପ୍ରତିଷ୍ଠାତା, ପୃଷ୍ଠପୋଷକ ତଥା ସମର୍ଥକମାନଙ୍କ ମଧ୍ୟରୁ ଭରତ ମୁନି, ଭାମହ, ଦଣ୍ଡୀ, ବାମନ, ଆଚାର୍ଯ୍ୟ ଆନନ୍ଦ ବର୍ଦ୍ଧନ, ଅଭିନବ ଗୁପ୍ତ, କୁନ୍ତକ, କ୍ଷେମେନ୍ଦ୍ର ଓ ବିଶ୍ୱନାଥ କବିରାଜ ପ୍ରଧାନ । ବିଭିନ୍ନ ମତବାଦୀମାନେ ସ୍ୱୀୟ ମତକୁ

ପ୍ରତିଷ୍ଠିତ କରାଇବା ପାଇଁ ଚେଷ୍ଟା କରିଥିଲେ ମଧ୍ୟ ରସ ଯେ କାବ୍ୟର ସାରତତ୍ତ୍ୱ ଏହା ପ୍ରାୟ ସମସ୍ତ ସମାଲୋଚକଙ୍କ ଦ୍ୱାରା ପ୍ରତ୍ୟକ୍ଷ ବା ପରୋକ୍ଷ ଭାବରେ ସ୍ୱୀକୃତ ହୋଇଛି ।

କାଳିଦାସ, ଭବଭୂତି, ରସର ପ୍ରଭାବକୁ ସ୍ୱୀକାର କରି ସେମାନଙ୍କ ସୃଷ୍ଟିରେ ରସକୁ ଅଗ୍ରାଧିକାର ଦେଇଛନ୍ତି । ଧ୍ୱନିବାଦୀ ଆଚାର୍ଯ୍ୟ ଆନନ୍ଦ ବର୍ଦ୍ଧନ ଧ୍ୱନିକୁ ରସଧ୍ୱନି, ବସ୍ତୁଧ୍ୱନି, ଅଳଙ୍କାର ଧ୍ୱନି ଭେଦରେ ତିନି ଭାଗରେ ବିଭକ୍ତ କରିଛନ୍ତି । ଆଚାର୍ଯ୍ୟ ଅଭିନବଗୁପ୍ତ ରସର ଅଭିନବ ବ୍ୟାଖ୍ୟା ପ୍ରଦାନ କରି ରସଭାବ ଉପରେ ସ୍ପଷ୍ଟ ଧାରଣା ପ୍ରଦାନ କରିଛନ୍ତି । ରାଜାଭୋଜଙ୍କର 'ସରସ୍ୱତୀ କଣ୍ଠାଭରଣ' ଗ୍ରନ୍ଥ ସଂସ୍କୃତ ଅଳଙ୍କାର ଶାସ୍ତ୍ରରେ ଯେପରି ମୁଖ୍ୟସ୍ଥାନ ଅଧିକାର କରିଛି ସେପରି ରସ ଆଲୋଚନାରେ ମୁଖ୍ୟସ୍ଥାନ ଗ୍ରହଣ କରିଛି । ମମ୍ମଟ ରସସମ୍ବନ୍ଧୀୟ ସମସ୍ତ ମତବାଦର ବିଶ୍ଳେଷଣ କରି ଧ୍ୱନି ଓ ରସ ଉପରେ ଅନୁକୂଳ ମତ ପ୍ରଦାନ କରିଛନ୍ତି । କାବ୍ୟତତ୍ତ୍ୱର ଶ୍ରେଷ୍ଠ ଗ୍ରନ୍ଥମାନଙ୍କ ମଧ୍ୟରୁ ଅନ୍ୟତମ ସାହିତ୍ୟଦର୍ପଣ କାର ପଣ୍ଡିତ ବିଶ୍ୱନାଥ କବିରାଜ ହେଉଛନ୍ତି ରସବାଦର ସ୍ପଷ୍ଟ ଓ ଶ୍ରେଷ୍ଠ ପ୍ରବକ୍ତା । ତାଙ୍କ ମତରେ "ବାକ୍ୟଂ ରସାତ୍ମକଂ କାବ୍ୟମ୍" ।

ଯୁଗେ ଯୁଗେ କବିମାନେ କାବ୍ୟରେ ରସପ୍ରତି ଆଗ୍ରହ ଦେଖାଇ ଆସିଛନ୍ତି । ସଂସ୍କୃତ ସାହିତ୍ୟ ପରି ପ୍ରାଚୀନ ଯୁଗର କାବ୍ୟ ପରମ୍ପରାରେ ସମସ୍ତ ରସକୁ କାବ୍ୟ ମଧ୍ୟରେ ସ୍ଥାନଦେବା ପରିଲକ୍ଷିତ ହୁଏ । ତେଣୁ କବି କାବ୍ୟରେ ଉପଯୋଗିତା ଅନୁପଯୋଗିତା ପ୍ରତି ଦୃଷ୍ଟି ନଦେଇ ସମସ୍ତ ରସ ପରିବେଷଣ ପାଇଁ ପରିବେଶ ସୃଷ୍ଟି କରିଥିଲେ । ଊନବିଂଶ ଶତକର ଅଳ୍ପଆଗରୁ ଓ ଏହାର ଅର୍ଦ୍ଧାଂଶ ପର୍ଯ୍ୟନ୍ତ ଏହି ରସ ଚର୍ଚ୍ଚା ଚରମ ସୀମାରେ ପହଞ୍ଚିଲା । ରୀତି ସାହିତ୍ୟରେ ରସର ପ୍ରାଧାନ୍ୟ ମଧ୍ୟ ଭକ୍ତ ଚରଣ, ଅଭିମନ୍ୟୁ, କବିସୂର୍ଯ୍ୟ, ଯଦୁମଣି, ବନମାଳୀ ଓ ଗୋପାଳ-କୃଷ୍ଣ ଏହାର ବିଶେଷ ପୃଷ୍ଠପୋଷକତା କରିଥିଲେ । ଆଧୁନିକ ଯୁଗରେ ଏହା ଭିନ୍ନ ରୀତିରେ ପରିବେଶିତ ହେଲା । କବି ଯେ ସମସ୍ତ ରସକୁ ପରିତ୍ୟାଗ

କଲେ, ଏପରି ନୁହେଁ ମାତ୍ର, ସେ କାବ୍ୟ କବିତାରେ ଆବଶ୍ୟକତା ନେଇ ରସ ପରିବେଷଣ କଲେ । ପ୍ରାଚୀନ କବି କେତେକ ସ୍ଥାନରେ ରସ ଓ ଅଳଙ୍କାରକୁ ଆଖି ଆଗରେ ରଖି କାବ୍ୟ ସୃଷ୍ଟି କରୁଥିଲେ; ମାତ୍ର ବର୍ତ୍ତମାନର କବି କାବ୍ୟ କବିତା ବା ପ୍ରତିପାଦିତ ଚିନ୍ତାକୁ ଆଗରେ ରଖି ରସ ସଂଯୋଜନ କରିବାରେ ଲାଗିଛନ୍ତି । ଆଧୁନିକ କବିମାନଙ୍କ ସମ୍ମୁଖରେ ପ୍ରାଚ୍ୟ କାବ୍ୟତତ୍ତ୍ୱ ସହିତ ପାଶ୍ଚାତ୍ୟ କାବ୍ୟତତ୍ତ୍ୱର ଏକ ଅପୂର୍ବ ମିଶ୍ରଣ ପରିଲକ୍ଷିତ ହୁଏ । ସେମାନେ ରୋମାଣ୍ଟିକ ଚିନ୍ତାଧାରା ଆଧିଭୌତିକ, ଚେତନା, ପ୍ରେମ ଚେତନା, ସ୍ଥିତିବାନ, ତଥା ଟ୍ରାଜେଡିକୁ ନେଇ ସୃଷ୍ଟି ଚଳାଇଛନ୍ତି । ଆଧୁନିକ ଯୁଗରେ ରସର ସ୍ଥାନ ଓ ବ୍ୟାପକତା ଆମେ ଆଲୋଚ୍ୟ କବି ମାୟାଧର ମାନସିଂହଙ୍କ ସୃଷ୍ଟିରୁ ଦେଖିପାରିବା; ତଥାପି ପ୍ରବନ୍ଧର ଶିରୋନାମା "ମାନସିଂହ ସାହିତ୍ୟରେ ରସ" ହୋଇଥିବାରୁ ଏବଂ ପ୍ରାଚ୍ୟ ସାହିତ୍ୟିକ ଆଲୋଚନାରେ ରସର ବ୍ୟାପକ ଅନୁଶୀଳନ ଲକ୍ଷ୍ୟକରି ଭାରତୀୟ ଚିନ୍ତନ ଅନୁସାରେ ରସର ସ୍ୱରୂପ ଆଲୋଚନା କରିବା ଯଥାର୍ଥ ହେବ ।

**ସାହିତ୍ୟରେ ରସତତ୍ତ୍ୱ ଓ ରସର ସ୍ୱରୂପ**—ଖ୍ରୀ: ପୂ: ଦ୍ୱିତୀୟ ଶତକ ଠାରୁ ଖ୍ରୀ: ଅ: ୧୮ଶ ଶତାବ୍ଦୀ ପର୍ଯ୍ୟନ୍ତ ଦୀର୍ଘ ଦୁଇହଜାର ବର୍ଷ ଧରି ସଂସ୍କୃତ କାବ୍ୟତତ୍ତ୍ୱ ଆଲୋଚନାର ଏକ ସୁଦୀର୍ଘ ପରମ୍ପରା ରହିଅଛି । ଆଚାର୍ଯ୍ୟ ଭରତଙ୍କ ଠାରୁ ଆରମ୍ଭକରି ଅଦ୍ୟାବଧି ଋଷିତଙ୍କ ପର୍ଯ୍ୟନ୍ତ ଏହି ଆଲୋଚନା ଗତିଶୀଳ । ଏ ମଧ୍ୟରେ କାବ୍ୟର ବିଭିନ୍ନ ବିଭବ ଯଥା :— ରସ, ଅଳଙ୍କାର, ରୀତି, ଗୁଣ, ଏବଂ ଧ୍ୱନି ପ୍ରଭୃତି ବହୁ ଭାବରେ ଆଲୋଚିତ ହୋଇଅଛି । ସେ ମଧ୍ୟରେ ଭରତଙ୍କ ରସସିଦ୍ଧାନ୍ତ ଯେପରି ପ୍ରଥମ ସେପରି ଶ୍ରେଷ୍ଠ ମଧ୍ୟ ବିବେଚିତ ହୋଇଅଛି । ଆଚାର୍ଯ୍ୟ ଭରତ ପ୍ରଥମେ ନାଟ୍ୟରସର ସଂଖ୍ୟାକୁ ଆଠରୂପରେ ( ଶୃଙ୍ଗାର, ବୀର, କରୁଣ, ଅଦ୍ଭୁତ, ହାସ୍ୟ, ଭୟାନକ, ବୀଭତ୍ସ, ରୌଦ୍ର ) ପ୍ରଦର୍ଶନ କରି ତାହାର ସ୍ୱରୂପ ଉଲ୍ଲେଖ କରିଅଛନ୍ତି । ସେ କହନ୍ତି :—

"ବିଭାବାନୁଭାବ ବ୍ୟଭିଚାରୀ ସଂଯୋଗାତ୍ ରସ ନିଷ୍ପତ୍ତିଃ" । ପରବର୍ତ୍ତୀ କାଳରେ ବିଭିନ୍ନ ଆଲୋଚକ ଏହି ସୂତ୍ରକୁ ବ୍ୟାଖ୍ୟା କରି ରସସିଦ୍ଧାନ୍ତକୁ

ସ୍ପଷ୍ଟ ଓ ପ୍ରାମାଣିକ କରି ଯାଇଅଛନ୍ତି । ଭଟ୍ଟ ଲୋଲ୍ଲଟଙ୍କ ଉତ୍ପତ୍ତିବାଦ, ଶ୍ରୀ ଶଙ୍କୁକଙ୍କ ଅନୁମିତି ବାଦ, ଭଟ୍ଟନାୟକଙ୍କ ଭୁକ୍ତିବାଦ ଓ ଅଭିନବ ଗୁପ୍ତଙ୍କ ଅଭିବ୍ୟକ୍ତିବାଦ ବିଶେଷ ଭାବରେ ଏହି ରସସିଦ୍ଧାନ୍ତର ପ୍ରାମାଣିକ ବ୍ୟାଖ୍ୟା ପ୍ରଦାନ କରେ । ବର୍ତ୍ତମାନ ଅଭିନବ ଗୁପ୍ତଙ୍କ ଅଭିବ୍ୟକ୍ତିବାଦ ସର୍ବଶ୍ରେଷ୍ଠ ଓ ପ୍ରମାଣିକ ଭାବରେ ସ୍ୱୀକୃତିଲାଭ କରିଅଛି । ପରବର୍ତ୍ତୀ କାଳରେ ବିଶ୍ୱନାଥ କବିରାଜ ତାହାର ଏକ କାବ୍ୟିକ ଅଭିବ୍ୟକ୍ତି ପ୍ରଦାନ କରି ରସର ସ୍ୱରୂପ ବ୍ୟକ୍ତି ଓ ଭେଦ ସମ୍ବନ୍ଧରେ ସମ୍ୟକ ସୂଚନା ପ୍ରଦାନ କରିଅଛନ୍ତି ।

ମନୁଷ୍ୟର ହୃଦୟରେ ଜନ୍ମଜନ୍ମାନ୍ତରର ବାସନା ସ୍ଥାୟୀ ଭାବରେ ରୂପ ଗ୍ରହଣ କରିଥାଏ । ସେହି ସ୍ଥାୟୀଭାବହିଁ ବିଭାବ ଅନୁଭାବ ଏବଂ ବ୍ୟଭିଚାରୀ ଭାବ ଦ୍ୱାରା ଅଭିବ୍ୟକ୍ତ ହୋଇ ରସରୂପରେ ପରିଣତ ହୁଏ । ସାମାଜିକ ସେହି ରସର ଅଧିକାରୀ ହୁଏ । ଏହାକୁ ସଂକ୍ଷେପରେ ଅଭିବ୍ୟକ୍ତି କରାଯାଇ ପାରେ । କବି ବା ପ୍ରତିଭାବାନ ବ୍ୟକ୍ତି ଲୌକିକ ଜଗତର ବସ୍ତୁ ସନ୍ଦର୍ଶନ କରି ଯେଉଁ ଭାବରେ ଅନୁପ୍ରାଣିତ ହୁଏ, ସେହି ଉନ୍ମତତର ଭାବକୁ ଶବ୍ଦାର୍ଥ ସାହାଯ୍ୟରେ ପ୍ରକାଶ କରେ । କାବ୍ୟ ଜଗତରେ ତାହା ଅଲୌକିକ ବିଭାବ ଅନୁଭାବାଦି ନାମରେ ପରିଚିତ ହୁଏ । ସହୃଦୟ ସାମାଜିକ ସେହି ଶ୍ରାବ୍ୟ କାବ୍ୟ ଅଧ୍ୟୟନ ବା ଶ୍ରବଣ ଦ୍ୱାରା ଏବଂ ଦୃଶ୍ୟ କାବ୍ୟ ସନ୍ଦର୍ଶନ ଦ୍ୱାରା ଯାହା ଉପଲବ୍ଧି କରେ ସେହି ଉପଲବ୍ଧିରେ ତନ୍ମୟୀଭବନ ଫଳରେ ତାହାର ବାସନାଲୋକରେ ଅନୁରୂପ ସ୍ଥାୟୀଭାବ ଓ ସଂଚାରୀଭାବ ଉଦ୍‌ବୁଦ୍ଧ ହୁଏ । ସାଧାରଣୀକରଣ ଫଳରେ ପରିମିତ ପ୍ରମାତୃଭାବ ବିଗଳିତ ହେବାଦ୍ୱାରା ସାମାଜିକର ଚିତ୍ତ 'ରଜତମୋମୁକ୍ତ' ହୋଇ ସମ୍ପୂର୍ଣ୍ଣରେ ଅଧିଷ୍ଠିତ ହୁଏ । ସେତେବେଳେ ସ୍ଥାୟୀ ଭାବର ଏକ ତାନ ପ୍ରବାହ ହେତୁ ତନ୍ମୟ ଓ ସ୍ଥିରଚିତ୍ତରେ ସ୍ୱସ୍ୱରୂପ ଚିଦାନନ୍ଦର ଯେ ପ୍ରକାଶ ଅଥବା ସ୍ମୃତି ସହଯୋଗରେ ଭାବାବଲମ୍ବନର ଯେ ଚର୍ବଣା ବା ଆସ୍ୱାଦ ଘଟେ ତାହାହିଁ ରସ । ଏ ସମ୍ବନ୍ଧରେ ବିଶ୍ୱନାଥ କବିରାଜ,

ପଣ୍ଡିତ ଜଗନ୍ନାଥ, ଆଚାର୍ଯ୍ୟ ମମ୍ମଟ, ଏବଂ ଅଭିନବ ଗୁପ୍ତଙ୍କ ଚିନ୍ତନରେ ସ୍ମରଣ କରାଯାଇ ପାରେ । ୧ ।

ବାସ୍ତବରେ କବିବର୍ଣ୍ଣିତ ଶ୍ରାବ୍ୟକାବ୍ୟ ବା ନାଟ୍ୟକାରର ଦୃଶ୍ୟ-କାବ୍ୟ ସନ୍ଦର୍ଶନ କରି ସାମାଜିକ ବ୍ୟକ୍ତି ରସ ବା ଆନନ୍ଦ ଲାଭ କରେ । ପ୍ରଥମେ କାବ୍ୟ କଥା ବିଚାର କରାଯାଉ । କାବ୍ୟରେ ବର୍ଣ୍ଣିତ ନାୟକ ବା ନାୟିକା ଆଲମ୍ବନ ବିଭାବ ଭାବରେ ପରିଚିତ । ସେମାନଙ୍କ ଚରିତ୍ରରେ

---

୧—ରସ ସ୍ୱରୂପ

(କ) ସତ୍ତ୍ୱୋଦ୍ରେକାଦଖଣ୍ଡ ସ୍ୱପ୍ରକାଶାନନ୍ଦ ଚିନ୍ମୟଃ
ବେଦ୍ୟାନ୍ତର ସ୍ପର୍ଶଶୂନ୍ୟୋ ବ୍ରହ୍ମାସ୍ୱାଦ ସହୋଦରଃ
ଲୋକୋତ୍ତର ଚମତ୍କାର ପ୍ରାଣଃ କୈଶ୍ଚିତ୍ ପ୍ରମାତୃଭିଃ
ସ୍ୱୀକାର ବଦ୍‌ଭିନ୍ନତତ୍ ନସ୍ୱାମାସ୍ୱାଦତେ ରସଃ
ରଜସ୍ତମୋଭ୍ୟାମସ୍ପୃଷ୍ଟଃ ମନଃ ସତ୍ତ୍ୱମହୋଚପତେ
( ବିଶ୍ୱନାଥ କବିରାଜ—ସାହିତ୍ୟଦର୍ପଣ-ତୃତୀୟ ପରିଚ୍ଛେଦ )

(ଖ) ପ୍ରମୃଷ୍ଟ ପରମିତ ପ୍ରମାତୃତ୍ୱାନ ନିଜଧର୍ମେଣ ପ୍ରମାତ୍ରା ସ୍ୱପ୍ରକାଶତୟା ।
ବାସ୍ତବେନ ନିଜସ୍ୱରୂପାନନ୍ଦେନ ସହ ଗୋଚରୀମି୍ୟମାଣ ପ୍ରାଗ୍‌ବିନିବିଷ୍ଟ
ବାସନା ରୂପୋଭାବ ଇତ୍ୟାଦି ଭବ ରସଃ
( ଜଗନ୍ନାଥ-ରସଗଙ୍ଗାଧର )

(ଗ) କରୁଣାନାଥ କର୍ଯ୍ୟାଣି ସହକାରିଣି ଯାନିଚ
ରତ୍ୟାଦେ ସ୍ଥାୟିନେ ଲୋକେ ତାନିଚେତ୍ ନାଟ୍ୟକାବ୍ୟୟୋଃ
ବିଭାବାନୁଭାବ କଥ୍ୟନ୍ତେ ବ୍ୟଭିଚାରିଣଃ
ବ୍ୟକ୍ତଃ ସ ତୈର୍ବିଭାବାଦ୍ୟୈଃ ସ୍ଥାୟୀଭାବୋ ରସଃସ୍ମୃତଃ
(ମମ୍ମଟ-କାବ୍ୟ ପ୍ରକାଶ)

ଘ) ସାମାଜିକାନାଂ ବାସନାତ୍ମକତୟା ସ୍ଥିତଃ ସ୍ଥାୟୀଭାବାଦିକୋ
ଗୋଚରୀଭୂତଃ
ଅଲୌକିକ ଚମତ୍କାରକାରୀ ଶୃଙ୍ଗାରାଦିକୋରସଃ ।
(ଅଭିନବଗୁପ୍ତ-ଲୋଚନଟିକା)

ଭାବର ଉଦ୍ରେକ ପାଇଁ ଯେଉଁ ପରିବେଶର ଚିତ୍ରଣ ହୋଇଥାଏ ତାହା ଉଦ୍ଦୀପନ ବିଭାବ ନାମରେ ପରିଚିତ । ସେମାନଙ୍କ ଅଙ୍ଗଭଙ୍ଗୀ ଅନୁଭାବ ଏବଂ ମାନସିକ ବିକ୍ରିୟା ବ୍ୟଭିଚାରୀଭାବ ଭାବରେ କାବ୍ୟରେ ଚିହ୍ନିତ ହୋଇଥାଏ । ଅନୁଭବୀ ପାଠକ ଏ ସମସ୍ତ ଅଧ୍ୟୟନ କରିବା ଦ୍ୱାରା ତା'ର ହୃଦୟରେ ସ୍ଥାୟୀ ଭାବ ପ୍ରଭାବିତ ହୋଇ ବିଭିନ୍ନ ଭାବର ଅଧିକାରୀ ହୁଏ । ଫଳରେ ସ୍ୱତ୍ତ୍ୱ ଗୁଣ ସମ୍ପନ୍ନ ପାଠକ ସେହି କାବ୍ୟାନନ୍ଦର ଅଧିକାରୀ ହୁଏ । ସେହିପରି ଦୃଶ୍ୟକାବ୍ୟର ଅଭିନୟ ସନ୍ଦର୍ଶନରେ ଅଭିନେତା ଅଭିନେତ୍ରୀଙ୍କ ବିଭିନ୍ନ ହାବଭାବ ଓ ପରିବେଶ ରସାନୁଭବ ସାମାଜିକ ହୃଦୟର ସ୍ଥାୟୀଭାବକୁ ଉଦବୁଦ୍ଧ କରେ ଓ ଦର୍ଶକର ହୃଦୟରେ ଆନନ୍ଦ ସୃଷ୍ଟି ହୁଏ । ତେଣୁ ଦଶ ରୂପକରେ କୁହାଯାଇଅଛି—

"ବିଭାବୈରନୁଭାବୈଶ୍ଚ ସାତ୍ତ୍ୱିକୈର୍ବ୍ୟଭିଚାରିଭି
ଆନୀୟମାନଃ ସ୍ୱାଦ୍ୟତ୍ୱଂ ସ୍ଥାୟୀଭାବ ରସଃସ୍ମୃତଃ"

ଏପରିକି କରୁଣାଦି ରସରେ ମଧ୍ୟ ସାମାଜିକ ଆନନ୍ଦହିଁ ଅନୁଭବ କରେ । ଅବଶ୍ୟ ରସର ଉପଲବ୍ଧିରେ ବହୁ ବିଘ୍ନ ଥିବା ଆଲୋଚିତ ହୋଇଅଛି । ଯଥା—

କ) ଉପଲବ୍ଧି ବିଷୟରେ ଯୋଗ୍ୟତା । ଏହାର ଅପର ନାମ ପ୍ରତୀତ ସମ୍ଭାବନାର ଅଭାବ ।
ଖ) ନିଜ ସୁଖ ପ୍ରଭୃତି ଦ୍ୱାରା ବିବଶଭାବ
ଗ) ପ୍ରତୀତର ଉପାୟ ବିଷୟରେ ବୈକଲ୍ୟ
ଘ) ସ୍ଫୁଟତ୍ୱର ଅଭାବ, ଇତ୍ୟାଦି

ତେଣୁ କୁହାଯାଇଅଛି "ରସନାତ୍ମ୍ୟକ ବିତବିଘ୍ନ ପ୍ରତୀତ ଗ୍ରାହ୍ୟୋଭାବ ଏବ ରସଃ" ।

ପରବର୍ତ୍ତୀ କାଳରେ ଭରତଙ୍କ ଅଷ୍ଟବିଧ ନାଟ୍ୟରସ ସହିତ ଶାନ୍ତ, ବାତ୍ସଲ୍ୟ ପ୍ରଭୃତି ଯୋଗ ହୋଇ ରସର ସଂଖ୍ୟାରେ ଯେପରି ପରିବର୍ଦ୍ଧନ ଘଟିଛି, ରସକୁ ଅଳଙ୍କାର, ରୀତି, ଗୁଣ, ପ୍ରଭୃତିରେ ଅନ୍ତର୍ଭୁକ୍ତ କରି ରସର ମୁଖ୍ୟତ୍ୱ ପରିବର୍ତ୍ତିତ ହୋଇଛି । ତଥାପି ଆନନ୍ଦବର୍ଦ୍ଧନଙ୍କ ବିଳକ୍ଷ୍ଣ ଧ୍ୱନି

ସିଦ୍ଧାନ୍ତ ପ୍ରତିଷ୍ଠିତ ହେବାପରେ କାବ୍ୟରେ ରସର ମୁଖ୍ୟତ୍ୱ ସ୍ୱୀକୃତ ହୋଇ ଅଛି । ରସୋପଲବ୍ଧି ବା କାବ୍ୟାନନ୍ଦହିଁ ଚରମୋପଲବ୍ଧି ଭାବରେ ସ୍ୱୀକୃତି ଲାଭ କରିଅଛି । କାବ୍ୟର ବହୁବିଧ ଉପଯୋଗିତା ଆଲୋଚିତ ହୋଇଥିଲେ ମଧ୍ୟ ଆନନ୍ଦ ପ୍ରାପ୍ତି ବା ରସୋପଲବ୍ଧିହିଁ ଚରମ ଲକ୍ଷ୍ୟ ଭାବରେ ଉଦ୍‌ଘୋଷିତ ହୋଇଅଛି ।୨ ।

## ମାନସିଂହଙ୍କ ଦୃଷ୍ଟିରେ ରସ—

ମାନସିଂହ ବିଂଶ ଶତାବ୍ଦୀର କବି । ତାଙ୍କ ପ୍ରାଥମିକ ସୃଷ୍ଟିର ପଚିଶ ବର୍ଷ ପୂର୍ବରୁ କାବ୍ୟକବିତାରେ ନବରସ ପ୍ରୟୋଗର ଧାରା ଶିଥିଳ ହୋଇ ଗଲାଣି । କାବ୍ୟରେ ଆବଶ୍ୟକ ସ୍ଥଳେ ରସର ପ୍ରୟୋଗ ହେଉଥିଲେ ମଧ୍ୟ ମାନସିଂହଙ୍କର କାବ୍ୟାଦର୍ଶ ପ୍ରାଚୀନ କାବ୍ୟ ପରମ୍ପରାର ସମ୍ପୂର୍ଣ୍ଣ ଅନୁଗାମୀ ନଥିଲା । ପ୍ରାଚ୍ୟକାବ୍ୟ ସମୂହର ମୁଗ୍ଧ ପାଠକ ଥିଲେହେଁ ମାନସିଂହ ପାଶ୍ଚାତ୍ୟ କାବ୍ୟାଦର୍ଶ ଦ୍ୱାରା ବିଶେଷ ଆକର୍ଷିତ ଓ ପ୍ରଭାବିତ ହେବା ମଧ୍ୟ ପରିଲକ୍ଷିତ ହୁଏ ।

ପ୍ରାଚୀନ ଓଡ଼ିଆ କାବ୍ୟ ପରମ୍ପରାରେ ବାସ୍ତବତା ଓ ସାଧାରଣ ଜନଜୀବନର ଚିତ୍ର ବହୁ କମ୍ ପରିମାଣରେ ପ୍ରଦର୍ଶିତ ହୋଇଅଛି । ବର୍ଣ୍ଣନା ବିଳାସିତା ଓ ଅଳଙ୍କାରର ପ୍ରୟୋଗ କବିର କୋଠ ସମ୍ପତ୍ତି ଭାବେ ବିଦ୍ୟମାନ । କବି ମାନସିଂହଙ୍କ ଭାଷାରେ—"ଭଞ୍ଜ ଓ ଭଞ୍ଜଯୁଗର ଓଡ଼ିଆ କବିମାନଙ୍କ କାବ୍ୟ ଜଗତକୁ ଅଖଣ୍ଡ ଭାବରେ ଭାବି ବସିଲେ ଏକ ପ୍ରାସାଦ-ବାସିନୀ, ରାଜରାଣୀର କଳ୍ପନାହିଁ ମନକୁ ଆସେ । ଉତ୍କଳର କଳା ସମୂହ ଦେବାଳୟ ପରି ଏ ପ୍ରାସାଦର ପ୍ରତ୍ୟେକ ପ୍ରସ୍ତରଖଣ୍ଡ ସୂକ୍ଷ୍ମ ଓ ଜଟିଳ ଶିଳ୍ପରେ ଗୁମ୍ଫିତ ହୋଇ ରହିଛି । ସେ ପ୍ରାସାଦର ଅଗଣା କର୍ପୂର-ରଜରେ ବିଚ୍ଛୁରିତ, ଝୁଣାଫଳ ଖୋସା ଚେଟି, ପ୍ରାତଃକାଳରେ ମୟୂରପୁଚ୍ଛର ସମ୍ମାର୍ଜନୀରେ ସେ ଅଗଣା ମାର୍ଜ୍ଜନା କରାଯାଏ । ଦରିଦ୍ର ଛଡ଼ା ସେଠାରେ

୨) "କାବ୍ୟଂ ଯଶସେ ବ୍ୟବହାରବିଦେ ଶିବେତରକ୍ଷତୟେ
ସଦ୍ୟଃପର ନିର୍ବୃତୟେ କାନ୍ତାସମ୍ମିତତୟୋପଦେଶ ଯୁଜେ"

ବେଦନା ନାହିଁ, ପ୍ରେମାଶ୍ରୁ ଛଡ଼ା ସେଠାରେ ଅଶ୍ରୁ ନାହିଁ । କ୍ରୋଧ କେବଳ ଅଭିମାନରେ ପର୍ଯ୍ୟବସିତ । ରାଣୀ ଓ ସହଚରୀଗଣ ଅସୂର୍ଯ୍ୟମ୍ପଶ୍ୟା । ରାଜ ଅନ୍ତଃପୁର ବାହାରେ ଅଗଣିତ ଜନସଙ୍ଘ ସହିତ ସେମାନଙ୍କର କୌଣସି ସମ୍ପର୍କ ନାହିଁ । ଉଦ୍ୟାନ ଲତାପରି ସେମାନଙ୍କ ଜୀବନଲତାରେ ପ୍ରେମ-ପୁଷ୍ପର ଉଦଗମହିଁ ସେମାନଙ୍କ ଜୀବନର ଏକମାତ୍ର ସାର୍ଥକତା ।୩।

ନବୀନ ଓ ପ୍ରାଚୀନ ସାହିତ୍ୟ ବିଷୟରେ ପୁଣି ଲେଖିଛନ୍ତି ଯେ—"ଅନେକ ପ୍ରାଚୀନପନ୍ଥୀ କାବ୍ୟସାହିତ୍ୟର ବିତୃଷ୍ଣ ହୋଇ ଓଡ଼ିଆ ସାହିତ୍ୟର ସେହି ସ୍ୱର୍ଣ୍ଣଯୁଗକୁ ସ୍ମରଣ କରି ହାୟ ହାୟ କରିଥାନ୍ତି । ଆମର ମନେହୁଏ ସେମାନଙ୍କର ବିଚାର ଏକପାକ୍ଷିକ । ଉପେନ୍ଦ୍ର, ଦୀନକୃଷ୍ଣ ଅଭି-ମନ୍ୟୁ, ବଳଦେବ, ଗୋପାଳକୃଷ୍ଣଙ୍କର ମଧୁର ପଦାବଳୀର ସମକକ୍ଷ ସାହିତ୍ୟସମ୍ପଦ ବର୍ତ୍ତମାନ ସାହିତ୍ୟରେ ନାହିଁ । ନୂତନ ସାହିତ୍ୟ ଏପରି କେତେକ ରସଧାରାରେ ରସବନ୍ତ ହୋଇଉଠିଛି ଯେ, ପ୍ରାଚୀନ ସାହିତ୍ୟ ନିକଟରେ ତା'ର ଦାରିଦ୍ର୍ୟ ଯେନ ଲଜ୍ଜିତ ହେବାର କୌଣସି କାରଣ ନାହିଁ । ୪ ।

ଏହି ରସବାଦକୁ ସ୍ପଷ୍ଟ କରିବାକୁ ଯାଇ ମାନସିଂହ କହନ୍ତି—"ଆମ୍ଭମାନଙ୍କ ଆଳଙ୍କାରିକମାନେ ନବରସର ଉଲ୍ଲେଖ କରିଛନ୍ତି । ଏହି ରସ କ'ଣ ? ଏହା ମାନବ ମନର ଏକ ଏକ ଅନୁଭବ ମାତ୍ର । ନବରସ ମାନବ ଚିତ୍ତର ନଅଟି ଅନୁଭବର ନାମମାତ୍ର । ଆମ୍ଭମାନଙ୍କ ଆଳଙ୍କାରିକ-ମାନଙ୍କ ବିଶ୍ଳେଷଣ ଏପରି ସୂକ୍ଷ୍ମ ଯେ, ଏ ନଅଟିର ବାହାରେ ମାନବର ଆଉ ବିଶେଷ ଅନୁଭୂତି ଥିବାର ଜଣାଯାଏ ନାହିଁ । କିନ୍ତୁ ମାନବ ଚରିତ୍ର ଦେଖିବାକୁ ଗଲେ ଏହି ପ୍ରଧାନ ଅନୁଭୂତିଗୁଡ଼ିକର ବହୁ ଉପଜାତି ଆମ୍ଭ-ମାନଙ୍କ ଦୃଷ୍ଟିରେ ପଡ଼େ । ଧରନ୍ତୁ ଶୃଙ୍ଗାରରସ । ପ୍ରେମିକ ପ୍ରେମିକାର ପୂର୍ବରାଗ, ଅନୁରାଗ, ବିରାଗ, ମାନ, ଅଭିମାନ, ଗୃନ୍ୟ, ବିନୟ, ଉପେକ୍ଷା, ପ୍ରତୀକ୍ଷା, ଏଇପରି ନାନା ଅବସ୍ଥା ଏଇ ଶୃଙ୍ଗାର ରସ ମଧ୍ୟରେ ଗଣିବାକୁ

---

୩ ପ୍ରାଚୀନ ଓଡ଼ିଆ କାବ୍ୟ—ମାନସିଂହ ଗ୍ରନ୍ଥାବଳୀ ୩ୟ ଭାଗ—ପୃଃ୭୩

୪—ଓଡ଼ିଆ ସାହିତ୍ୟ ଓ ସମାଜ—ମାନସିଂହ ଗ୍ରନ୍ଥାବଳୀ ୩ୟ ଭାଗ—ପୃଃ୭୪

ହେବ । ଶୃଙ୍ଗାର ରସପର ଅନ୍ୟରସମାନଙ୍କର ମଧ୍ୟ ଉପଜାତ ଅଛି । ଏହାପରି ଗଣିବାକୁ ବସିଲେ ଆମ୍ଭେମାନେ ଦେଖିବା ମାନବ ଚିତ୍ତର ଅନୁଭୂତି ନଅଟିରେ ଶେଷ ହେବ ନାହିଁ । ହୁଏତ ଆମ୍ଭମାନଙ୍କୁ ନଅରେ ଶୂନ୍ୟ ପ୍ରୟୋଗ କରିବାକୁ ହେବ । କାଳ ଧର୍ମର ପରିବର୍ତ୍ତନ ଅନୁସାରେ ମଧ୍ୟ ମାନବର ଅନୁଭୂତିର ପରିବର୍ତ୍ତନ ହେଉଛି । ବିଜ୍ଞାନର ପ୍ରଭାବରେ ଆଜକାଲି ନାସ୍ତିକ ମାନଙ୍କ ସଂଖ୍ୟା ବଢ଼ୁଛି । ୟୁରୋପର ଗୋଟିଏ ବିଶାଳ ଜାତି ଭଗବାନଙ୍କୁ ତା'ର ସମାଜରୁ ବହିଷ୍କାର କରିବାର ଯତ୍ନରେ ଅଛି । ଆମର ଆଳଙ୍କାରିକମାନଙ୍କ ନବରସ ମଧ୍ୟରେ ଏ ବିଦ୍ରୋହ ଭାବର ସ୍ଥାନ ନାହିଁ । ସେହିପରି ବର୍ତ୍ତମାନର ଦେଶପ୍ରେମ ଆଉ ଏକ ନୂତନ ଅନୁଭୂତି ।"୫।

ପ୍ରାଚୀନ କବିମାନଙ୍କ ମଧ୍ୟରୁ ମାନସିଂହ ଗୋପାଳକୃଷ୍ଣଙ୍କର ମୁଗ୍ଧ ପାଠକ ଥିଲେ । ସେ ସ୍ୱୀକାର କରିଥିଲେ—"ଗୋପାଳକୃଷ୍ଣଙ୍କ ସମ୍ବନ୍ଧରେ ଲେଖିବାର ମୋର ଏକମାତ୍ର ଅଧିକାର ଏହି ଯେ ମୁଁ ଏହି ବରେଣ୍ୟ କବିଙ୍କର ପଦ୍ୟାବଳୀ ବାରମ୍ବାର ମୁଗ୍ଧ ହୋଇ ପଢ଼ିଛି ଓ ବନ୍ଧୁମାନଙ୍କ ଆଗରେ ପଢ଼ି ଶୁଣାଇଛି । ପଢ଼ୁ ପଢ଼ୁ ଯେଉଁ ଅନୁଭୂତି ହୋଇଅଛି ତାହାହିଁ ଏ ଆଲୋଚନାର ପ୍ରଧାନ ସମ୍ପଦ ।୬।

କେଉଁ ଅନୁଭୂତି ବା ରସ ଚେତନା ମାନସିଂହଙ୍କୁ ଅଭିଭୂତ କରିଥିଲା ? ତା'ର ଉତ୍ତରରେ 'ଗୋପାଳକୃଷ୍ଣ ପଦ୍ୟାବଳୀ' ଉପରେ ମାନସିଂହଙ୍କ ଆଲୋଚନା ଋଣୀୟ । ଗୋପାଳକୃଷ୍ଣଙ୍କ ବାତ୍ସଲ୍ୟ ରସର ବାସ୍ତବଚିତ୍ର, ଓଡ଼ିଆ ଜନପଦ ପିଠିକାରେ ରାଧାକୃଷ୍ଣ ଲୀଳା ବା ଶୃଙ୍ଗାର ରସ ପ୍ରଣୟର ଶାଶ୍ୱତ ଚିତ୍ର ସହିତ ଗୋପାଳକୃଷ୍ଣଙ୍କର ଆଧ୍ୟାତ୍ମିକ ମାର୍ଗ ବା ଧର୍ମୀୟ ଚେତନା ମାନସିଂହଙ୍କୁ ମୁଗ୍ଧ କରିଛି । ଏହି ବରେଣ୍ୟ କବିଙ୍କ ସୃଷ୍ଟିରେ ସେ ଶୃଙ୍ଗାର, ବାତ୍ସଲ୍ୟ ଓ ଶାନ୍ତ ରସର ମହତ୍ତ୍ୱ ଦେଖି

---

୫ ମାନସିଂହ ଗ୍ରନ୍ଥାବଳୀ ୩ୟ ଭାଗ-ପୃ-୫୭୪

୬—ଗୋପାଳକୃଷ୍ଣ ପଦ୍ୟାବଳୀ—କବି ଓ କବିତା—ମାନସିଂହ ଗ୍ରନ୍ଥାବଳୀ ୩ୟ ଭାଗ—ପୃ—୪୫୯

ପାଇଛନ୍ତି । ପରବର୍ତ୍ତୀ ଆଲୋଚନାରେ ଆମେ ମାନସିଂହଙ୍କ ସୃଷ୍ଟି ଦୃଷ୍ଟିରେ ଦେଖିଲେ ଏହି ରସର ପ୍ରାଧାନ୍ୟ ଦେଖିପାରିବା । ଏହା ବ୍ୟକ୍ତିଗତ ମାନସିଂହଙ୍କ ଜୀବନର ଦୁଃଖମୟ ଅନୁଭୂତି ତାଙ୍କୁ କରୁଣ ରସ ସୃଷ୍ଟି କରିବା ପାଇଁ ଖୋରାକ ଯୋଗାଇ ଦେଇଛି । ବୀରରସର ମୁଗ୍‌ଧ ପାଠକ ଥିଲେ ମଧ୍ୟ ଏହି ରସ ପରିବେଷଣରେ ସେ କ୍ଷମ ହୋଇପାରି ନାହାନ୍ତି ବା କୁହାଯାଇ ପାରେ ସେ ଏହି ରସକୁ ଉପସ୍ଥାପନ କରିବା ପାଇଁ ଯଥେଷ୍ଟ ଆବଶ୍ୟକତା ଉପଲବ୍ଧି କରି ପାରି ନାହାନ୍ତି । ଜୀବନର ଘାତ ପ୍ରତିଘାତ, କର୍ମକ୍ଷେତ୍ରରେ ଲାଞ୍ଛନା ଶେଷ ଜୀବନରେ କାବ୍ୟକୃତିରେ ଶାନ୍ତରସ ପରିବେଷଣ ପାଇଁ ବାଧ୍ୟ କରିଛି । ମାନସିଂହଙ୍କ ଦୃଷ୍ଟିରେ ରସ କେବଳ ଅନୁଭୂତି ମାତ୍ର । ତେଣୁ କାବ୍ୟ କବିତା ତଥା ନାଟକ ଉପନ୍ୟାସ ରଚନା କ୍ଷେତ୍ରରେ ଯେଉଁଠାରେ ଯେପରି ଅନୁଭୂତି ପାଇଛନ୍ତି ତାହାକୁ ସୃଷ୍ଟିରେ ପରିବେଷଣ କରିଛନ୍ତି । ରସକୁ ଦୃଷ୍ଟି ଆଗରେ ରଖି କାବ୍ୟ ସୃଷ୍ଟି କରିବାର ପକ୍ଷପାତୀ ମାନସିଂହ ନଥିଲେ । ତାଙ୍କ ଦୃଷ୍ଟିରେ ସେ ପ୍ରକାର ସୃଷ୍ଟି କୃତ୍ରିମ ଓ ଦୋଷଦୁଷ୍ଟ । ତାଙ୍କ ସୃଷ୍ଟିରେ ପ୍ରଣୟ ଚେତନା ବା ପ୍ରେମ ଚେତନା ତଥା ଜାତୀୟ ଚେତନାର ଯେଉଁ ଧାରା ଦେଖାଇଛନ୍ତି ଏହା ଆମର ପ୍ରାଚୀନ ରସର ନିୟମ ମଧ୍ୟରେ ଆସୁଥିଲେ ମଧ୍ୟ ନବରସ ଅନ୍ତର୍ଗତ ଏହା ଏକ ସ୍ୱତନ୍ତ୍ର ଅନୁଭୂତି ।

## ମାନସିଂହଙ୍କ ସୃଷ୍ଟିରେ ରସ :—

ମାନସିଂହଙ୍କ ସୃଷ୍ଟି ବହୁମୁଖୀ । ସେ କାବ୍ୟ, କବିତା, ନାଟକ, ଗୀତିନାଟ୍ୟ, ଏକାଙ୍କିକା, ଉପନ୍ୟାସ, ପ୍ରବନ୍ଧ, ଭ୍ରମଣକାହାଣୀ, ସମାଲୋଚନା, ସାହିତ୍ୟର ଇତିହାସ ତଥା ବିଭିନ୍ନ ଭାଷ୍ୟ ଲେଖିଛନ୍ତି; ମାତ୍ର ରସ କେବଳ ମୌଳିକ ସୃଷ୍ଟିରେ ସମ୍ଭବ । ଭରତମୁନି କେବଳ ନାଟ୍ୟଶାସ୍ତ୍ରରେ ରସର ସ୍ଥିତି ସ୍ୱୀକାର କରିଥିଲେ । ପରେ କାଳିଦାସ ଭବଭୂତି, ଭୋଜ ପ୍ରଭୃତି କାବ୍ୟରେ ରସସୃଷ୍ଟିର ନମୁନା ଉପସ୍ଥାପିତ କରି ଯାଇଛନ୍ତି । ପ୍ରାଚୀନ ସାହିତ୍ୟରେ ଗଦ୍ୟ, ପଦ୍ୟ, ନାଟକକୁ କାବ୍ୟର ଅନ୍ତର୍ଭୁକ୍ତ କରାଯାଉଥିଲା । ଆଧୁନିକ ଯୁଗରେ କାବ୍ୟର ସଂଜ୍ଞା ବଦଳିଯାଇ ସାହିତ୍ୟର ବିଭାଗୀକରଣ ହୋଇଛି । ମାୟାଧର ମାନସିଂହଙ୍କ ସାହିତ୍ୟରେ ରସ ଭାରତୀୟ କାବ୍ୟତତ୍ତ୍ୱ ଅନୁସାରେ ନିର୍ଣ୍ଣୟ କରାଯାଉଛି । ଭରତଙ୍କ ରସ

ସୂତ୍ର ଅନୁସାରେ ରସ ଆଠ ପ୍ରକାର । ପରେ ଆଳଙ୍କାରିକମାନେ ଶାନ୍ତ ରସକୁ ଅନ୍ତର୍ଭୁକ୍ତ କରି ରସ ନଅ ପ୍ରକାର ବୋଲି ଗ୍ରହଣ କରିଥିଲେ, ପୁନଶ୍ଚ ବାତ୍ସଲ୍ୟ ଓ ଭକ୍ତି ରସକୁ ସଂଯୋଜନ କରାଯାଇ ରସର ସଂଖ୍ୟା ଏଗାର ପ୍ରକାର ହେଲା । ମାନସିଂହଙ୍କ ସୃଷ୍ଟିରେ ଏହି ଏଗାର ପ୍ରକାର ରସର ବିଚାର କରାଯାଉଛି ।

## ଶୃଙ୍ଗାର ରସ :—

ଶୃଙ୍ଗାର ରସକୁ ଆଦ୍ୟରସ କୁହାଯାଏ । ରତି ଶୃଙ୍ଗାର ରସର ସ୍ଥାୟୀଭାବ । ନାୟକ ନାୟିକାଙ୍କର ପରସ୍ପର ଅନୁରାଗ ଫଳରେ ଶୃଙ୍ଗାର ରସର ଉତ୍ପତ୍ତି । ଭରତ ଶୃଙ୍ଗାରକୁ ମୂଳରସ ରୂପେ ସ୍ୱୀକାର କରିଛନ୍ତି । ଭୋଜ ପ୍ରଭୃତି ଆଳଙ୍କାରିକମାନେ ମଧ୍ୟ ଏହି ମତର ସମର୍ଥକ । ଏଥିରୁ ହାସ୍ୟ କରୁଣାଦି ରସର ଉତ୍ପତ୍ତି ହୋଇଛି ବୋଲି ସେମାନଙ୍କର ମତ, କାରଣ ମଣିଷର ଆଦ୍ୟମ ପ୍ରବୃତ୍ତି ହେଉଛି କାମଭାବ ବା ଶୃଙ୍ଗାର । ଏହା ପ୍ରଥମେ ଅନୁଭୂତ ହୋଇଥିବାରୁ ଆଦ୍ୟରସ ରୂପେ ଗୃହୀତ ।

ଶୃଙ୍ଗାର ରସ ସଂଭୋଗ ଶୃଙ୍ଗାର ଓ ବିପ୍ରଲମ୍ଭ ଶୃଙ୍ଗାରଭେଦରେ ଦୁଇ ଭାଗରେ ବିଭକ୍ତ । ସଂଭୋଗ ଶୃଙ୍ଗାରରେ ନାୟକ ନାୟିକାର ମିଳନ ହୋଇଥାଏ । ବିପ୍ରଲମ୍ଭ ଶୃଙ୍ଗାରରେ ଅନୁରାଗ ଅତ୍ୟନ୍ତ ଉତ୍କଟ କିନ୍ତୁ ପ୍ରିୟସମାଗମ ହୁଏ ନାହିଁ । ବିପ୍ରଲମ୍ଭ ଚାରିପ୍ରକାର—ପୂର୍ବରାଗ, ମାନ, ପ୍ରବାସ ଓ କରୁଣ । ବିପ୍ରଲମ୍ଭ ଶୃଙ୍ଗାରରେ ନାୟିକାଠାରେ ଦଶ ପ୍ରକାର କାମଦଶା ପରିଲକ୍ଷିତ ହୁଏ । ଯଥା :—ଅଭିଳାଷ, ଚିନ୍ତା, ସ୍ମୃତି, ଗୁଣ-କଥନ, ଉଦ୍‌ବେଗ, ସଂପ୍ରଳାପ, ଉନ୍ମାଦ, ବ୍ୟାଧି, ଜଡ଼ତା ଓ ମୃତ୍ୟୁ ।

ଏହି ସଂଭୋଗ ଓ ବିପ୍ରଲମ୍ଭ ଶୃଙ୍ଗାର ସ୍ୱକୀୟା, ପରକୀୟା ଭେଦରେ କାବ୍ୟରେ ସ୍ଥାନ ପାଇଅଛି । ଗୌଡ଼ୀୟ ବୈଷ୍ଣବ ଧର୍ମାବଲମ୍ବୀମାନେ ଯେଉଁ ସାହିତ୍ୟ ସୃଷ୍ଟି କରିଛନ୍ତି ସେଥିରେ ପରକୀୟା ନାୟିକାକୁ ଆଲମ୍ବନ ଭାବରେ ଗ୍ରହଣ କରିଛନ୍ତି ଓ ରାଧାକୃଷ୍ଣଙ୍କ ମିଳନ ବିରହ ଆଦିକୁ ମଧୁର ରସଭାବେ ବର୍ଣ୍ଣନ କରିଛନ୍ତି । ଅନ୍ୟାନ୍ୟ କବିଙ୍କ କାବ୍ୟରେ ସେହି ଶୃଙ୍ଗାର ପ୍ରାୟଶଃ ସ୍ୱକୀୟା ନାୟିକା ଓ ଐତିହାସିକ ବା ପୌରାଣିକ

ନାୟକଙ୍କୁ ଅବଲମ୍ବନ କରି ଚର୍ଚ୍ଚିତ । ଉତ୍ତମ ସ୍ଥାନରେ ନାୟକ ଏବଂ ନାୟିକା ଆଲମ୍ବନ ବିଭାବ । ଚନ୍ଦ୍ରମା, ଚନ୍ଦନ, ସ୍ରକ ଆଦି ଉଦ୍ଦୀପନ ବିଭାବ, କଟାକ୍ଷ, ଭ୍ରୁଭଙ୍ଗୀ ଏହାର ଅନୁଭାବ । ଉଗ୍ରତା, ମରଣ, ଆଳସ୍ୟ ଆଦି ସଂଗ୍ରହଣୀୟ ଭାବ । ଶୃଙ୍ଗାର ରସର ଉଦ୍ଦୀପନ ଭାବରେ ମୁଖ୍ୟତଃ ତିନିଗୋଟି ଋତୁର ବର୍ଣ୍ଣନା କରାଯାଇଥାଏ ଯଥା :—ବସନ୍ତ, ବର୍ଷା ଓ ଶୀତ ।

ମାନସିଂହଙ୍କ ସମସ୍ତ ସୃଷ୍ଟି ମଧ୍ୟରୁ, ଧୂପ, ହେମପୁଷ୍ପ, ହେମଶସ୍ୟ, ସେଦିନର କବିତା, ପୁଷ୍ପିତା, ସାଧବଝିଅ, ଜେମା, କଙ୍କଣ, ଶୁଭଦୃଷ୍ଟି, ଉପେକ୍ଷିତା, କମଳାୟନ ତଥା ଅନ୍ୱେଷଣ ଉପନ୍ୟାସରେ ଶୃଙ୍ଗାର ଚିତ୍ରଣ ପରିଲକ୍ଷିତ ହୁଏ । ପ୍ରାଚ୍ୟ କାବ୍ୟାଦର୍ଶର ଶୃଙ୍ଗାର ରସର ଉତ୍କଣ୍ଠତା ଏଥିରେ ନାହିଁ । ନିଜର ବ୍ୟକ୍ତିଗତ ପ୍ରେମକୁ ରାଧାକୃଷ୍ଣ ବା ଠାକୁର ଠାକୁରାଣୀ ରୂପରେ ନ ସଜାଇ କବି ନିଜକୁ ନାୟକ ଓ ଏହି ଧୂଳିମାଟିର ନାୟିକାର ପ୍ରେମକୁ ବର୍ଣ୍ଣନା କରିଛନ୍ତି । ଏଥିରେ ସ୍ୱକୀୟା ଏବଂ ପରକୀୟା ଉଭୟବିଧ ନାୟିକାର ଚିତ୍ରଣ ରହିଛି । ବର୍ତ୍ତମାନ ତାଙ୍କର ବିଭିନ୍ନ ସୃଷ୍ଟିରେ ଶୃଙ୍ଗାର ରସର ମୂଲ୍ୟାୟନ କରାଯାଇଛି ।

ମାନସିଂହଙ୍କ ଶ୍ରେଷ୍ଠ କାବ୍ୟକୃତି 'ଧୂପ'କୁ ପ୍ରଥମେ ବିଚାରକୁ ନିଆଯାଇ 'ତରୁଣ କବିର ଆଶା'ରେ ବିପ୍ରଲମ୍ଭ ଶୃଙ୍ଗାରର ଅଭିଳାଷ ଓ ଚିନ୍ତା ଦେଖାଯାଇଛି । ତରୁଣ ପ୍ରାଣରେ ମିଳନ ପାଇଁ ଉଦ୍ଦାମତା ଥିଲେହେଁ ପ୍ରିୟାସମାଗମ ହୋଇପାରିନି । ତରୁଣ ଗାଉଛି :—

'ଅସରି ଗ୍ରୀଷ୍ମ ଯାମିନୀ ତଳେ
ସେ ରାଧା କୋମଳ ଜଘନ ପରେ
ଜୀବନ ମରଣ ଯାଆନ୍ତି ଭୁଲି ସପନ ପରି' ( ୭ )

'ପାପ ଓ ପ୍ରେମ' କବିତାରେ ପ୍ରେୟସୀ ସହିତ ମିଳନ ପରେ ବିଚ୍ଛେଦର ଚିତ୍ର ରହିଛି । ପ୍ରାଚୀନ କାବ୍ୟରେ ବିଚ୍ଛେଦରେ ନାୟକ ନାୟିକା

---

୭—'ତରୁଣ କବିର ଆଶା' ''ଧୂପ'' ମାନସିଂହ ଗ୍ରନ୍ଥାବଳୀ ୧ ମ ଖଣ୍ଡପୃଷ୍ଠା ୭୧

ବିରହଦଶା ଭୋଗନ୍ତି । ଉଦ୍ଦୀପନ ବିଭାବମାନଙ୍କୁ ଗାଳି ବର୍ଷଣ କରନ୍ତି । ଏଠାରେ ନାୟକର ଚିନ୍ତାଧାରା ଭିନ୍ନ । ସେ ନିଜେ ସମାଜ ବିରୁଦ୍ଧରେ ବିପ୍ଳବ କରିବା ପାଇଁ ପ୍ରସ୍ତୁତ । ନାୟିକାର ବିଚ୍ଛେଦର କାରଣ ଏଇ ଜନତା, ତେଣୁ ସେ ବାରମ୍ବାର 'ମୂର୍ଖଜନତା' ଶବ୍ଦରେ ଜନତାକୁ ଭର୍ତ୍ସନା କରିଛନ୍ତି—

'ମୂର୍ଖ ଜନତା କରତା' ବିଗୁର
ପ୍ରଣୟକୁ ଦିଅ ତା'ର ଅଧିକାର
ନକହ ପୁରୁଣା ପୋଥି ଏଥେ କିବା କହିଲା
ମୋ ନୟନେ ସେ'ତ ପରମ ପୂଜ୍ୟା ମହିଳା (୮)

'ଗୋପନକଥା' 'ମିଳନପଥ' 'ଅପ୍ରତ୍ୟୟ' 'ଦେଖାହେଲା କମା'ରେ ନାୟିକାର ଗୁଣ କଥନ ସଙ୍ଗେ ନାୟିକାର ସ୍ମୃତି ପ୍ରାଣକୁ ବ୍ୟଥିତ କରିଛି । 'ଅଶ୍ରୁର ଆନନ୍ଦ', 'ପ୍ରଣୟ ବ୍ୟଥା', 'ପ୍ରଣୟ ସାଧନ' ଓ 'ପ୍ରିୟାର ସାଧନା' କବିତାର ନାୟକ ପ୍ରାଣରେ ସଂପ୍ରଳାପ ଦେଖା ଦେଇଛି । ନାୟିକାର ଗୁଣକଥନ କ୍ରମଶଃ ପ୍ରଳାପରେ ପର୍ଯ୍ୟବସିତ ହୋଇଛି । 'ବନ୍ଦିନୀ ପ୍ରିୟା'ରେ ନାୟକର ବିରହ ଓ ପ୍ରବାସ ଚିନ୍ତାର ସ୍ପଷ୍ଟ ଉଦାହରଣ ମିଳେ ।—

"କହି ବହେ ପୁଣି ତୋ'ର ନାମ ଗୁଣି ନସରଇ ତା'ର ଦିନ
ଯହିଁ ବସେ ଖାଲି ତୋ'ର ନାମ ଲେଖି ଶୋକ କରେ ତା'ର କ୍ଷୀଣ
ତୋ'ର ପଦରଧୂ ଦେହେ ଜାକିଧରି ଅସୀମ ସେ ସୁଖ ପାଏ,
ତୋ'ର ନାମ ପୁଣି ଖୋଳି ଦେଇଅଛି ଶରୀରର ଠାଏ ଠାଏ,
ଜାଣି ରଖ ବିରାନନ୍ଦୀ
ଭୁଲେ ନାହିଁ କେବେ ପ୍ରିୟାଗୋ ତୋହର କନ୍ଦିବସ କି ରଜନୀ" (୯)

'ଆଷାଢ଼ ଅଭିସାର' କବିତାରେ ନାୟକ ନାୟିକାର ମିଳନ ହୋଇଛି । 'ଏଇ ସହକାର ତଳେ' କବିତାକୁ ସଂଭୋଗ ଶୃଙ୍ଗାରର ଶ୍ରେଷ୍ଠ

୮—'ପାପ ଓ ପ୍ରେମ' 'ଧୂପ' ମାନସିଂହ ଗ୍ରନ୍ଥାବଳୀ ୧ମଭାଗ ପୃଷ୍ଠା ୭୬
୯—ମାନସିଂହ ଗ୍ରନ୍ଥାବଳୀ ୧ମ ଭାଗ ପୃ-୯୦

ଉଦାହରଣ ଭାବରେ ନିଆଯାଇପାରେ । ପରକୀୟା ନାୟିକା ସହିତ ମିଳନରେ କବିତା ଗୁଞ୍ଜରିତ ।—

"ଏଇ ସହକାର ତଳେ
ସେଦିନ ପ୍ରିୟାର କର କଙ୍କଣ ଉଡ଼ିଥିଲା ମୋର ଗଳେ"

× × × ×

ସହଚରୀ ମୋର ପ୍ରଣୟ ବିଭୋର ଉଡ଼ିଥିଲା ମୋର ଗଳେ ।'(୧୦)

'ବିରହୀ' ଓ 'ବସନ୍ତ ବିରହୀ' କବିତାର ବିପ୍ରଲମ୍ଭ ଶୃଙ୍ଗାର ( ପ୍ରବାସ ) ଦେଖାଯାଏ । ବିରହ ଦଶାରେ ନାୟକ ଅସ୍ଥିର ହୋଇ ଉଠିଛି । ପାରମ୍ପରିକ କାବ୍ୟରେ ସମାନ ଭାବରେ ନାୟକ ନାୟିକାର ବିରହ ଦେଖାଦେଲାବେଳେ ମାନସିଂହ କେବଳ ନାୟକର ବିରହ ଅବସ୍ଥା ଦେଖାଇଛନ୍ତି । ପ୍ରାଚୀନ କାବ୍ୟରେ ନାୟିକା ବାସକ ସଜ୍ଜା ରହେ; ମାତ୍ର ଏଠାରେ ନାୟିକା ପରିବର୍ତ୍ତେ ନାୟକ ବାସକ ସଜ୍ଜା ରହିଛି । 'ପ୍ରଣୟୀ' କବିତାରେ—

"ଅଙ୍ଗ ଗୃହେଁ ଏକାନ୍ତ କୋମଳ ତଳପେ
ଆବେରକ ଦେହର ସରସ ନିବିଡ଼ ମିଳନେ
ବନ୍ଧୁକେ ଗୃହଁ ଅଭିସାର କର ଏଠାରେ
ବାସକ ସଜ୍ଜା ରହିବି ମୁଁ ସାରା ଯାମିନୀ" (୧୧)

'ବିରହ' 'ରାସସ୍ଥଳୀ' ଓ 'ସ୍ମୃତି' କବିତାରେ ବିପ୍ରଲମ୍ଭ ଶୃଙ୍ଗାରର ପରିପ୍ରକାଶ ଦେଖାଯାଏ । 'ବର୍ଷାବିରହ' 'ମନେ କି ଥାଏ' 'ପ୍ରଣୟପର୍ବ'ରେ ନାୟକର ଉନ୍ମାଦ ଅବସ୍ଥା ବର୍ଣ୍ଣିତ । 'ଜଣେ ମତେ ଭଲପାଏ'ରେ ବିରହ ପରେ ପ୍ରେମିକ ପ୍ରାଣରେ ଆତ୍ମସାନ୍ତ୍ୱନା ଦେଖାଦେଇଛି ।

---

୧୦—ମାନସିଂହ ଗ୍ରନ୍ଥାବଳୀ ୧ମ ଭାଗ ପୃ-୯୫-୯୬
୧୧—ମାନସିଂହ ଗ୍ରନ୍ଥାବଳୀ ୧ମ ଭାଗ ପୃ-୧୦୫

'ଧୂରେରହ' କବିତାରେ ବିପ୍ରଲମ୍ଭ ଶୃଙ୍ଗାରର ବ୍ୟାଧି 'ପ୍ରେମ ଓ ଜରା'ରେ ଜଡ଼ତା 'ପ୍ରେମ ଓ ମୃତ୍ୟୁ'ରେ ମୃତ୍ୟୁ ଦେଖାଦେଇଛି । ମାନସିଂହଙ୍କ ପ୍ରେମ କବିତା ମଧ୍ୟରେ 'ପ୍ରେମ ଓ ମୃତ୍ୟୁ'ରେ ଯେଉଁ ଆବେଗ ଦେଖା ଦେଇଛି ତାହା ଅନ୍ୟତ୍ର ବିରଳ । ମାନସିଂହଙ୍କ କବିତା ଗୁଚ୍ଛକୁ ସାମଗ୍ରିକ ଭାବରେ ଅନୁଧ୍ୟାନ କଲେ ମିଳନ ଓ ବିରହର ସମସ୍ତ ଭାବ ବିଚିତ୍ର ତଥା ହୃଦୟସ୍ପର୍ଶୀ ଭାବରେ ପ୍ରକାଶିତ ହୋଇଥିବା ଅନୁଭୂତ ହୁଏ । ଏହି 'ଧୂପ' କବିତା ଗୁଚ୍ଛରେ କବି ଏକନିଷ୍ଠ ପରକୀୟା ପ୍ରୀତିର ଚିତ୍ରଣ କରିଥିଲେ ମଧ୍ୟ କେତେକ ସ୍ଥାନରେ ଏହାର ବ୍ୟତିକ୍ରମ ଦେଖାଯାଏ—

"ଅତଳ ଜଳଧି ଏ ରହିଛି କୂଳଭରି
ବହିବି ବୁକୁ ତା'ରେ ଲକ୍ଷ୍ୟ କୋଟି ତରୀ
ଲକ୍ଷକୋଟି ଜୀବ ପାରିବେ ଅବଗାହି
କି ଲଭି କା'ରେ କହିଁ କହିବ ନାହିଁ ନାହିଁ" (୧୨)

**ହେମପୁଷ୍ପ** 'ହେମପୁଷ୍ପ'ର କବିତା ବର୍ତ୍ତମାନ ବିସ୍ମୃତପ୍ରାୟ । ଅସାମାନ୍ୟ ରୂପସୀ ଇରାନୀ କିଶୋରୀକୁ ଦେଖି କବି (ନାୟକ) ମନରେ ମିଳନ ଆଶା ଜାଗ୍ରତହୋଇଛି । ନାୟକର ଅନୁରାଗ ଉତ୍କଟ, ମାତ୍ର ଏଠାରେ ପ୍ରିୟା ସମାଗମ ହୋଇପାରିନି । ଏଠାରେ ବିପ୍ରଲମ୍ଭ ଶୃଙ୍ଗାରର ଅଭିଳାଷ ଦେଖାଯାଏ । ସେହିପରି 'ଜ୍ୟୋତ୍ସ୍ନାମୟୀ' 'ଉଦାସିପ୍ରାଣ'ରେ ଅଭିଳାଷ, 'ସାଫୋର ବ୍ୟଥା'ରେ ନାୟିକା ବାସକସଜ୍ଜା ରହିଛି । ଏଠାରେ ଅନୁରାଗ ଉତ୍କଟ ହେଲେହେଁ ପ୍ରିୟା ସମାଗମ ହୋଇପାରିନି । ବର୍ତ୍ତମାନ ଉପଲବ୍ଧ 'ହେମପୁଷ୍ପ' କବିତାଗୁଚ୍ଛର ପ୍ରଥମ ପ୍ରକାଶିତ ରୂପର ସାମ୍ୟ ବହନ କରି ନାହିଁ । ଏଥିରେ କବି ସଙ୍କୀର୍ଣ୍ଣ ଚିତ୍ରରେ ନାୟକର ଉତ୍କଣ୍ଠା, ଅଭିଳାଷ ଓ ସ୍ମୃତିର ସଂବେଦନଶୀଳ ଚିତ୍ର ପ୍ରଦାନ କରି ବିପ୍ରଲମ୍ଭ ଶୃଙ୍ଗାରର କେତୋଟି ମନୋଜ୍ଞ ଚିତ୍ର ପ୍ରଦାନ କରିଛନ୍ତି ।

'ହେମଶସ୍ୟ' ମାନସିଂହଙ୍କର ଶୃଙ୍ଗାର ରସ କବିତାର ଏକ ଭିନ୍ନ ଦିଗ । ଏଥିରେ କବିଙ୍କର ଦାମ୍ପତ୍ୟ ଜୀବନର ପ୍ରେମ ବର୍ଣ୍ଣିତ; ତେଣୁ

୧୨—'ପ୍ରେମର ପରମାପ' 'ଧୂପ' ମାନସିଂହ ଗ୍ରନ୍ଥାବଳୀ ୧ମ ଭାଗ ୧୨୨

ପରକୀୟା ପ୍ରୀତି କମ୍ବା ବିପ୍ରଲମ୍ଭ ଶୃଙ୍ଗାରର ପରିବେଶ ପାଇଁ ଅନୁକୂଳ ନୁହେଁ । କବିବଧୂର ଆଗମନରେ କବି ପ୍ରାଣରେ ଆନନ୍ଦ ସୃଷ୍ଟି ହୋଇଛି । ପ୍ରଣୟୀର କାଞ୍ଚିଁଶି ସ୍ପର୍ଶରେ ପ୍ରାଣ ମଧୁମୟ ହୋଇଛି । ପରିପୂର୍ଣ୍ଣ ଚନ୍ଦ୍ରାଲୋକିତ ନୀରବ ଶାନ୍ତ ନିଶିଥରେ କବିବଧୂର ମୃଦୁ କଙ୍କଣ ନିକ୍ୱଣରେ କବିପ୍ରାଣରେ ଆବେଗ ସୃଷ୍ଟି ହୋଇଛି । ପ୍ରିୟାର କରଧର ସୁନ୍ଦର ମୁଖକୁ ଆଘ୍ରାଣ କରୁକରୁ ଗୋଟିଏ ଆଘ୍ରାଣରେ ବିଶ୍ୱବିଶ୍ୱ ପାଦ୍ୱପାଇଛି । ରୂପାଲୋକରେ କବିର ଅନ୍ଧକାର କକ୍ଷ ଆଲୋକିତ ହୋଇ ଉଠିଛି; ତେଣୁ ସେ ପ୍ରଦୀପକୁ ଲିଭାଇବା ପାଇଁ ଇଚ୍ଛା ପ୍ରକାଶ କରିଛନ୍ତି । 'ସରମ' 'ପ୍ରକୃତିର ବୈତ୍ୟ', 'ବସନ୍ତ ଭିକ୍ଷା' 'ଦାନ ପ୍ରତିଦାନ' 'ଦେହ ଓ ସ୍ନେହ', 'ଜ୍ୟୋତ୍ସ୍ନାଭୋଗ' 'ବିରହୀଗାଥା' ଶ୍ରାବଣ ଅଭିସାର' ଓ 'ଅତୃପ୍ତ ଭୋଗ'ରେ ମିଳନର ଚିତ୍ର ପ୍ରଦତ୍ତ ହୋଇଛି । ପ୍ରିୟାକୁ କବି ଯେତେ ଉପଭୋଗ କଲେ ମଧ୍ୟ ତୃପ୍ତି ଆସୁନି । ଦୁଇଟି ନୟନରେ ପ୍ରିୟା ଦର୍ଶନରେ ତୃପ୍ତି ନଆସିବାରୁ ଲକ୍ଷ ନୟନରେ ଚାହିଁବା ପାଇଁ କାମନା କରିଛନ୍ତି । ଆଉ—

"ଦୁଇଟି ଭୁଜେ ଭିଡ଼ି ସାରିଲେ ତାହାରେ
ମୁଗ୍‌ଧ ଦେହ ଆଉ ଖୋଜଇ
ଅଧର ଯେତେ ପାନ କଲେହେଁ ବିଳାସୀ
ଅଗ୍ନି ପୁଣି ଓଠେ ଜାଗଇ" (୧୩)
'ଜ୍ୟୋତ୍ସ୍ନାଭୋଗ'ରେ କବିଙ୍କ ଅନୁରାଗ ଆତ୍ମର ଉକ୍ତି—
"ଲତାସମ ନିଜଦେହ ଜଡ଼ାଇ ମୋ ଠାରେ
ତୁମେ ଶାନ୍ତକର ତୀବ୍ର ପ୍ରାଣ-ପିପାସାରେ
ସେହି ମିଳନ ପ୍ରକାଶ
ଦେଖିଛନ୍ତି ଖାଲି ଏହି ଚନ୍ଦ୍ରିକା ଆକାଶ" (୧୪)

ଏଥିରେ ଖଣ୍ଡଯୁଗୀୟ ମିଳନର ଚିତ୍ର ଉପଲବ୍‌ଧ ହେଲେହେଁ ସେହି ଆଳଙ୍କାରିକ ବାଗବିଳାସ ଅଥବା ଅଶ୍ଳୀଳ ଦୃଶ୍ୟର ଚିତ୍ର ଏଥିରେ ନଥିବାରୁ

---

୧୩—ମାନସିଂହ ଗ୍ରନ୍ଥାବଳୀ ୧ମ ଭାଗ ପୃ-୨୧୮
୧୪—ମାନସିଂହ ଗ୍ରନ୍ଥାବଳୀ ୧ମ ଭାଗ ପୃ-୨୦୬

କବିତାରେ ରସସୃଷ୍ଟି ଯେପରି ହୋଇଛି ରୁଚିପୂର୍ଣ୍ଣ ପାଠକ ପାଇଁ ତାହା ସେପରି ସୁନ୍ଦର ଉପଭୋଗ୍ୟ ହୋଇ ପାରିଛି ।

**ଉପେକ୍ଷିତା** 'ଉପେକ୍ଷିତା' ଖଣ୍ଡକାବ୍ୟରେ ନାୟିକା 'ସୂର୍ପଣଖା' ଆଶ୍ରମ ଯୁବକଙ୍କୁ ପ୍ରେମ ଆବେଦନ କରି ପ୍ରତ୍ୟାଖ୍ୟାତ ହୋଇଛି । ଏଥିରେ ନାୟିକା 'ସୂର୍ପଣଖା'ର ଅନୁରାଗ ଅତ୍ୟନ୍ତ ଉତ୍କଟ ହୋଇ ଥିଲେହେଁ ପ୍ରିୟ ସମାଗମ ହୋଇ ପାରି ନାହିଁ । ଏହି ଖଣ୍ଡ କାବ୍ୟଟିରେ ନାୟିକା ଠାରେ ଅଭିଳାଷ, ଚିନ୍ତା, ସ୍ମୃତି, ଗୁଣକଥନ, ଆଦି ଭାବ ଦେଖା ଦେଇଛି । କାବ୍ୟର ନାୟିକା ପରସ୍ତ୍ରୀ, ଆଲମ୍ବନ ବିଭାବ, ଚନ୍ଦ୍ରମା ମଳୟ ଆଦି ଉଦ୍ଦୀପନ ବିଭାବ ସହିତ କଟାକ୍ଷ ଭ୍ରୂଭଙ୍ଗୀ ଆଦି ଅନୁଭାବର ଉପସ୍ଥିତି ଯୋଗୁ ଏହି କାବ୍ୟରେ ବିପ୍ରଲମ୍ଭ ଶୃଙ୍ଗାର ମୁଖ୍ୟ ରସ ।

**କଙ୍କଣ**--'କଙ୍କଣ' ଖଣ୍ଡକାବ୍ୟରେ କବିନିଜେ ନାୟକ ଓ ରାଜଜେମା ନାୟିକା । ଏହାର ମୁଖ୍ୟ ପ୍ରତିପାଦିତ ରସ ଶୃଙ୍ଗାର ରସ । ଏଥିରେ ନାୟିକା ବିପ୍ରଲମ୍ଭ ଶୃଙ୍ଗାର ପାଇଁ ଆଗ୍ରହ ପ୍ରକାଶ କରିଛି । ତେଣୁ ନାୟିକାଠାରେ ଅଭିଳାଷ, ଚିନ୍ତା, ସ୍ମୃତି ଗୁଣକଥନ ଆଦି ଭାବ ଦେଖା ଦେଇଛି ।

ଅଭିଳାଷର ଉଦାହରଣ—

ତୁମରି ଚରଣ ତଳେ ଆଶ୍ରା ଯଦି ଲଭେ କେଉଁ ଦିନ
କୃତାର୍ଥ ବୋଲିବି ନିଜେ ରାଜକୁଳେ ଜନମଲଭିଣ (୧୫)

ଚିନ୍ତାର ଉଦାହରଣ—

"ପ୍ରଥମ ଜୀବନ ମୋର ଏ ଯେ ମୋର ଆଦ୍ୟ ଆକର୍ଷଣ
ଜାଣିନ ନଥିଲି କିବା ପ୍ରୀତି ହୁଏ ଏତେ କଦର୍ଥନ" (୧୬)

ଗୁଣକଥନର ଉଦାହରଣ—

ତୁମରି କବିତା କିନ୍ତୁ ଗୀତ ହେବ ଯୁଗଯୁଗାନ୍ତର
ତୁମଲାଗି ହେବ କ୍ଷୁବ୍ଧ ଲକ୍ଷ ଲକ୍ଷ ଲୋକର ଅନ୍ତର

---

୧୫—'କଙ୍କଣ' ମାନସିଂହ ଗ୍ରନ୍ଥାବଳୀ ୨ୟ ଭାଗ ପୃ-୩୦
୧୬—କଙ୍କଣ—ମାନସିଂହ ଗ୍ରନ୍ଥାବଳୀ ୨ୟ ଭାଗ ପୃ-୧୯

ଲକ୍ଷ ଲକ୍ଷ ବର୍ଷ ପରେ ଏହାଠାରୁ ଅଧିକ ସମ୍ମାନ
ପାଇବେ କି ରଜା, ଧର୍ମା, କେଉଁମାନେ ତୁମର ସମାନ (୧୭)

**ଶୁଭ ଦୃଷ୍ଟି**—'ଶୁଭ ଦୃଷ୍ଟି' କାବ୍ୟର ପ୍ରତିପାଦିତ ବିଷୟ ବସ୍ତୁ ନାଗ କନ୍ୟା ଉଲୁପୀର ଯୌବନାଗମ କାଳୀନ ଚିତ୍ତ ବିଭ୍ରମ ବର୍ଣ୍ଣନା । ଯୌବନର ଆଗମନ ସହିତ ପ୍ରକୃତିରେ ପୂର୍ବାରାଗ ସଂଗ୍ରର ପାଇଁ ପରିବେଶ ସୃଷ୍ଟି କରାଯାଇଛି । ମାନସ ପୁରୁଷକୁ ପାଇବା ପାଇଁ ଉଲୁପୀ ମନସାଜ ଅର୍ଚ୍ଚନା କରୁଛି । ଏହି ସମୟରେ ମଧ୍ୟମ ପାଣ୍ଡବ ଅର୍ଜ୍ଜୁନ ବନବାସ ଉଦ୍ଦେଶ୍ୟରେ ପ୍ରବେଶ କରିଛନ୍ତି । ନାଗରାଜାଙ୍କ ସାନୁମତିରେ ଉଲୁପୀ ସେବା କରୁଛି ଅର୍ଜ୍ଜୁନଙ୍କୁ । ସେମାନଙ୍କର ମିଳନ ହୋଇଛି । ମିଳନର ସଙ୍କେତ ମଧ୍ୟ ସେ ଛାଡ଼ିଦେଇଛନ୍ତି ଉଲୁପୀର ଗର୍ଭରେ । କ୍ରମେ ଅର୍ଜ୍ଜୁନଙ୍କର ପ୍ରତ୍ୟାବର୍ତ୍ତନ କାଳ ଉପସ୍ଥିତକୁ ବିରହ କାତର ହେଲେ ମଧ୍ୟ ବ୍ୟକ୍ତିଗତ ଲାଭ ଅପେକ୍ଷା ପ୍ରିୟତମଙ୍କର ଶୌର୍ଯ୍ୟ ବିଦୂଷୀ ଉଲୁପୀକୁ ଅଧିକ ସାନ୍ତ୍ୱନା ଦେଇଛି । ଶଂସିତ କାବ୍ୟରେ ଶୃଙ୍ଗାର ରସର ପ୍ରାଧାନ୍ୟ ରହିଛି । ନାୟକ ଅର୍ଜ୍ଜୁନ ଓ ନାୟିକା ନାଗକନ୍ୟା ଉଲୁପୀଙ୍କର ପରସ୍ପର ଅନୁରାଗରୁ ଏହି ରସର ଉତ୍ପତ୍ତି । ଏହି ରସର ସ୍ଥାୟୀ ଭାବ ରତି । ଏଠାରେ ସଂଯତ ଓ ସଫଳ ଭାବରେ ପରିବେଷିତ ହୋଇଛି ରସ ସଂଭୋଗ ଶୃଙ୍ଗାର ।

**କେମା**—"କେମା" କାବ୍ୟରେ ପଦ୍ମାବତୀର ବିବାହ ସହିତ ଶୃଙ୍ଗାର ରସ ସୃଷ୍ଟି ହୋଇଛି । ଏଥିରେ ଶୃଙ୍ଗାର ରସ ବର୍ଣ୍ଣନା ହେଲେ ମଧ୍ୟ ଏହାର ଅନ୍ତଃସ୍ୱର କରୁଣ । ପ୍ରଥମ ପର୍ବର ଉତ୍ତରାର୍ଦ୍ଧର ଛତିଶ ପଦ ପର୍ଯ୍ୟନ୍ତ କେମାର ଯୌବନ ସ୍ୱପ୍ନ ବର୍ଣ୍ଣିତ । ଏଥିରେ ଶୃଙ୍ଗାର ରସର ପୂର୍ବରାଗ ଦେଖାଦେଇଛି—

"ତରଳ ସେ ଯଉବନ ମିଛେ ଚିତ୍ତ ଉନମନ
ରକତେ କ୍ଷଣକୁ କ୍ଷଣ ଜୁଆର ଉଠି
ସ୍ୱପ୍ନ ଫୁଲ କୋଟି କୋଟି ଅନ୍ତରେ ଉଠଇ ଫୁଟି
ଚିତ୍ତେ ଲାଗି ରହେ ଗନ୍ଧ ବର୍ଣ୍ଣର ଛଟା" (୧୮)

୧୭—ତତ୍ରୈବ ପୃ-୬୩୦
୧୮—"କେମା" ମାନସିଂହ ଗ୍ରନ୍ଥାବଳୀ ୨ୟ ପୃ-୭୭-୨୭ ପଦ

ମଧ୍ୟ ପର୍ବର ପୂର୍ବାର୍ଦ୍ଧରେ ଜେମା ଓ ବଧୂ ଭ୍ରାତାର ପ୍ରଣୟ ବର୍ଣ୍ଣନା ବିପ୍ରଲମ୍ଭ ଶୃଙ୍ଗାର ରସ ସୃଷ୍ଟି କରିଛି,—

"ଥିଲା ବନ୍ଧ ଏ ଯାବତ ଜେମାର ମନ୍ଦିର
ଫିଟାଇଲା ବଧୂଭାଇ କ୍ରମେ ଧୀର ଧୀର
ଜେମା ଦେଖିଲା ତା'ପୁରେ
ଶୂନ୍ୟ ସବୁ କେହି ନାହିଁ ନିକଟେ ବା ଦୂରେ" (୧୯)

ଏଥିରେ ପ୍ରିୟା ସମାଗମ ହୋଇନାହିଁ । ମଧ୍ୟ ପର୍ବର ଉତ୍ତରାର୍ଦ୍ଧରେ ଶୃଙ୍ଗାର ରସର ବର୍ଣ୍ଣନା ରହିଛି—

କେବେ କେବେ ମିଶେ ନେହ କ୍ଷଣକ ଲାଗିରେ
ମିଶିଲେ ଚଞ୍ଚଳେ ଜେମା ଗୃହେଁ ସଙ୍ଗିମାରେ
ଏତେ ଜନ ମେଳେ କାହିଁ
ପ୍ରଥମ ପ୍ରଣୟ ଖାରୁ, ପ୍ରିୟେ ପାରେ ଗୃହିଁ । (୨୦)

**ସାଧବ ଝିଅ**—'ସାଧବ ଝିଅ' କାବ୍ୟର ପ୍ରଥମ ଏକାଦଶ ଭାଗ ଯାଏ ଶୃଙ୍ଗାର ରସର ବର୍ଣ୍ଣନା ହୋଇଛି । ଏହା ସମ୍ଭୋଗ ଶୃଙ୍ଗାର । ଏଥିରେ ପ୍ରିୟା ସମାଗମ ହୋଇଛି । ଶୃଙ୍ଗାର ରସର ସଫଳ ବର୍ଣ୍ଣନାରେ ଏହା ରସାଣିତ ।

"ଭୁଜେ ଭୁଜେ ଭିଡ଼ା ଭିଡ଼ି, ହୃଦେ ହୃଦ ଧରି
ଚରଣେ ଚରଣ ଥାପି ନିବିଡ଼ ସୋହାଗେ
ଚୁମ୍ବନ୍ତି ସେ ପରସ୍ପର ଜଗତ ବିସ୍ମରି,
ଗୁଡ଼ି ପୁଣି ଚୁମ୍ବଦ୍ୟନ୍ତି ଗାଢ଼ ଅନୁରାଗେ
ଇନ୍ଦ୍ରିୟେ ଇନ୍ଦ୍ରିୟ ହୁଏ ପ୍ରାଣ ବିନିମୟ
ମୁଖେ ନ ଆସଇ ଭାଷା, ଭାବେ ଯେ ହୃଦୟ" । (୨୧)

---

୧୯—ଓନ୍ନୈବ ପୃ-୯୭ ୫୧ ପଦ
୨୦—ଓନ୍ନୈବ ପୃ-୧୦୫-୨୭ ପଦ
୨୧—'ସାଧବ ଝିଅ' ମାନସିଂହ ଗ୍ରନ୍ଥାବଳୀ ମଧ୍ୟ ଖଣ୍ଡ ପୃ-୧୫୬ ।

ଏଥିରେ ମିଳନପାଇଁ ଦୂତୀପ୍ରେରଣ ଅଭିଳାଷ ସହିତ ବିଭାବର ଚିତ୍ରଣ ଅତି ମନୋହର ଏହି ବିପ୍ରୟୋଗାତ୍ମକ କାବ୍ୟର ପରିସମାପ୍ତିରେ ବିଚ୍ଛେଦର କରୁଣ ଚିତ୍ରଣ ସଫଳ ଭାବରେ ରୂପାୟିତ ।—

"କାହିଁରେ ଗଲୁ ପ୍ରିୟୁ ଦୋସର ପ୍ରାଣ ମୋର
ବଞ୍ଚିଛୁ, ମରିଛୁ କି ନଜାଣି
ମୁଁ ଅନ୍ଧ, ଅନ୍ଧକାରେ ହଜିଲି ଚିଜ ଖୋଜେ
ଆକୁଳେ କରୁଅଛି ଭ୍ରମଣି ।" (୨୨)

**କମଳାୟନ**—'କମଳାୟନ' କାବ୍ୟର ତୃତୀୟ ସର୍ଗରେ ଶୃଙ୍ଗାର ରସର ପୂର୍ବ ରାଗ ସୃଷ୍ଟି ହୋଇଛି । ଚତୁର୍ଥ ସର୍ଗରେ ସାମାନ୍ୟ ବିଚ୍ଛେଦ ହୋଇଛି । କମଳ କରୁଣାର ପଥ ବିନମୟରୁ ମନ ବିନମୟ ହୋଇଛି । ଚତୁର୍ଥ ସର୍ଗର ଶେଷ ପଦରେ ଏହାର ନମୁନା ମିଳେ ।

ସୁନ୍ଦର କମଳ/ଠିଆ ହେଲା ଜ୍ୟୋତ୍ସ୍ନା ତଳେ ଧୀରେ ଚନ୍ଦ୍ରକରି/
କରୁଣାର ତନୁ ଦେହେ, ଉଠାଇଲା ତାକୁ/ଜଡ଼ାଇଲା ନବ
ଦେହେ, ଲୁଚାଇ ଗ୍ରୀବାକୁ/ଧରି ତା'ର ପାଦୁଲରେ," (୨୩)

କମଳ ଗ୍ରାମକୁ ଫେରିଲା ପରେ ଗ୍ରାମର ସ୍ତ୍ରୀ ଓ କମଳ ମଧ୍ୟରେ ଶୃଙ୍ଗାର ଭାବ ଦେଖା ଦେଇଛି । ଗ୍ରାମ ସ୍ତ୍ରୀର ଆକର୍ଷଣ ସ୍ଥଳରେ କମଳର ବିକର୍ଷଣ ରସ ଭଙ୍ଗ କରାଇଛି । କମଳାୟନର ଉତ୍ତରାର୍ଦ୍ଧରେ "ବିଶ୍ୱାମିତ୍ର" ସହିତ ସେପିଲକୋର ମିଳନ ଏବଂ ବିଚ୍ଛେଦର ଚିତ୍ର ଅତି ହୃଦୟସ୍ପର୍ଶୀ । ଏଥିରେ ବିଚ୍ଛେଦର କାରୁଣ୍ୟ ସଫଳତାର ସହିତ କବି ରୂପାୟନ କରିଛନ୍ତି ।

**ଅନ୍ୟାନ୍ୟ**— ପୁଷ୍ପିତା ଗୀତିନାଟ୍ୟରେ ଶୃଙ୍ଗାର ରସର ଅବତାରଣା କରାଯାଇଛି । କିଶୋରୀର ଯୌବନାଗମ ସହିତ ସଖୀମାନଙ୍କର ଆଳାପରେ

---

୨୨—ଡେଙ୍ଗବୃଷ୍ଟି-୧୬୭
୨୩—ମାନସିଂହ ଗ୍ରନ୍ଥାବଳୀ ଦ୍ୱିତୀୟ ଭାଗ ପୃ-୨୧୯

ପୂର୍ବ ରାଗର ସୂଚନା ଦେଖାଯାଏ । ଏହାର ଉଦ୍ଦିପନ ବିଭାବ ବିଳିଷ୍ଟ ହେଲେ ମଧ୍ୟ ରସସଂଗ୍ରର ସ୍ପଷ୍ଟ ଭାବରେ ହୋଇପାରି ନାହିଁ । "ଅନ୍ୱେଷଣ" ଉପନ୍ୟାସରେ ଶୃଙ୍ଗାର ରସର ବିଭିନ୍ନ ସ୍ଥାନରେ ଆଭାସ ଥିଲେ ମଧ୍ୟ ସଫଳତା ଲାଭ କରି ପାରିନି । ନାଟକ ନାଟିକାରେ ଶୃଙ୍ଗାର ରସ ମଧ୍ୟ ବିଶେଷ ସଫଳ ନୁହେଁ ।

**ହାସ୍ୟ ରସ** :—ହାସ୍ୟ ରସର ସ୍ଥାୟୀ ଭାବ ହାସ । ହାସ୍ୟ ରସ ବିଷୟରେ କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ର କହନ୍ତି—

"ନଅଟା କାବ୍ୟରସ ଭିତରେ ହାସ୍ୟ ରସ ଗୋଟିଏବୋଲି ଧରାଗଲେ ମଧ୍ୟ ମୋ ମନେହୁଏ, ହାସ୍ୟ ରଚନା କରୁଣାଦି ଅନ୍ୟ ରସର ଏକ ଉତ୍ତର ଅବସ୍ଥା ଯାହାର ଆବିର୍ଭାବ ହୋଇଥାଏ ଗୋଟିଏ ଅକଳ୍ପିତ ଅନନୁମିତ ବିପରୀତ ସଂଘର୍ଷ ହୀନ ପଛେ ପଛେ । ସବୁ ରସର ଅନୁଭୂତି ମଣିଷକୁ ଆନନ୍ଦ ଓ ପ୍ରସାଦ ପରିବେଷଣ କରେ, ଉତ୍ତେଜନା କିମ୍ବା କରୁଣତାର ସଞ୍ଚାର କରେ । କିନ୍ତୁ ହାସ୍ୟ ରସ ଆନନ୍ଦ ସଙ୍ଗେ ସଙ୍ଗେ ବୁକୁ ଉପରୁ ଚିନ୍ତା, ଉଦ୍‌ବେଗ, ଅବସାଦର ଭାରି ଅପସାରଣ କରି ହୃଦୟକୁ କରିପାରେ ହାଲୁକା । ଏଥିପାଇଁ ହାସ୍ୟ ରସ ସ୍ୱାସ୍ଥ୍ୟପ୍ରଦ ବୋଲି ଲୋକେ କହନ୍ତି । ଯେ ଯେତେ ହସେ ସେ ସେତେ ସୁସ୍ଥ, ଶାରୀରିକ ଓ ମାନସିକ ଉଭୟରେ" । (୨୪)

ବାକ୍ ଭଙ୍ଗୀ ସହିତ ବିକୃତ ରୂପ ସନ୍ଦର୍ଶନ ଫଳରେ ଯେଉଁ ରସର ଉତ୍ପତ୍ତି ଘଟେ ତାହା ହାସ୍ୟ ରସ । ଭାଷାରେ କହିଲେ ଆନନ୍ଦର ପରିପୂର୍ଣ୍ଣ ବିକାଶହିଁ ହାସ୍ୟ ରସ । ଯେଉଁ ବ୍ୟକ୍ତିର ବିକୃତ ଆକାର, କଥାବାର୍ତ୍ତା ବେଶଭୂଷା ଦେଖି, ସହୃଦୟର ହୃଦୟରେ ହାସ୍ୟରସ ଉତ୍ପନ୍ନ ହୁଏ, ସେହି ବ୍ୟକ୍ତି ଆଲମ୍ବନ ବିଭାବ । ବିସ୍ଫାରିତ ନୟନ ଓ ବିକଶିତ ବଦନ ଏହାର ଅନୁଭାବ । ନିଦ୍ରା ଓ ଆଳସ୍ୟ ଆଦି ବ୍ୟଭିଚାରୀ ଭାବ, ହାସ୍ୟ ଛଅ ପ୍ରକାର ପକ୍ଷରେ ହାସ୍ୟ ରସ ବିଶୁଦ୍ଧ ଓ ବ୍ୟଙ୍ଗାତ୍ମକ ଭାବରେ ପ୍ରକାଶିତ ହୋଇଥାଏ । ଉଲ୍ଲିଖିତ ହାସ୍ୟରସ ବିଭାଗ ମଧ୍ୟରେ ଅପହସିତ ଆଦି ଏକ

---

୨୪—ହାସ୍ୟରସ—କାନ୍ତ ସାହିତ୍ୟମାଳା ପ୍ରଥମ ଖଣ୍ଡ ପୃ-୫୦୮

ବ୍ୟଙ୍ଗ ବା (Satire) ଉପଜୋକ୍ତିର । ଧାବାନୁଭୂତିଶୀଳ କବି ସମାଜର ଦୋଷ ଦୁର୍ବଳତାକୁ ଦେଖି ଜଣାଇବା ପାଇଁ ଯେଉଁ ବାକ୍ୟ ବାଣ ପ୍ରୟୋଗ କରେ ତାହା ଏହି ଗୀତରେ ଆତ୍ମ ପ୍ରକାଶ କରେ । ମାନସିଂହଙ୍କ ସୃଷ୍ଟିରେ ବିଶୁଦ୍ଧ ହାସ୍ୟ ରସର ଅଭାବ ଦେଖାଯାଏ । କାବ୍ୟ କବିତାରେ କୌଣସି ସ୍ଥାନରେ ହାସ୍ୟରସ ଦେଖାଇବା ପାଇଁ ସୁଯୋଗ ସୃଷ୍ଟି କରି ନାହାନ୍ତି । କେତେକ ସ୍ଥାନରେ ସାଧାରଣ ବ୍ୟଙ୍ଗ ସୃଷ୍ଟି କରିବା ପାଇଁ ଚେଷ୍ଟା କରିଛନ୍ତି । ଏଥିରେ ହାସ୍ୟରସର ଆଂଶିକ ବିକାଶମାତ୍ର ପରିଲକ୍ଷିତ ହୁଏ । "ସ୍ୱରାଜ୍ୟାଶ୍ରମ" କବିତା ସଂକଳନରେ ସାମାଜିକ ବିଦ୍ରୂପ କରି ହାସ୍ୟ ରସ ସୃଷ୍ଟିର ପ୍ରୟାସ ହୋଇଛି । ତାହା ସେତେ ବଳିଷ୍ଠ ନୁହେଁ । ପୁଷ୍ପିତା ଗୀତିନାଟ୍ୟରେ ହେମାର ଗୀତରେ ସାମାନ୍ୟ ହାସ୍ୟ ପାଇଁ ଚେଷ୍ଟା କରିଛନ୍ତି ।

"ତରିଟ ଭୁଲନା ନୟନ ମୂହଁ ଶ୍ରାବଣ ମେଘ
ବେଳ ବୁଡ଼ ପଦ୍ମ ଚହଟ ଆସ ଦେଖିବ ବେଗ" (୨୫)

'ବାରବାଟୀ' ନାଟକର ପ୍ରଥମ ଅଙ୍କ ଦ୍ୱିତୀୟ ଦୃଶ୍ୟରେ ବଳରାମ ସଦସ୍ୟଙ୍କ ଆଳାପରେ ହାସ୍ୟ ରସ ଦେଖା ଦେଇଛି । ଯେତେବେଳେ ଅନଙ୍ଗଭୀମ ଦେବ ବଙ୍ଗ ଦେଶକୁ ସନ୍ଦେଶ ( ଖବର ) ବୋଲି କହନ୍ତି, ସେତେବେଳେ ପେଟୁ ବୁଢ଼ା ବଳରାମ ସଦସ୍ୟ ମୁହଁରୁ ଲାଳ ବୋହି ପଡ଼େ । ଗୋଟିଏ ଘଡ଼ସନ୍ଧି ମୁହୂର୍ତ୍ତରେ ଯେତେବେଳେ ଅନ୍ୟମାନେ ଶତ୍ରୁ କଥା ଚିନ୍ତା କରୁଛନ୍ତି ବଳରାମ ସଦସ୍ୟ କହୁଛନ୍ତି "ସଦସ୍ୟ—ଏଁ ଏଁ ! ବଙ୍ଗ ଦେଶକୁ ସନ୍ଦେଶ ! ଆଜି ତେବେ ଭାଗ୍ୟର ଦିନ ! ବଙ୍ଗ ଦେଶରୁ ସଂଦେଶ ! ମିଷ୍ଟାନ୍ନ ରଚନାରେ ବଂଗ ଦେଶର ସମାନ ନାହିଁ । ଇତ୍ୟାଦି"

ସେହି ଦୃଶ୍ୟର ଶେଷରେ ସଦସ୍ୟଙ୍କ ସହିତ ପାଢ଼ିଯୋଶୀଙ୍କ ସଂଳାପ ହାସ୍ୟରସ ସୃଷ୍ଟି କରେ, ପେଟୁ ବଳରାମ ସଦସ୍ୟଙ୍କ ପ୍ରୌଢ଼ି "ପାଟଯୋଶୀ ( ସଦସ୍ୟଙ୍କ ପେଟ ଆଉଁସି ) କିନ୍ତୁ ସାବଧାନ ସଦସ୍ୟେ ମୁସଲମାନର ଚର୍ବିଖିଆ ପେଟ ଓ ଭୁମର ଦାଅ ଛେନା ଖିଆ ପେଟ ସନ୍ଧି

---

୨୫—ମାନସିଂହ ଗ୍ରନ୍ଥାବଳୀ ଦ୍ୱିତୀୟ ଭାଗ ପୃ-୪୭୯

ଠେସା ଠେସି ହୋଇଯାଏ ତେବେ ଯୁଦ୍ଧ ଆଗରୁ ତୁମର ତଳଭି ପ୍ରାପ୍ତି ଓ ପଞ୍ଚଭି ପ୍ରାପ୍ତି ହୋଇଯାଇପାରେ ।" (୨୭)

ସେହିପରି ପ୍ରଥମ ଅଙ୍କ ଚତୁର୍ଥ ଦୃଶ୍ୟରେ ବଳରାମ ସଦସ୍ୟଙ୍କ ସଂଳାପ ହାସ୍ୟରସ ସୃଷ୍ଟି କରେ । ତୃତୀୟ ଦୃଶ୍ୟ ଅଙ୍କର ଦ୍ୱିତୀୟ ଦୃଶ୍ୟ ମୁସଲମାନ ଶିବିର ହାସ୍ୟରସ ଉଦ୍ରେକ କରେ । ସେହି ଅଙ୍କର ସପ୍ତମ ଦୃଶ୍ୟରେ ସିରାଜ ଖାଁ ଓ ସେନାପତିଙ୍କ ସଂଳାପ ହାସ୍ୟରସ ସୃଷ୍ଟିରେ ସାହାଯ୍ୟ କରେ । 'ବୁଦ୍ଧ' ନାଟକର ପ୍ରଥମଅଙ୍କ ପଞ୍ଚମ ଦୃଶ୍ୟରେ ଛନ୍ଦକ ଉପାଳୀର ସଂଳାପ ହାସ୍ୟରସର ଏକ ସାମାନ୍ୟତମ ନମୁନା

**କରୁଣରସ**—ପ୍ରିୟ ବା ଆତ୍ମୀୟ ସ୍ୱଜନର ବିରହ ବା ବିନାଶ ତଥା ଅର୍ଥହାନି ଯୋଗୁଁ କରୁଣ ରସ ଜାତ ହୋଇଥାଏ । ଶୋକ କରୁଣ ରସର ସ୍ଥାୟୀ ଭାବ ଭବଭୂତି କରୁଣ ରସକୁ ସବୁ ରସର ମୂଳ ଭାବରେ ଗ୍ରହଣ କରିଛନ୍ତି । ଉତ୍ତର ରାମ ଚରିତରେ ଉଲ୍ଲିଖିତ ହୋଇଛି ।

"ଏକୋରସ କରୁଣ ଏବ ନିମିତ୍ତ ଭେଦାତ୍
ଭିନ୍ନଃ ପ୍ରଥକ୍ ପୃଥ ଗ୍ରିବାଶ୍ରୟତେ ବିବର୍ତ୍ତନା
ଆବର୍ତ୍ତ ବୁଦ୍ବୁଦ ତରଙ୍ଗ ମୟାନ ବିକାରାନ୍
ଅମ୍ଭୋଯଥା ସଲିଳମେବତୁ ତତ୍ ସମଗ୍ରମ୍"

ଅର୍ଥାତ୍ କରୁଣ ରସରୁ ହିଁ ସବୁ ରସର ଉତ୍ପତ୍ତି ହୋଇଛି । ସେହି କରୁଣ ରସ ବିଭିନ୍ନ ପରିସ୍ଥିତିରେ ତଥା ଆଶ୍ରୟ ଭେଦରେ, ଶୃଙ୍ଗାର ବୀର, ଆଦି ଅନ୍ୟାନ୍ୟ ରସରେ ପରିଣତ ହୋଇଥାଏ । ଏହା ସେ ତାଙ୍କ ନାଟକରେ ପରିସ୍ଫୁଟ କରାଇଛନ୍ତି । ଆଦି କବି ବାଲ୍ମୀକଙ୍କ ଆଦି ଶ୍ଳୋକ—

"ମା ନିଷାଦ ପ୍ରତିଷ୍ଠା ତ୍ୱାମଗମ ଶାଶ୍ୱତୀ ସମାଃ
ଯତ୍ କ୍ରୌଞ୍ଚମିଥୁନାଦେକ ମବଧି କାମମୋହିତମ୍" ।

---

୨୭—ତତ୍ରୈବ ପୃ-୬୮

ମୂଳରେ କରୁଣ ରସର ସ୍ଥାୟୀ ଭାବ ଶୋକ ହିଁ ବିଦ୍ୟମାନ, ଶୋଚ୍ୟ ବସ୍ତୁ ବା ବ୍ୟକ୍ତି ଏହି ରସର ଆଲମ୍ବନ ବିଭାବ । ଯେଉଁ ପରିବେଶ ବ୍ୟକ୍ତି ବିଶେଷଙ୍କ ମନରେ ଶୋକ ଭାବ ଜାତ କରାଇଥାଏ, ତାହା ଉଦ୍ଦୀପନ ବିଭାବ । କ୍ରନ୍ଦନ ନିଦ୍ରା ଆଦି ଅନୁଭାବ ଓ ମୋହ ଉନ୍ମାଦ ଆଦି ସଂଚାରୀ ଭାବ ।

"ଜେମା" କାବ୍ୟରେ ଜେମାର ବଡ଼ ଭଉଣୀ ପଦ୍ମାବତୀର ବିବାହ ପରେ ସ୍ୱାମୀ ସଙ୍ଗ କରି ପାରିନି । ତାର ସ୍ୱାମୀ ପର ଦାରାସକ୍ତ । ଗୃହବର୍ଷି ଏହିପରି ସହିଲା ପରେ ସେ ପ୍ରାଣତ୍ୟାଗ କରିଛି । ପ୍ରଥମ ସର୍ଗର ଉତ୍ତରାର୍ଦ୍ଧରେ କରୁଣ ରସ ପରିବେଷିତ ।

କାନ୍ଦେ ଜେମା ଦୁଃଖେ ବସି ଦେଖିନି କେହି ବା ହସି
କହିବାର କଥା କେହି ଦେଖିନି ପୁଣି
ବିଳାପ ହାସ୍ୟ ମଝିରେ ଗୁରୁ ଯେ ବ୍ୟଥା ରୁଧିରେ
ମାରିଣ କାଟିଲା କାଳ କରମ ଗୁଣି
କାଠ ଗର୍ଭାଳତିକା ପରି
ଚଳେ ବାହ୍ୟେ ରୂପ, ଅନ୍ତେ ଲୁଞ୍ଚିନା ଧରି । (୨୭)

"ଜେମା କାବ୍ୟର ଉପସଂହାର ଅତୀବ କରୁଣ । ଏଠାରେ କବି କରୁଣ ରସ ପରିବେଷଣରେ ଚମତ୍କାରିତା ଦେଖାଇଛନ୍ତି । ଉଦାହରଣ ଭାବରେ ୩୧, ୩୩, ୩୬, ୩୯, ୪୨, ୪୩ ପଦକୁ ନିଆଯାଇପାରେ । ଦୃଷ୍ଟାନ୍ତ ସ୍ୱରୂପ ୩୩ ପଦ ।

ନମେ ଶୋକାକୁଳେ ତନୁ କୂଳେ କୂଳେ
ଖସିଲା ଲାବଣ୍ୟ ଜୁଆର

---

୨୭— ମାନସିଂହ ଗ୍ରନ୍ଥାବଳୀ ୨ୟ ଖଣ୍ଡ ପୃ- [illegible]

ବ୍ୟର୍ଥରେ ଉନ୍ମୁଖି ବକ୍ଷ ଗଲା ସୁଖି
ରଖି ଗର୍ଭେ ଶିଶୁ ଆହାର

ଗଣ୍ଡ ଫଳକ
ଅଚୁମ୍ବେ ଛୁଡ଼ିଲା ଝଂଟକ (୨୮)

ସାଧବ ଝିଅ କାବ୍ୟରେ ଶେଷ ଦୁଇ ପରିଚ୍ଛେଦରେ ସାଧବ ପୁଅର ହତ୍ୟା ଲୋକଦଳବନ୍ଦୀ ସାଧବ କନ୍ୟାର ଅପହରଣ ଓ ବିଳାପ କରୁଣ ପରିବେଶ ସୃଷ୍ଟି କରେ —

ମାଲୁଣୀଟା କାନ୍ଦେ ଉଡ଼େ ପୁଷ୍କରଣୀ ଘାଟେ
ଶୁଣି ଠିଆ ହେଉଛନ୍ତି ଯିବା ଲୋକ ବାଟେ
କାଣି କୁଜ ଘର କରି ରହନ୍ତି ସୁଖରେ
ସୁନା କାଠି ମୋର ମଲା ଏତେ କଲବଲେ" (୨୯)

"ପୂଜାରିଣୀ" ନାଟିକାର ପଞ୍ଚମ ଦୃଶ୍ୟରେ ଲକ୍ଷ୍ମୀର ବିୟୋଗ କରୁଣ ରସ ସଞ୍ଚାର କରେ । "ନଷ୍ଟନୀଡ଼" ନାଟକଟି ବିୟୋଗାତ୍ମକ ଓ କରୁଣ ରସାଶ୍ରିତ, ନାୟକ ପୂର୍ଣ୍ଣ ଓ ନାୟିକା ମାଧବୀ ଜୀବନରେ ଆଦୌ ସୁଖ ପାଇନାହାନ୍ତି । ଦୁଃଖରେ ଗତ କରି ଶେଷରେ ନାୟିକା ଆତ୍ମହତ୍ୟା କରିଛି ଓ ନାୟକ ଦେଶାନ୍ତର ହୋଇଛି । "ବାରବାର୍ତ୍ତା" ନାଟକରେ ଦ୍ୱିତୀୟ ଅଙ୍କ ଷଷ୍ଠ ଦୃଶ୍ୟରେ ପାଇକର କ୍ରନ୍ଦନ ଗୀତରେ କରୁଣ ରସ ପରିବେଷିତ ।

"କମଳାୟନ" କାବ୍ୟରେ କରୁଣ ରସ ପାଇଁ ବିଭିନ୍ନ ପରିବେଶ ଥିଲେ ହେଁ ରସ ସୃଷ୍ଟି ସଫଳ ଭାବରେ ହୋଇ ପାରିନି । କରୁଣାର ମୃତ୍ୟୁ କମଳାର ମୃତ୍ୟୁ ତଥା ଅନ୍ୟାନ୍ୟ ପରିବେଶ ଥାଇ ବି କବି ଗତିଶୀଳ କାହାଣୀର ଶୀଘ୍ର ଉପସ୍ଥାପନା ପାଇଁ କରୁଣ ପରିବେଶକୁ ଏଡ଼ାଇ ଦେଇଛନ୍ତି ।

---

୨୮—ମାନସିଂହ ଗ୍ରନ୍ଥାବଳୀ ୨ୟ ଖଣ୍ଡ ପୃ-୧୨୩

୨୯—ସାଧବ ଝିଅ ମାନସିଂହ ଗ୍ରନ୍ଥାବଳୀ ପୃ—୧୭୫

"ଶାସନ ଚକ୍ର" ଏକାଙ୍କିକାରେ କବି ଜୀବନ ବନ୍ଧୁଙ୍କ ମୃତ୍ୟୁରେ ଶୋକ, "ହେମ ପୁଷ୍କର" "ହଂସହତ୍ୟା", "ଶୈଳ ମୃତ୍ୟୁ", 'ମହାଦାନ', "ବାପୁତର୍ପଣ" ର "ନାହାନ୍ତି ଗାନ୍ଧିଜୀ", "ପ୍ରାଣର ବାପୁଜୀ", "ବିଳପୁଛି କାହିଁପାଇଁ", "ପାପ ନିବାପିତ", "ଅଗଷ୍ଟ ପନ୍ଦର ୧୯୪୮"ରେ ରସ କରୁଣ । ଏହା ସହିତ "ମାଟିବାଣୀ" କବିତା ସଂକଳନର "ମହାନଦୀରେ ଜ୍ୟୋସ୍ନା ବିହାର", "ରେଙ୍ଗୁନ ଚିଠି", "ଘରପଣା" "ଗୋପ ପ୍ରୟାଣ", "ତଅପୋଇ ବିଳାପ", "ଅନୂଢ଼ା", "ବନ୍ଧୁବିୟୋଗ", "ହେ ବନ୍ଧୁ" କବିତାରେ ବନ୍ଧୁ ଭଗବତୀ ପାଣିଗ୍ରାହୀଙ୍କର ଅକାଳ ବିୟୋଗରେ କବିଙ୍କ ଶୋକୋଚ୍ଛ୍ୱାସ ପରିପ୍ରକାଶ ଲଭ କରିଛି ।

"ସ୍ମୃତିର ଛିଟିକ ପାଏ ହେ ବନ୍ଧୁ ପରମ
ଟଳମଳ ହୁଏ ଏକ ଅଶ୍ରୁବିନ୍ଦୁ ମମ" (୩୦)

"ଜୀବନ ଚିତା"ର "ଆତତାୟୀ"ର ଦ୍ୱିତୀୟ ତୃତୀୟ ପଦ, 'ତୀର୍ଥଯାତ୍ରୀ', 'ହାତୀ ବାନ୍ଧି' ସ୍ୱରାଜ୍ୟାଶ୍ରମ, ସଂକଳନର "ମାଟିଆ ବୁରୁଜ"ରେ ଓଡ଼ିଆମାନଙ୍କ 'ଐତିହାସିକ କୀର୍ତ୍ତି' 'ଯଦୁ ସ୍ୱାଇଁର ଗାଥା' କବିତାରେ କରୁଣ ରସର ସ୍ୱର ବିଳାସି ।

କାବ୍ୟ କବିତା ନାଟକର କରୁଣ ରସ ଅପେକ୍ଷା 'ମାଟିବାଣୀ'ର 'ମହାନଦୀରେ ଜ୍ୟୋସ୍ନା ବିହାର" କବିତାରେ ଅନ୍ତଃସ୍ୱର କରୁଣ ଓଡ଼ିଶାର ଅତୀତ ଗୌରବ ଗୁଳିଯାଇଛି । ସେ ରାଜା ଗୁଳିଯାଇଛନ୍ତି, ତା'ର ଦୁର୍ଗ ନାହିଁ । ତା ସଙ୍ଗେ ସଙ୍ଗେ ଏ ଜାତିର ବୀର ହୃଦୟ ବି ଗୁଳାଯାଇଛି । ଯେଉଁ ଜାତି ସମର ଭୂଇଁରେ ଜୀବନର ମାୟା କ'ଣ ଜାଣି ନ ଥିଲା, ଯେଉଁ ଜାତିର ଦୁର୍ଗର ଗ୍ରୀବା ତଟିନୀ ଜଳରେ ନିଶା ଖିଞ୍ଚି ଆଣି ଧାନା ଚକୋରର ବିଳାପ ସୃଷ୍ଟି କରୁଥିଲା ସେ ଦୁର୍ଗ ଆଉ ଉଠିବନି—

---

୩୦—"ହେ ବନ୍ଧୁ" 'ମାଟିବାଣୀ' ମାୟାଧର ମାନସିଂହ ଗ୍ରନ୍ଥାବଳୀ ୧ମ ଖଣ୍ଡ ପୃ—୩୬୭

"ଦୁର୍ଗ ଆଉ ଉଠିବନି ? ରାଜାର ବୋଇତ
ନ ଫେରିବ ମୁକ୍ତା ଧରି ଏ ଚଟିମା ବାହି,
ନଗରର ବଧୂ ଯେତେ ମଙ୍ଗଳ ସଙ୍ଗୀତ,
ନ ବନ୍ଦିବେ ତା'ର କେବେ, ମଧୁ କଣ୍ଠେ ଗାଇ ?" (୩୧)

ଏ କବିତାରେ ମାନସିଂହଙ୍କର ହୃଦୟର ବ୍ୟଥା ସହିତ ଉତ୍କଳ ଜନନୀର କରୁଣ ବିଳାପ ପ୍ରତିଫଳିତ, ଯେଉଁ କରୁଣ ରସ ପାଠକର ହୃଦୟକୁ ଛୁଇଁଯାଏ ।

**ରୌଦ୍ର ରସ**—ରୌଦ୍ରରସର ସ୍ଥାୟୀ ଭାବ କ୍ରୋଧ । ପିତୃ ମାତୃ ପ୍ରଭୃତି ଗୁରୁଜନ ନିନ୍ଦା, ବିପକ୍ଷ ଦଳ ଦ୍ୱାରା ଅପମାନ, ଜାତି, ଦେଶ, ଧର୍ମର ଅପମାନ ଭାବର ପ୍ରତିଶୋଧ ଭାବ ଜାଗ୍ରତ ହୋଇ ଉଠିଲେ ସେଠାରେ ରୌଦ୍ର ରସ ଅଭିବ୍ୟକ୍ତ ହୁଏ । ଆଲମ୍ବନ ବିଭାବ—ରାକ୍ଷସ, ଅପରାଧୀ, ଶତ୍ରୁ ଓ ବିପକ୍ଷ ଦଳର ବ୍ୟକ୍ତି । ଉଦ୍ଦୀପନ—ତତ୍‌କୃତ ଅପରାଧାଦି । କ୍ରୋଧ ଧର୍ଷଣ, ଅବମାନନା, ମୁଖମଣ୍ଡଳର ଅରୁଣିମା, ଚକ୍ଷୁର ରକ୍ତ-ବର୍ଣ୍ଣ, ଦାନ୍ତ କାମୁଡ଼ିବା, ଗର୍ଜ୍ଜନ କରିବା, ଏହି ରସର ଅନୁଭବ । ବ୍ୟଭିଚାରୀ ଭାବ—ଉତ୍ସାହ, ବେଗ, ଅମର୍ଷ ଇତ୍ୟାଦି ।

"ମାଟିର ମହାତ୍ମ୍ୟ" କବିତାରେ କୃଷକର କ୍ରୋଧ ପ୍ରକାଶ ପାଇଛି । "ହେମପୁଷ୍ପ" କବିତା ଗୁଚ୍ଛର "କୁଳଟା ରାଧା" କବିତାରେ ଉପୁଙ୍କର ରାତିରେ ରାଧା ମୁରଲୀ ଧ୍ୱନିରେ ଆକୃଷ୍ଟ ହୋଇ ଘର ଛାଡ଼ିଛି । ଜଟିଳା ବୋହୂକୁ ନ ପାଇ ଦ୍ୱାର ମୁହଁରେ ଜଗି ବସିଛି । ସାଙ୍ଗରେ କୁଟିଳା—

ନିକଟେ ନ ଆସୁ ଦେଖି ବାଘୁଣୀ ପରି
ଧାଇଁଲା କୁଟିଳା ପଛେ ଲଗୁଡ଼ ଧରି ।

---

୩୧—ମାନସିଂହ ଗ୍ରନ୍ଥାବଳୀ ୧ମ ଭାଗ ପୃ-୩୮୫

ଜଟିଳା ଚଳଇ ଗୋପ ଗୋପିନୀ ମେଳେ,
"ଆସିବାକୁ ଥିଲ ତାକୁ ଏତକବେଳେ" ?
"ପଣତ ଓଟାର ବୁଢ଼ୀ ଆଣିଲ ଭିଡ଼ି
ପଛରେ ନଣନ୍ଦ ନାନା କଥା ଫୋପାଡ଼ି (୩୨)

'ବାପୁ' ତର୍ପଣ'ର 'ମହାଯାତ୍ରା' 'ଅଗଷ୍ଟ ପନ୍ଦର ୧୯୪୮' 'ଜୀବନଚିତା'ର 'ବନ୍ଧନ' ବିଶୃଙ୍ଖଳ ସୃଷ୍ଟିରେ ରୌଦ୍ର ରସ ପରିବେଶିତ। 'କମଳାୟନ' କାବ୍ୟରେ ରୌଦ୍ରରସ ପରିବେଷଣ ହୋଇଥିଲେ ମଧ୍ୟ, ସେତେ ବଳିଷ୍ଠ ହୋଇ ପାରିନାହିଁ । 'ସାଧବଝିଅ' କାବ୍ୟର ଦ୍ୱାଦଶ ଅଂଶରେ ପାଇବ ସର୍ଦ୍ଦାରମାନଙ୍କ ଚିତ୍କାର ଓ କ୍ରୋଧଭାବ ଚମତ୍କାର ରୌଦ୍ର ରସର ସୂଚନା ଦିଏ । 'ନଷ୍ଟ ନୀଡ଼' ନାଟକର ତୃତୀୟ ଅଙ୍କ ପ୍ରଥମ ଦୃଶ୍ୟରେ କମଳୀର କ୍ରୋଧ ଚତୁର୍ଥ ଅଙ୍କ ଦ୍ୱିତୀୟ ଦୃଶ୍ୟରେ କୁମୁଦର କ୍ରୋଧ, 'ବାରବାଟୀ' ନାଟକର ଦ୍ୱିତୀୟ ଅଙ୍କ ତୃତୀୟ ଦୃଶ୍ୟରେ ବ୍ରାହ୍ମଣ ବ୍ରାହ୍ମଣୀ ସଂଳାପରେ ରୌଦ୍ରରସ ବିଦ୍ୟମାନ ।

ମାନସିଂହ ରୌଦ୍ର ରସ ପରିବେଷଣ ପାଇଁ ବହୁକ୍ଷେତ୍ର ପାଇଥିଲେହେଁ ସେ ରୌଦ୍ର ରସର ପକ୍ଷପାତୀ ନ ଥିବାରୁ ଏ ରସ ବହୁ ପରିମାଣରେ କାବ୍ୟରେ ସ୍ଥାନ ପାଇନାହିଁ ।

**ବୀର ରସ**—ଉତ୍ସାହ ବୀର ରସର ସ୍ଥାୟୀ ଭାବ । ପ୍ରତିପକ୍ଷର ଔଦ୍ଧତ୍ୟ ଦେଖି ବା ଶୁଣି ମନରେ ବୀରତ୍ୱପୂର୍ଣ୍ଣ ଉତ୍ସାହ ଜାତହେଲେ ତାହା ବୀର ରସରେ ପରିଣତ ହୁଏ । ଧର୍ମ ବୀର, ଦାନବୀର, ଯୁଦ୍ଧବୀର, ଦୟାବୀର, ଭେଦରେ ଏହା ଚାରି ପ୍ରକାର ଯେଉଁ ବସ୍ତୁ ବା ଦୃଶ୍ୟ ବୀରତ୍ୱପୂର୍ଣ୍ଣ ଭାବ ସୃଷ୍ଟି କରେ ତାହା ଆଲମ୍ବନ ବିଭାବ । ସେହିପରି ବ୍ୟକ୍ତିର କ୍ରିୟା କଳାପ ଉଦ୍ଦୀପନ ବିଭାବ । ଯୁଦ୍ଧର ସହାୟକ ଅସ୍ତ୍ରାଦିର ଅନ୍ୱେଷଣ ଏହାର ଅନୁଭବ ଓ ଧୈର୍ଯ୍ୟ ମତି ଗର୍ବ, ସ୍ମୃତି, ତର୍କ ରୋମାଞ୍ଚାଦି ସଞ୍ଚାରୀ ଭାବ ।

---

୩୨—'କୁଳଟା ରାଧା' ହେମ ପୁଷ୍ପ ମାନସିଂହ ଗ୍ରନ୍ଥାବଳୀ ୧ମ ଖଣ୍ଡ ପୃ-୧୬୫

'ମାଟିବାଣୀ' କବିତା ସଙ୍କଳନରେ 'ବାରବାଟୀ'ରେ କବିଙ୍କର ଦେଶପ୍ରେମ ବୀର ରସରେ ପର୍ଯ୍ୟବେଷିତ । ଏଠାରେ ବୀରରସ ପରି ଦୃଶ୍ୟମାନ ।

ତୋହର କଟାକ୍ଷ ପାତେ କୃଷକ ବାହିନୀ
ତାଳ ତରବାରୀ ଧରଣ ବାହାରି, କେତେ ରାଜ ଅଧିରାଜେ
ଅନାୟାସେ ନୁଆଁଇଲେ ତଳେ " (୩୩)

'ଉତ୍ତିଷ୍ଠ ଉତ୍କଳ' 'ବନ୍ଦେ ଉତ୍କଳ ଜନନୀ' 'ସ୍ୱରାଜ୍ୟାଶ୍ରମ'ର 'ମାଟିଆ ବୁରଜ'ରେ 'ଓଡ଼ିଆମାନଙ୍କ ଐତିହାସିକ କୀର୍ତ୍ତି' କବିତାର ଚତୁର୍ଥ ଅଂଶରେ ଓଡ଼ିଆ ଜାତିକୁ ଲାଞ୍ଛନା ଛଳରେ ଉଦ୍‌ବୋଧନ ଦେଇଛନ୍ତି । 'କିଶୋର କବିତା'ର 'ଶୁକ ଦେଇ' କବିତାରେ ବୀର ରସ ସୃଷ୍ଟି ହୋଇଛି । ବାରବାଟୀ-ନାଟକର ଦ୍ୱିତୀୟ ଅଙ୍କ ସପ୍ତମ ଦୃଶ୍ୟରେ କାଞ୍ଚନ ପ୍ରଭାର ସଂଳାପ, ତୃତୀୟ ଅଙ୍କ ପ୍ରଥମ ଦୃଶ୍ୟରେ ଜଳେଶ୍ୱର ଦୁର୍ଗର ଦଳବେହେରା ସାମନ୍ତ ତଥା ବିକ୍ରମଭଞ୍ଜଙ୍କର ସଂଳାପରେ ବୀର ରସ ବିଦ୍ୟମାନ । ବୀରରସର ଉଦାହରଣ ଭାବରେ 'ନଷ୍ଟନୀଡ଼'ର 'ଶଙ୍କର ଶିବ ଭଗବାନ'ର ଚତୁର୍ଥ ପଦ ନିଆଯାଇପାରେ ।

"ଡମ୍ବରୁ ତବ ବଜାଅ ତ୍ରିଶୂଳ ପାଣି ହେ
ଜଳାଅ ତୃତୀୟ ନୟନ
ମିଥ୍ୟା ସ୍ୱାର୍ଥ ଭୟ କରେ ଧରଅ ହାଣି ହେ
ଶେଷ ହେଉ ଜଡ଼ ଶୟନ
ଭସ୍ମରୁ ହେଉ ମୋ ଜାତିର ନବ ଅଭ୍ୟୁଦୟ, ନବ ଅଭ୍ୟୁଦୟ
ଶଙ୍କର ଶିବ ଭଗବାନ" (୩୪)

କମଳାୟନ କାବ୍ୟରେ ଦେଶାତ୍ମବୋଧ ବିଶ୍ୱମୈତ୍ରୀ ଦେଖା ଦେଇଛି । ମାତ୍ର ବୀରରସ ସୃଷ୍ଟି ହୋଇ ପାରିନି ।

**ଭୟାନକ ରସ**—ଯେଉଁ ବସ୍ତୁ ଦର୍ଶନରେ ବା ଯେଉଁ ଘଟଣା ଶ୍ରବଣରେ ମନରେ ଭୟ ସଞ୍ଚାର ହୁଏ । ତାହା ସ୍ଥାୟୀ ଭାବ । ଏହାର

୩୩—ମାନସିଂହ ଗ୍ରନ୍ଥାବଳୀ ପ୍ରଥମ ଭାଗ ପୃ-୩୧୯
୩୪—'ମାନସିଂହ ଗ୍ରନ୍ଥାବଳୀ' ୨ୟ ଖଣ୍ଡ ପୃ-୫୪୭

ଉତ୍ପତ୍ତି ଅନୁକୂଳ ବିଭାବାଦିର ସଂଯୋଗରୁ । ଯାହାଠାରୁ ଭୟ ଜାତ ହୁଏ ସେ ବ୍ୟକ୍ତି ବା ବସ୍ତୁ ଆଲମ୍ବନ ବିଭାବ । ତାହାର ଚେଷ୍ଟାଦି ଉଦ୍ଦୀପନ ବିଭାବ । ପ୍ରଳୟ, ରୋମାଞ୍ଚ, ସ୍ୱେଦ, କମ୍ପ, ଏହାର ଅନୁଭାବ, ଜୁଗୁପ୍‌ସା, ଆବେଗ, ସମ୍ମୋହ, ତ୍ରାସ, ଗ୍ଲାନି ଏହାର ବ୍ୟଭିଚାରୀ ଭାବ ।

ମାନସିଂହ ବିଶେଷ ଭୟାନକ ରସ ସୃଷ୍ଟି କରିପାରି ନାହାନ୍ତି । କେବଳ 'ପ୍ରେମପୁଷ୍ପ'ର 'ଘନ ଶର୍ବରୀ' 'କୁଳଟା ରାଧା' ଓ 'ହେମଶସ୍ୟ'ର 'ଶ୍ରାବଣ ଅଭିସାର'ରେ ଭୟାନକ ରସର ଆଭାସ ମିଳେ ।

"ଅମ୍ବୁଜାବୃତ, ଅମ୍ବରାଙ୍ଗନ ଲୁପ୍ତ ତାରକା ଯାମିନୀ
ସଘନ ବରଷଣ, ବଜ୍ର ରଣଝଣ ନୃତ୍ୟ ଚଞ୍ଚଳ ଦାମିନୀ (୩୫)

**ବୀଭତ୍ସ ରସ**—କୌଣସି ଘୃଣାଜନକ ବା ଜୁଗୁପ୍‌ସାବ୍ୟଞ୍ଜକ ଦୃଶ୍ୟ ଦେଖିଲେ ବା ଏପରି ବର୍ଣ୍ଣନା ଶୁଣିଲେ ମନରେ ଯେଉଁ ଭାବ ସୃଷ୍ଟି ହୁଏ ତାହା ବୀଭତ୍ସରସ । ଏହି ଘୃଣା ବା ଜୁଗୁପ୍‌ସା ବୀଭତ୍ସ ରସର ସ୍ଥାୟୀ ଭାବ । ଦୁର୍ଗନ୍ଧଯୁକ୍ତ ମାଂସର ରୁଧିର ଚର୍ବି ଆଦି ଏହାର ଆଲମ୍ବନ ବିଭାବ ଓ ଏଥିରେ କୃମି ପତନ ଆଦି ଉଦ୍ଦୀପନ ବିଭାବ । ମୁଖ ବିକୃତି ନାସିକା କୁଞ୍ଚନ ଆଦି ଏହାର ଅନୁଭାବ । ମୋହ, ଅପସ୍ମାର, ଆବେଗ ଆଦି ବ୍ୟଭିଚାରୀ ଭାବ ।

'ବାପୁ ତର୍ପଣ'ରେ 'ହଇ ଗୁଡ଼ିଏ ତାରେ' କବିତାରେ ଘାତକ ପ୍ରତି ଘୃଣା ବ୍ୟଞ୍ଜକ ସ୍ୱରରେ କବି ବର୍ଣ୍ଣନା କରିଛନ୍ତି । ଏହା ଘୃଣାରୁ ଜାତ ରସ ବୀଭତ୍ସ । ଦ୍ୱିତୀୟ ବିଶ୍ୱଯୁଦ୍ଧରେ ଯେଉଁ ବୀଭତ୍ସ ତାଣ୍ଡବ ଲୀଳା ଦେଖାଦେଲା ଏଥିରେ ସମଗ୍ର ପୃଥିବୀ ଆତଙ୍କିତ ହେବା ସଙ୍ଗେ ସଙ୍ଗେ ଘୃଣାରେ ନାସିକା କୁଞ୍ଚନ କଲା । କବିଙ୍କର 'ପାନ୍ଥଗାଥା'ରେ ସେହି ବିଷୟ ଲିଖିତ ।

'ଜୀବନ ଚିତା'ର ଜୀବନ କବିତାରେ ଏଇ କଳୁଷିତ ତାପମୟ ଜୀବନ ପ୍ରତି ଘୃଣା ଦେଖା ଦେଇଛି । ଆତତାୟୀ କବିତାର ପ୍ରଥମ ଅଂଶରେ

---

୩୫—'ମାନସିଂହ ଗ୍ରନ୍ଥାବଳୀ' ୧ମ ଭାଗ ପୃ-୧୪୭

ଓ ଶେଷରେ ମୃତ୍ୟୁର ବୀଭତ୍ସ ଲୀଳା ପାଠକ ପ୍ରାଣକୁ ଆପ୍ଳୁତ କରେ। ମାନବ ସଭ୍ୟତା ପ୍ରତି ପାଠକର ସ୍ୱତଃ ଏକ ଘୃଣା ଜାଗରିତ ହୁଏ । 'ଜୀବଯଜ୍ଞ' କବିତାରେ ପ୍ରାଣୀ ବଧର ବୀଭତ୍ସତା ସହିତ 'ସିନ୍ଧୁ ଓ ବିନ୍ଦୁ'ର ନମସ୍କାର (୧) ଭୂଳମାସୁ । ସିନ୍ଧୁ ଓ ବିନ୍ଦୁର ରୂପ ତତ୍ତ୍ୱରୁ ଉଦାହରଣ ଦିଆଯାଇପାରେ ।

'ରୂପସୀ ଶ୍ରୀମନ୍ତ ଏବେ ଘଣେ ବିକଟାଳ ଜଘନ୍ୟ କୁତ୍ସିତ
ମନ୍ତ୍ରିକାର ଚରାଭୂମି, ଦୁର୍ଗନ୍ଧ ବିଭତ୍ସ ସ୍ଫୀତ ବିଗଳିତ (୩୬)

'ମାଧବ ଝିଅ' କାବ୍ୟର ପଞ୍ଚମ ଅଂଶରେ ରାଜା ରାଜୁଡ଼ା ଶାସନର ବୀଭତ୍ସ ଦୃଶ୍ୟ, 'ବାରବାଟୀ' ନାଟକର ତୃତୀୟ ଅଙ୍କ ପ୍ରଥମ ଦୃଶ୍ୟରେ ଯୁଦ୍ଧର ବୀଭତ୍ସ ଦୃଶ୍ୟ, ଦୁର୍ଭିକ୍ଷ ନାଟିକାର ତୃତୀୟ ଦୃଶ୍ୟରେ ନଅଙ୍କ ଦୁର୍ଭିକ୍ଷର କାଙ୍ଗାଳଙ୍କ ଉକ୍ତି, ଷଷ୍ଠ ଦୃଶ୍ୟରେ ସମତଳ ଗୃହର ଦୃଶ୍ୟ ସହିତ ପିତେଇ ନାମର ହାବଭାବ ବୀଭତ୍ସ ଦୃଶ୍ୟ ସୃଷ୍ଟି କରିଛି । ସ୍ୱଳ୍ପ ହେଲେହେଁ ମାନସିଂହଙ୍କର ବୀଭତ୍ସ ବର୍ଣ୍ଣନା, ବୀଭତ୍ସ ରସ ସୃଷ୍ଟିରେ କ୍ଷମ ହୋଇପାରିଛି ।

**ଅଦ୍‌ଭୁତ ରସ**—ଅଦ୍ଭୁତ ରସର ସ୍ଥାୟୀ ଭାବ ବିସ୍ମୟ । ଉତ୍ପତ୍ତି କୌଣସି ଆଶ୍ଚର୍ଯ୍ୟଜନକ ଘଟଣା ଶୁଣିଲେ । ଚମତ୍କାରାତ୍ମକ ଦୃଶ୍ୟ ଦେଖିଲେ ହୃଦୟରେ ଯେଉଁ ବିସ୍ମୟ ଆସେ ତାହାର ପରିପୁଷ୍ଟି ଘଟେ । ଅଲୌକିକ ବସ୍ତୁ ଏହାର ଆଲମ୍ବନ ବିଭାବ । ସେହି ବସ୍ତୁର ଗୁଣ ଉଦ୍ଦୀପନ ବିଭାବ, ସ୍ତମ୍ଭ, ସ୍ୱେଦ, ରୋମାଞ୍ଚ ଗଦ୍‌ଗଦ୍‌ସ୍ୱର ଏହାର ଅନୁଭାବ । ତର୍କ ବିତର୍କ, ଆବେଗ ଭ୍ରାନ୍ତି ଓ ହର୍ଷ ବ୍ୟଭିଚାରୀ ଭାବ ।

'ରାଜକବି ଉପେନ୍ଦ୍ର' ନାଟିକାର ତୃତୀୟ ଦୃଶ୍ୟର ଶେଷ ଭାଗରେ ମୁରୋହିତଙ୍କର ଦୀର୍ଘ ସ୍ୱଗତୋକ୍ତି, ନଷ୍ଟନୀଡ଼ 'ଦ୍ୱିତୀୟ ଅଙ୍କ' ତୃତୀୟ ଦୃଶ୍ୟ ଶେଷରେ ଗ୍ରାମ ଯୁବକମାନଙ୍କ ପ୍ରତି ପୂର୍ଣ୍ଣିର ସଳାପ । 'ବୁଦ୍ଧ' ନାଟକର ଦ୍ୱିତୀୟ ଅଙ୍କ ପ୍ରଥମ ଦୃଶ୍ୟରେ ସିଦ୍ଧାର୍ଥଙ୍କର ରତନ ସେଠୀ ମୃତ୍ୟୁ

---

୩୬—ମାନସିଂହ ଗ୍ରନ୍ଥାବଳୀ ପ୍ରଥମ ଭାଗ-ପୃ-୫୫୦

ବିଷୟରେ ଘୋର ଉକ୍ତ ଅଦ୍ଭୁତ ରସ ସୃଷ୍ଟି କରିଛି । ମାନସିଂହଙ୍କ ସୃଷ୍ଟିରେ ଅଦ୍ଭୁତ ରସର ବିଶେଷ ବ୍ୟବହାର ନାହିଁ । ହୁଏତ କବି ସେ ରସର ସୃଷ୍ଟି ପାଇଁ ବିଶେଷ ଯତ୍ନଶୀଳ ହୋଇ ନାହାନ୍ତି ।

**ଶାନ୍ତ ରସ**—ନିର୍ବେଦ, ବୈରାଗ୍ୟ ଓ ଶାନ୍ତ ଏହି ରସର ସ୍ଥାୟୀ ଭାବ । ପରାତ୍ପର ପରମେଶ୍ୱରଙ୍କ ତତ୍ତ୍ୱଜ୍ଞାନ, ସଂସାର ସମ୍ପର୍କୀୟ ଅସାରତା, ଆପଦ ବିପଦରେ ସମଭାବ, ଜଗତର ଅନିତ୍ୟତା, ଏହି ରସର ଆଲମ୍ବନ ବିଭାବ । ବେଦାନ୍ତ ଶ୍ରାବଣ, ତପୋବନ, ତାପସ ଦର୍ଶନ, ପୁଣ୍ୟ ତୀର୍ଥଗମନ, ସଜ୍ଜନ ସଂସର୍ଗ, ପୌରାଣିକ ଉପାଖ୍ୟାନ ଶ୍ରବଣ ଶାନ୍ତ ରସର ଉଦ୍ଦୀପନ ବିଭାବ । ସଂସାରସ୍ଥ ପ୍ରାଣୀମାନଙ୍କର ଦୁଃଖ ଭାବ ଦେଖି କାତର ହେବା ଦୁଃଖ ଆଉ ବିପଦରେ ସନ୍ୟାସ ଧର୍ମ ଆଚରଣ ଓ ଉଦ୍ୟୋଗ ଶତ୍ରୁ ଓ ମିତ୍ର ପ୍ରତି ଉଦାସୀନତା, ଚେଷ୍ଟା ଶୂନ୍ୟତା ଏହାର ଅନୁଭବ । ଦମ୍ଭ, ବୁଦ୍ଧି, ଆନନ୍ଦ, ଜଡ଼ତା, ଦୈନ୍ୟ, କ୍ଷମା, ଉନ୍ମାଦ, ସ୍ମୃତି, ଶାନ୍ତ ରସର ବ୍ୟଭିଚାରୀ ଭାବ । ଯାହାର ଦର୍ଶନ ବା ଶ୍ରବଣ ଫଳରେ ମନରେ ବୈରାଗ୍ୟ ବା ସମଭାବ ଜାଗ୍ରତ ହୁଏ ତାହାକୁ ଶାନ୍ତରସ କହନ୍ତି ।

ମାନସିଂହଙ୍କ ସୃଷ୍ଟିରେ ଶାନ୍ତ ରସ ମୁଖ୍ୟ ସ୍ଥାନ ଅଧିକାର କରିଛି । ତାଙ୍କ କବିତାର ବହୁ ଅଂଶରେ ଏହି ଶାନ୍ତ ରସ ଦେଖାଯାଏ । 'ପୂଜାରିଣୀ' ନାଟିକାର ପ୍ରଥମ ଦୃଶ୍ୟର ଲକ୍ଷ୍ମୀର ଉକ୍ତିରେ ପରାତ୍ପର ପରମେଶ୍ୱରଙ୍କର ବ୍ୟାପକ ଲୀଳା ଦର୍ଶନ ଭାବ ପ୍ରକାଶ କରି ମନରେ ନିର୍ବେଦ ଭାବ ଆଣିଛି । ନଷ୍ଟନୀଡ଼ର ପଞ୍ଚମ ଅଙ୍କ ଦ୍ୱିତୀୟ ଦୃଶ୍ୟରେ ପୂର୍ଣ୍ଣିର ସଂଳାପରେ ସୃଷ୍ଟି ରହସ୍ୟ ଭଗବାନଙ୍କ ସତ୍ତା ଉପରେ ବୈରାଗ୍ୟ ଦେଖା ଦେଇଛି । 'ବାରବାଟୀ' ନାଟକର ଦ୍ୱିତୀୟ ଅଙ୍କ ପଞ୍ଚମ ଦୃଶ୍ୟରେ ମହାରାଜା ଅନଙ୍ଗଭୀମଦେବଙ୍କ ସଂଳାପରେ ଯଶକୀର୍ତ୍ତି ପ୍ରତି ବୈରାଗ୍ୟ ଦେଖା ଦେଇଛି । 'ବୁଦ୍ଧ' ନାଟକର ପ୍ରଥମ ଅଙ୍କ ଷଷ୍ଠ ଦୃଶ୍ୟ ଶେଷରେ ସିଦ୍ଧାର୍ଥଙ୍କର ସଂଳାପ ସଂସାରର ଅନିତ୍ୟତା ଉପରେ ପର୍ଯ୍ୟବସିତ । 'ବୁଦ୍ଧ' ନାଟକର ଦ୍ୱିତୀୟ ଅଙ୍କ ଚତୁର୍ଥ ଦୃଶ୍ୟ ଶେଷରେ ବୁଦ୍ଧଙ୍କର ବୁଦ୍ଧତ୍ୱ ପ୍ରାପ୍ତି ପରେ ପରମେଶ୍ୱର ତତ୍ତ୍ୱଜ୍ଞାନ ସମ୍ପର୍କୀୟ ଯେଉଁ ଶାନ୍ତ ଶାନ୍ତରସ ଆନୟନ କରେ । ଏହି ନାଟକର ଚତୁର୍ଥ ଅଙ୍କ ଦ୍ୱିତୀୟ ଦୃଶ୍ୟରେ ଘୋର

•

ବୁଦ୍ଧ ବା ।ମନରେ ବୈରାଗ୍ୟ ବା ଶାନ୍ତ ଭାବ ଜାଗ୍ରତ କରେ । ସେହିପରି ଦୁର୍ଭିକ୍ଷ ନାଟିକାର ସପ୍ତମ ଦୃଶ୍ୟରେ ଶିବାନନ୍ଦଙ୍କର ବାଣୀ ଶାନ୍ତ ରସ ପ୍ରଦାନ କରେ ।

•

'ହେମ ପୁଷ୍ପ'ର 'ବିଶ୍ୱ ଦେବାଳୟ'ରେ ବିଶ୍ୱର ବ୍ୟାପକତା ନେଇ କବିମନର ବିସ୍ମୟ, 'ଗୀତାଞ୍ଜଳି'ର ପ୍ରଥମ, ଦ୍ୱିତୀୟ, ତୃତୀୟ ଓ ଚତୁର୍ଥ ଅଂଶରେ ନୈବେଦ୍ୟ ଓ ବୈରାଗ୍ୟ, 'ହେମ ଶସ୍ୟ'ର 'ଭକ୍ତ' 'ବିରାଟ ସ୍ରଷ୍ଟା', 'ବିଶୁଦ୍ଧ ସନ୍ଦେହ', 'ମୁକ୍ତି ନାହିଁ ମାଗେ' 'ଆତ୍ମାର ସୌନ୍ଦର୍ଯ୍ୟ' ଓ 'ଅନୁରୋଧ'ରେ କବି ଚିତ୍ତର ନାନା ଜିଜ୍ଞାସା ଦେଖା ଦେଇ ସ୍ରଷ୍ଟାର ବ୍ୟାପକ ଅବବୋଧରେ ଶାନ୍ତ ଭାବ ଆଣି ପାରିଛି । 'ଅକ୍ଷତ'ର 'ଅଭିମାନ' 'ଅପତ୍ୟ ପ୍ରେମ' 'ଅନଭିଳଷିତ' 'କବି ଗୌରବ' 'କୃଶ ବଦନ', 'ପାନ୍ଥ ଗାଥା'ର ୧୬ରୁ ୨୦ ପଦ, 'ସ୍ୱର୍ଗ ଚ୍ୟୁତ' ଓ 'ସହଜପଥ'ରେ ସ୍ରଷ୍ଟାର ନୈବେଦ୍ୟ ଓ ବୈରାଗ୍ୟ ଭାବ ଦେଖା ଦେଇଛି । 'ମାଟିବାଣୀ'ର କୁଟୀର ଚିରନ୍ତନ, 'ମହାନଦୀରେ ଜ୍ୟୋତ୍ସ୍ନା ବିହାର' କବିତାରେ ଶାନ୍ତରସ ଦେଖାଯାଏ ।

> "ଯେ ଯେ ସତ୍ୟ, ଶିବ ସେହି ଏକା ସେ ସୁନ୍ଦର
> ଭୂମା ଯେ ରହିଛି ପୂରି ରେଣୁ ରେଣୁ ଭେଦି
> ଅନନ୍ତ ଲୀଳାର ହେତୁ ଅସୀମ ସୁନ୍ଦର
> କ୍ଷଣକେ ସୃଜେ ସେ ତା'ର ମହା ପୂଜା ବେଦୀ
> ବନ୍ଧୁ ହେ ! ପାଇଛି ଆଜ ଏ ଆକାଶ ତଳେ' (୩୭)

'ଜୀବନଚିତା'ର 'ନିର୍ବାସିତ ଭଗବାନ', 'ଧରଣୀ ବାସ', 'ଶେଷକଥା' 'ଦକ୍ଷିଣା ପ୍ରତି', 'ଦୁର୍ବାର ଆରାଧନା' 'ଅନୁତପ୍ତ' 'ଦୁର୍ବଳ ସୈନିକ' 'ସମର ବିମୁଖ' କବିତା ଗୁଡ଼ିକରେ ମାନସିଂହ ଶାନ୍ତରସ ପରିବେଷଣ କରିଛନ୍ତି । 'କୃଷ୍ଣ'ର ସମସ୍ତ କବିତାରେ ଶାନ୍ତ ରସ ବିଦ୍ୟମାନ । ଏଥିରେ ମାନସିଂହ-

---

୩୭—'ମହାନଦୀରେ ଜ୍ୟୋତ୍ସ୍ନା ବିହାର' ମାନସିଂହ ଗ୍ରନ୍ଥାବଳୀ ପ୍ରଥମଭାଗ ପୃ-୩୧୭ ।

ପ୍ରାଣ କୌଣସି ଅଜଣା ଆଲୋକ ପାଇବା ପାଇଁ, ଶାନ୍ତି ପାଇଁ, ବୈରାଗ୍ୟର ପଥ ବାଛି ନେଇଛି । ସୃଷ୍ଟିରେ ସମସ୍ତ ବସ୍ତୁ ତାଙ୍କ ନିକଟରେ ରହସ୍ୟମୟ ହୋଇଛି । ସବୁଥିରେ ସେ ପରମ କାରୁଣିକ ବୁଦ୍ଧଙ୍କର ସତ୍ତା ଅନୁଭବ କରିଛନ୍ତି । ତାଙ୍କ ପାଖରେ ଧର୍ମ ନୈର୍ବ୍ୟକ୍ତିକ ହୋଇଯାଇଛି ।

'ସିନ୍ଧୁ ଓ ବିନ୍ଦୁ'ର ନମସ୍କାର (୨) 'ପଳାତକ ହେ ମୋର ଯୌବନ', 'ଅପାର ନିର୍ବାଣ' 'ଅନ୍ୱେଷଣ' 'ଅନ୍ତ ଆପଣାର ଆଶୀର୍ବାଦ' 'ମୁଁ ଅଛି ମୁଁ ଅଛି', 'କପୋତ କପୋତୀ' 'ଶରଶଯ୍ୟାରେ ନିଶୀଥ, 'ଦିଅ ହେ ଉତ୍ତର', ତଥା ଅନ୍ୟାନ୍ୟ କବିତାରେ ମାନସିଂହ ଗତ ଜୀବନର ସମୀକ୍ଷା କରି ଏବଂ ବୈରାଗ୍ୟ ଅବସ୍ଥାରେ ପୂର୍ବ ଜୀବନକୁ ଖୋଜିଛନ୍ତି । ଗତାନୁଗତିକ ସୃଷ୍ଟିରେ ତାଙ୍କର ଶାନ୍ତି ଆସିନି । ରୋମାଣ୍ଟିକ କବିଙ୍କର ଅତୀତ ପ୍ରୀତି, ସୁଦୂର ମୋହ, ତାଙ୍କ କବିତାରେ ମୁଖ୍ୟ ସ୍ଥାନ ଗ୍ରହଣ କରି ଶାନ୍ତରସ ପରିବେଷଣ କରିଛି ।

**ବାତ୍ସଲ୍ୟ ରସ**—ନବମ ରସ ପରେ ଅନ୍ୟ କେତେକ ଆଳଙ୍କାରିକ ଭକ୍ତି ଓ ବାତ୍ସଲ୍ୟ ରସକୁ ରସଭେଦରେ ଅନ୍ତର୍ଭୁକ୍ତ କରିଛନ୍ତି । ପିତାମାତାଙ୍କର ପୁତ୍ର କନ୍ୟା ପ୍ରତି ସ୍ନେହ ବାତ୍ସଲ୍ୟରସରେ ପରିଣତ ହୋଇଥାଏ । ସ୍ନେହ ବାତ୍ସଲ୍ୟ ରସର ସ୍ଥାୟୀ ଭାବ । ପୁତ୍ରାଦି ଆଲମ୍ବନ ବିଭାବ, ଆଲିଙ୍ଗନ ଚୁମ୍ବନ ଆଦି ଅନୁଭାବ ଓ ଅନିଷ୍ଟ ଆଶଙ୍କା ବ୍ୟଭିଚାରୀ ଭାବ ।

ମାନସିଂହ ଗୋପାଳକୃଷ୍ଣଙ୍କର ବାତ୍ସଲ୍ୟ ରସକୁ ଖୁବ୍ ଆଦରର ସହିତ ଗ୍ରହଣ କରିଛନ୍ତି । ନିଜ ସୃଷ୍ଟିରେ ଏହି ରସର ପରିବେଷଣ ପାଇଁ ଚେଷ୍ଟା କରି ଆଂଶିକ ସଫଳତା ଲାଭ କରିଛନ୍ତି । ମାନସିଂହଙ୍କ ବ୍ୟକ୍ତିଗତ ଜୀବନରେ ପିତାମାତାଙ୍କ ସ୍ନେହ ପାଇବା ସମ୍ଭବ ହୋଇ ନ ଥିଲା । ଜେଜେମାଙ୍କର ସ୍ନେହ ଓ ଭଉଣୀଙ୍କ ଠାରୁ ସେ ବାତ୍ସଲ୍ୟ ସ୍ନେହ ପାଇଥିଲେ ଏବଂ ନିଜେ ପିତା ଭାବରେ ସନ୍ତାନସନ୍ତତିଙ୍କୁ ସ୍ନେହ କରିବାରେ ସେହି ବାତ୍ସଲ୍ୟରସ ଅନୁଭବ କରିଥିବେ । ଜଣେ ସ୍ନେହୀ ଶିକ୍ଷକ ଭାବରେ ବହୁ ଶିଷ୍ୟଙ୍କୁ ଏହି ବାତ୍ସଲ୍ୟ ରସ ପ୍ରଦାନ କରିଥିବେ । ଆଲୋଚ୍ୟ କବିତାମାନଙ୍କରେ ତା'ର ସମର୍ଥକ ଉଦାହରଣ ମିଳିବ ।

'ହେମଶସ୍ୟ'ର 'ଭଗିନୀ' କବିତାରେ ନିଜ ଜୀବନର ବାତ୍ସଲ୍ୟ ରସ ପରିବେଷିତ । 'ଅନ୍ତର'ର 'ମୋ ଧନ'ରେ 'ଯାଇଛୁ ସେ' 'ଶିଶୁର ଦାନ' ଓ 'ରୂପାନ୍ତର' କବିତାରେ ଚମତ୍କାର ଭାବରେ ବାତ୍ସଲ୍ୟ ରସ ରହିଛି । 'ମାଟି ବାଣୀ'ର 'ସାଆନ୍ତମାଆ' କବିତା 'ଘରପଣା' ଓ 'ରେଙ୍ଗୁନ୍ ଚିଠି'ରେ ବାତ୍ସଲ୍ୟ ରସ ଦେଖାଯାଏ । 'କିଶୋର କବିତା'ରେ 'ଶିଶୁର ପ୍ରଥମ ପ୍ରଶ୍ନ' 'ବୋଉ' ଓ 'ଶିଶୁର ପ୍ରଥମ ଦୁଃଖ'ରେ ବାତ୍ସଲ୍ୟ ରସର ବାସ୍ତବ ଦୃଶ୍ୟ ପ୍ରକଟିତ ହୋଇଛି । ଦୁର୍ଭିକ୍ଷ ନାଟିକାର ଷଷ୍ଠ ଦୃଶ୍ୟରେ, ସନାତନ ଗୃହର ପିତାମାତାଙ୍କର ରୋଦନରେ ବାତ୍ସଲ୍ୟ ରସ ପରିପୁଷ୍ଟ । ପୂଜାରିଣୀର ଦ୍ୱିତୀୟ ଦୃଶ୍ୟରେ ଦେବଳେଶ୍ୱର ମହାପାତ୍ର ଓ ପତ୍ନୀଙ୍କ କଥୋପକଥନରେ ବାତ୍ସଲ୍ୟ ରସ ରହିଛି । 'ଜେମା' କାବ୍ୟରେ ବାତ୍ସଲ୍ୟ ରସ ସୃଷ୍ଟିରେ ମାନସିଂହଙ୍କ ସାଫଲ୍ୟ ଜଣା ପଡ଼େ । ଦଳେଇଆଣୀଙ୍କ ଉକ୍ତି—

'ତାଙ୍କ ଲୋକ ତାଙ୍କ ଘରେ ରଖିବେନି କି ସେ ପରେ
ମେଣ୍ଢାଙ୍ଗା ଖାଇ ପିଇ ଜାଣିନି ପରା
ନ ଶୋଇଲେ କୋଳେ ମୋର ନିଦ ହୁଏ ନାହିଁ ତା'ର
ଲଗାଇ ଜାଣିନି ନିଜେ ଆଖିରେ କଜଳ ।
ପାଖେ ମୋର ଆସ ମୋ ଧନ
ଖବର ପଠାନ୍ତୁ ଦଳେଇଆଣୀ ଉଚ୍ଛନ୍ନ' (୩୮)

ପୁନଶ୍ଚ ଉତ୍ତରାର୍ଦ୍ଧରେ ପ୍ରଥମ ଛଅ ପଦ ପର୍ଯ୍ୟନ୍ତ ଓ ମଧ୍ୟ ପର୍ବ ଉତ୍ତରାର୍ଦ୍ଧର ଶେଷ ଦୁଇ ପଦରେ ଜେମାର ବାତ୍ସଲ୍ୟ ରସ ପ୍ରତିଫଳିତ ।

ସ୍ନେହେ ବାଳକରେ ପଚାରଇ ସେ ଆଉଁସି
ହାଲିଆ କି ହୋଇଯାଉନ୍ତୁ ଏଇ ବାଟେ ଆସି
କହି, କାଖେ ଟେକି ଧରେ
ଫିଙ୍ଗି ଚିନ୍ତୁ ଆଉ ସ୍ନେହ ସେଠି ସଙ୍ଗତରେ ।" (୩୯)

ଅନ୍ୱେଷଣ ଉପନ୍ୟାସରେ ମଞ୍ଜୁଳା ମାତାର ପୁତ୍ର କନ୍ୟା ଏବଂ ପୁତ୍ରର ବନ୍ଧୁ ପ୍ରତି ସ୍ନେହ ପ୍ରଦର୍ଶନରେ, ସାନମା'ର ନାତି ନାତୁଣୀଙ୍କ ଲାଗି ବଞ୍ଚିବାରେ

---

୩୮—'ଜେମା' ମାନସିଂହ ଗ୍ରନ୍ଥାବଳୀ ୨ୟ ଖଣ୍ଡ ପୃ-୭୧
୩୯—ମାନସିଂହ ଗ୍ରନ୍ଥାବଳୀ ଦ୍ୱିତୀୟ ଭାଗ ପୃ-୧୧୪

ପ୍ରଭୁପାଦର ମାତା, ତଥା ସାବିତ୍ରୀର ମାତାଙ୍କର ସ୍ନେହପୂର୍ଣ୍ଣ ବ୍ୟବହାରରେ ଏହି ରସ ଅଧିକ ସଫଳ ଭାବରେ ରୂପାୟିତ ହୋଇଅଛି । 'କମଳାୟନ' କାବ୍ୟରେ ବାତ୍ସଲ୍ୟ ରସର କେତେକ ସୂଚନା ଥିଲେ ମଧ୍ୟ ତାହା ବଳିଷ୍ଠ ହୋଇପାରିନ ।

**ଭକ୍ତି ରସ**—ଗୌଡ଼ୀୟ ବୈଷ୍ଣବ ତଥା ଓଡ଼ିଶୀ ବୈଷ୍ଣବମାନେ ଭକ୍ତ ରସକୁ ସ୍ୱୀକାର କରିଛନ୍ତି । ସେମାନଙ୍କ ମତରେ ଶ୍ରୀକୃଷ୍ଣଙ୍କର ଶୃଙ୍ଗାରାଦି ରସ ଭକ୍ତରସ ବା ମଧୁର ରସ । ଈଶ୍ୱର ବିଷୟକ ପ୍ରେମହିଁ ଏହାର ସ୍ଥାୟୀ ଭାବ । ରୂପ ଗୋସ୍ୱାମୀ କହନ୍ତି—'ଶ୍ରୀକୃଷ୍ଣ ଦେବତା ନୁହନ୍ତି, ମାନବ ଦେହଧାରୀ ଭଗବାନଙ୍କର ଅବତାର ବା ଦିବ୍ୟାଦିବ୍ୟ ପୁରୁଷ । ତେଣୁ ଶ୍ରୀକୃଷ୍ଣ ବିଷୟକ ରସ ଭକ୍ତ ରସ । ଭକ୍ତରସ ଚାରି ପ୍ରକାର—ଦାସ୍ୟ (ଶ୍ରୀକୃଷ୍ଣ ପ୍ରତି ଉଦ୍ଧବଙ୍କର), ସଖ୍ୟ (କୃଷ୍ଣଙ୍କ ପ୍ରତି ସୁଦାମା ଓ ଅର୍ଜ୍ଜୁନଙ୍କର) ବାତ୍ସଲ୍ୟ (ଯଶୋଦାଙ୍କର କୃଷ୍ଣ ସ୍ନେହ) ମଧୁର (କୃଷ୍ଣଙ୍କ ସହ ରାଧା ଓ ଗୋପୀଙ୍କର) । ଏହି ଚତୁର୍ବିଧ ରସ ମଧ୍ୟରେ ଆରାଧ୍ୟ ଦେବର ନିକଟତମ ଉପଲବ୍‌ଧିକୁ ଆଧାର କରି ଭକ୍ତ ରସଗୁଡ଼ିକରେ କ୍ରମୋନ୍ନତି ପ୍ରଦର୍ଶିତ ହୋଇଛି ଓ ମଧୁର ରସକୁ ସର୍ବଶ୍ରେଷ୍ଠ ସ୍ଥାନ ଦିଆଯାଇଛି । ଅତଏବ ମଧୁର ରସ ସବୁଠାରୁ ଜୀବନ୍ତ ବୋଲି ସ୍ୱୀକୃତି ଲାଭ କରିଛି ।

'ପୂଜାରିଣୀ' ନାଟିକାର ଚତୁର୍ଥ ଦୃଶ୍ୟ ପର୍ଯ୍ୟନ୍ତ ଲକ୍ଷ୍ମୀ ଓ ସାକ୍ଷୀଗୋପାଳଙ୍କର ପ୍ରେମ ବର୍ଣ୍ଣନା କରାଯାଇଛି । କଳିଯୁଗରେ ଶ୍ରୀକୃଷ୍ଣ ମାନବ ଶରୀର ଧରି ବିପ୍ରକନ୍ୟା ଲକ୍ଷ୍ମୀ ସହିତ ରତିକ୍ରିୟାକୁ ମଧୁର ରସର ଅନ୍ତର୍ଭୁକ୍ତ କରି ଦିଆଯାଇପାରେ । 'ବାରବାଟୀ' ନାଟକର ଦ୍ୱିତୀୟ ଅଙ୍କ ପ୍ରଥମ ଦୃଶ୍ୟ ଶେଷରେ ମହାରାଜ ଅନଙ୍ଗଭୀମ ଦେବ ନିଜକୁ ଜଗନ୍ନାଥଙ୍କର ଦାସାନୁଦାସ ଭାବରେ ବର୍ଣ୍ଣନା କରିଛନ୍ତି । ତେଣୁ ଏଠାରେ ଦାସ୍ୟ ଭାବରେ ଭକ୍ତ ରସ ପରିବେଷିତ । 'ବୁଦ୍ଧଦୂତୀ'ର ପ୍ରଥମ ଦୃଶ୍ୟରେ 'ହେମମାଳା'ର ବୁଦ୍ଧ ଜଣାଣରେ ଦାସ୍ୟ ଭାବ ପ୍ରକଟିତ । 'ହେମ ପୁଷ୍ପ'ର 'ବଂଶୀଡାକ' କବିତାରେ ରାଧିକାର ପ୍ରେମନିଷ୍ଠା ବର୍ଣ୍ଣନା କରାଯାଇଛି । ପରମପ୍ରେମିକ ଶ୍ରୀକୃଷ୍ଣଙ୍କର ବଂଶୀଡାକ କେହି ଶୁଣିପାରି ନାହାନ୍ତି, ଯାହା ଶୁଣିପାରିଛନ୍ତି ଶ୍ରେଷ୍ଠ ପ୍ରେମିକା ରାଧାରାଣୀ । ନିର୍ଜ୍ଜନ ରାତିରେ ସମସ୍ତେ ନିଦ୍ରାଗତ । ବ୍ୟାକୁଳତା

ରାଧା ବଂଶୀ ଡାକରେ ତରତରରେ କବରୀ ନ ସାଜି ଚଳିଛି, କୁଶାଙ୍କୁର ଘାତରେ ଚରଣ ପଦ୍ମରୁ ଶୋଣିତ ନିର୍ଗତ ହୋଇଛି । ଏହି ଦୃଶ୍ୟ ଦେଖି କବିଙ୍କର ଦାସ୍ୟଭାବ ଦେଖାଦେଇଛି । ବୈଷ୍ଣବ କବି ଅଭିମନ୍ୟୁଙ୍କର 'କିଶୋରୀର ଦାସୀ' ହେବାଠାରୁ ଏଠାରେ ମାନସିଂହଙ୍କ ଭାବ ବଦଳି ଯାଇଛି । ସେ କହନ୍ତି—'ସତ୍ୟ ଯଦି ପ୍ରଭୁ !

ନାଅ ମୋର ଯାହା ଅଛି ନାଅ ମୋର ସବୁ
ଭିକ୍ଷା ମୋର କୁଞ୍ଜବନେ ବ୍ରଜ ରାଧାରାଣୀ
ଯେ ପଥେ ଯାଆନ୍ତି ନିତି ବଂଶୀ ଡାକ ଶୁଣି
ସେହି ପଥେ ଦୟାମୟ କର ମୋତେ ଘାସ
ଦେହ ପାତି ମେଣ୍ଟାଇବି ରାଧା ପାଦ ପ୍ରାସ (୪୦)

ସମସ୍ତ ବୈଷ୍ଣବ କାବ୍ୟରେ ଏହି ଦାସ୍ୟ ଭାବର ଅନୁରୂପ ବିକାଶ ଦେଖାଯାଏ । 'ଜୀବନଚିତା'ର 'ଆଲୋକ ମାଗେ'ରେ ଦାସ୍ୟ ଭାବ ର ଭକ୍ତି ରସ ରହିଛି । ଭକ୍ତିରସର ଅନ୍ୟାନ୍ୟ ଦିଗ ଅନୁସନ୍ଧେୟ ।

**ରସ ଦୋଷ :** ରସ ହିଁ କାବ୍ୟର ଆତ୍ମା, କାବ୍ୟରେ ରସ ସମ୍ବନ୍ଧୀୟ କୌଣସି ଦୋଷ ଥିଲେ ତାହାକୁ ରସଦୋଷ କୁହାଯାଏ । ଗୋଟିଏ ରସର ଅବତାରଣାରେ ତା ବିରୁଦ୍ଧ ରସର ଅଙ୍ଗୀଭୂତ ବିଭାବାଦିର ଗ୍ରହଣ ଅନୁଭାବର ଓ ବିଭାବର କଷ୍ଟ ପୂର୍ବକ ଅଧ୍ୟାହାର (ଟାଣି ଓଟାରି ବାହାର କରିବା) କଳ୍ପନା ଅସମୟରେ ରସର ବିସ୍ତୃତି ବା ଛେଦ ରସ ସମ୍ବନ୍ଧୀୟ ଅନ୍ୟ ପ୍ରକାର ଅନୌଚିତ ବର୍ଣ୍ଣନା କାବ୍ୟରେ ଥିଲେ ରସଦୋଷ ହୋଇଥାଏ ।

ପୂର୍ବରୁ ସୂଚନା ଦିଆଯାଇଛି ଯେ ମାନସିଂହ ସାହିତ୍ୟ ପ୍ରାଚ୍ୟ କାବ୍ୟତତ୍ତ୍ୱକୁ ସମ୍ପୂର୍ଣ୍ଣ ଭାବରେ ଗ୍ରହଣ କରିନାହିଁ । ଏଣୁ ସମସ୍ତ ରସଦୋଷ ନିର୍ଣ୍ଣୟ କଲେ ମାନସିଂହଙ୍କର ଅଧିକାଂଶ ସୃଷ୍ଟି ଦୋଷଗ୍ରସ୍ତ ହେବ । ସେଥିପାଇଁ କେତେକ ଅତିମାତ୍ରାର ଦୋଷକୁ ଦେଖାଇ ଦିଆଯାଇଛି ।

---

୪୦—'ବଂଶୀଡାକ'—ମାନସିଂହ ଗ୍ରନ୍ଥାବଳୀ ୧ମ ଭାଗ

**ରସାଭାସ**—ସାଧାରଣତଃ ଅଳଙ୍କାର ଶାସ୍ତ୍ରରେ ପଶୁପକ୍ଷୀର ପ୍ରେମ ବା ଏକାଙ୍ଗୀ ପ୍ରେମର ବର୍ଣ୍ଣନାକୁ ରସାଭାସ ଆଖ୍ୟା ଦିଆଯାଇଅଛି । ଏହା ମଧ୍ୟ ରସ ଦୋଷର ଅନ୍ୟ ଏକ ପ୍ରକୃଷ୍ଟ ଦିଗ । 'ଅନ୍ୱେଷଣ' ଉପନ୍ୟାସରେ 'ସାବଜୀ'ର ପ୍ରଥମ ପ୍ରେମରେ ଭାବତ 'ଶ୍ରୀକଣ୍ଠ'ର ହୃଦରେ ପାରାଙ୍କର ପ୍ରେମ ଦୃଶ୍ୟ ବର୍ଣ୍ଣନା ରସା ସର ସୂଚନା ଦିଏ । 'ମାଧବ ଝିଅ' କାବ୍ୟରେ ଉଦ୍ଧତ ରାଜପୁତ୍ରର ଅନଭିଳାଷିଣୀ ମାଧବ ଝିଅ ପ୍ରତି ଜବରଦସ୍ତ ପ୍ରେମ ପ୍ରଦର୍ଶନ ଏକାଙ୍ଗୀ ରସାଭାସରେ ସୂଚନା ଦିଏ । 'ନବବଧୂର ବିରହ' କବିତାରେ ନାୟକର ଅନୁରାଗ ସତ୍ତ୍ୱେ ନାୟିକାର ବିରାଗ ଭାବ ଯୋଗୁଁ ରସାଭାସ ହୋଇଛି ।

**ଭାବାଭାସ** :— ସାଧାରଣତଃ ଆରାଧ୍ୟ ଦେବାଦେବୀ ବା ସ୍ୱର୍ଗୀୟ ପ୍ରାଣୀଙ୍କର ପ୍ରେମ ବର୍ଣ୍ଣନା ଭାବାଭାସର ସୂଚନା ଦିଏ । ଭାବାଭାସର ଉଦାହରଣ ମାନସିଂହଙ୍କ କାବ୍ୟରେ ବିରଳ କହିଲେ ଅତ୍ୟୁକ୍ତି ହେବନାହିଁ ।

**ଉପସଂହାର**—ପୃଥିବୀ ଇତିହାସର ପରିବର୍ତ୍ତନ ସଙ୍ଗେ ସଙ୍ଗେ ସାହିତ୍ୟରେ ବିଭିନ୍ନ ବାଦର ପରିବର୍ତ୍ତନ ହୋଇଯାଇଛି । ଇଂରାଜୀ ସାହିତ୍ୟରେ ଯେଉଁ ସବୁ ପରିବର୍ତ୍ତନ ହୋଇ ଯାଇଥିଲା, ଓଡ଼ିଆ ସାହିତ୍ୟକୁ ଆଧୁନିକତା ଆସିବା ସଙ୍ଗେ ସଙ୍ଗେ ତା'ର ପ୍ରଭାବ ମଧ୍ୟ ପଡ଼ିଲା । ମାନସିଂହଙ୍କ ସମଯୁକ୍ତ ରାଧାନାଥ, ମଧୁସୂଦନ, ଫକୀରମୋହନ, ଗଙ୍ଗାଧର, ନନ୍ଦକିଶୋର, କୁନ୍ତଳ କୁମାରୀ ଓ ପଦ୍ମଚରଣ ସେ ପରିବର୍ତ୍ତନକୁ ଗ୍ରହଣ କରିନେଇଥିଲେ । ସତ୍ୟବାଦୀ ଗୋଷ୍ଠୀ ଦ୍ୱାରା ସାହିତ୍ୟର ନୂତନ ବାଦ, ପ୍ରବନ୍ଧ କାବ୍ୟ ଧାରରେ ପ୍ରକାଶ ଲାଭ କରିଥିଲା । 'ଉତ୍କଳ ସାହିତ୍ୟ', 'ମୁକୁର', 'ସତ୍ୟବାଦୀ'ରେ ସାମୟିକ ଭାବରେ ନୂତନ ଚିନ୍ତାଧାରା ପ୍ରବନ୍ଧ ଆକାରରେ ପ୍ରକାଶ ପାଇଥିଲା ।

ମାନସିଂହ କାବ୍ୟ କବିତା ସୃଷ୍ଟି ପୂର୍ବରୁ ପ୍ରତ୍ୟକ୍ଷ ଭାବରେ ପାଶ୍ଚାତ୍ୟ ଚିନ୍ତାଧାରାର ସନ୍ଧାନ ପାଇଥିଲେ । ସମସାମୟିକ ଭାରତୀୟ ସାହିତ୍ୟରେ ଚମକ ସୃଷ୍ଟି କରିଥିବା ବିଶ୍ୱକବି ରବୀନ୍ଦ୍ରନାଥଙ୍କର ରଚନାରେ ମାନସିଂହ ମୁଗ୍ଧ ପାଠକ ଥିଲେ । ରବୀନ୍ଦ୍ରନାଥ ପାରମ୍ପରିକ କାବ୍ୟ

ତନ୍ତ୍ରର ଧାରାରୁ ଅଲଗା ହୋଇ ନିଜର ସାହିତ୍ୟତତ୍ତ୍ୱ ସୃଷ୍ଟି କରିବାରେ କ୍ଷମ ହୋଇଥିଲେ । ମାନସିଂହ ପାଶ୍ଚାତ୍ୟ ଚିନ୍ତାଧାରାରୁ ତଥା ରୋମାଣ୍ଟିକ ଚେତନାର ଅନୁଶୀଳନ କରିଥିଲେ ମଧ୍ୟ ପ୍ରାଚ୍ୟ ସାହିତ୍ୟର ଚିନ୍ତାଧାରାରେ ପ୍ରଭାବିତ । କାଳିଦାସଙ୍କ ସାହିତ୍ୟ କବିଙ୍କୁ ଅନେକ ପ୍ରଭାବିତ କରିଛି । ତାଙ୍କ ସମ୍ମୁଖରେ ପାଶ୍ଚାତ୍ୟ ଚିନ୍ତାଧାରା ରୋମାଣ୍ଟିକ ଶୈଳୀ, ପ୍ରାଚ୍ୟ ବିଷୟବସ୍ତୁ ତଥା ଓଡ଼ିଆ ମାଟିର ଜନ ଜୀବନ, ଇତିହାସ, ପରିଦୃଶ୍ୟମାନ ହୋଇଥିଲା । ତାଙ୍କ ସାହିତ୍ୟରେ ଭାରତୀୟ କାବ୍ୟତତ୍ତ୍ୱର ରସ, ରୀତି, ଗୁଣ, ଔଚିତ୍ୟ ଅଳଙ୍କାର, ଧ୍ୱନି, ବକ୍ରୋକ୍ତି ସହିତ ଆମେ ରୋମାଣ୍ଟିକ୍ ଚିନ୍ତାଧାରା ଟ୍ରାଜେଡ଼ି ଆଧିଭୌତିକ ଚେତନା ଦେଖିବାକୁ ପାଇବା । କିନ୍ତୁ ପ୍ରବନ୍ଧର ଶିରୋନାମା ଦୃଷ୍ଟିରୁ ତାଙ୍କର ସମସ୍ତ ସୃଷ୍ଟିକୁ ଭାରତୀୟ କାବ୍ୟତତ୍ତ୍ୱର ରସବାଦ ଅନୁସାରେ ମୂଲ୍ୟାୟନ କରିବାକୁ ହେଲା ।

ସମସ୍ତ ସୃଷ୍ଟିକୁ ଅଧ୍ୟୟନ କରିବା ପରେ ଏହି ସିଦ୍ଧାନ୍ତ ମିଳିଲା ଯେ, ମାନସିଂହଙ୍କର ରଚନାରେ ପ୍ରେମ ଚେତନା ବା ଶୃଙ୍ଗାରରସ ସଫଳତା ଲାଭ କରିଛି । ଏହାକୁ ଶୃଙ୍ଗାର ରସ ଅପେକ୍ଷା ପ୍ରଣୟ ଚେତନା କହିଲେ ଅଧିକ ଯୁକ୍ତିଯୁକ୍ତ ହେବ । ଅଧିକାଂଶ ସ୍ଥାନରେ କାବ୍ୟର ନାୟକ ନିଜେ କବି, ଯାହା ପ୍ରାଚୀନ ସାହିତ୍ୟରେ ବିରଳ ।

'ଶୃଙ୍ଗାରରସ' ପରି 'କରୁଣରସ'କୁ ସେ ସଫଳ ଭାବରେ ରୂପାୟନ କରି ପାରିଛନ୍ତି । ମାନସିଂହଙ୍କ ପରିବେଷିତ କରୁଣ ରସକୁ ଟ୍ରାଜେଡ଼ି ଭାବରେ ଗ୍ରହଣ କରିବା ଅଧିକ ସମୀଚୀନ ହେବ । ତାଙ୍କ ଟ୍ରାଜେଡ଼ି ଅଧିକ ମର୍ମସ୍ପର୍ଶୀ । କାବ୍ୟ କବିତାରେ ସମସ୍ତ ସାଫଲ୍ୟ ପରେ 'ନଷ୍ଟନୀଡ଼' ପାଠକ ପ୍ରାଣକୁ ଛୁଇଁଥାଏ । ଓଡ଼ିଆ ନାଟକ ମଧ୍ୟରେ ଏହା ପ୍ରଥମ ଟ୍ରାଜେଡ଼ି ବୋଲି ନାଟ୍ୟକାର ଦାବି କରିଛନ୍ତି ।

ମାନସିଂହଙ୍କ ସୃଷ୍ଟିରେ ଅନ୍ୟତମ ସଫଳ ରସ 'ଶାନ୍ତ ରସ' । ପାଶ୍ଚାତ୍ୟ କାବ୍ୟତତ୍ତ୍ୱ ଅନୁସାରେ ଏହାକୁ ଆଧିଭୌତିକ ଚେତନା ବୋଲି ଗ୍ରହଣ କରାଯାଇପାରେ । ଏହି ଶ୍ରେଣୀର କବିତା ରଚନାରେ ସେ ସଫଳତା ଲାଭ କରିଛନ୍ତି । 'ମୃତ୍ତିକା' କାବ୍ୟର ସମସ୍ତ କବିତା ଏହି ଶ୍ରେଣୀର । 'ସିନ୍ଧୁ ବିନ୍ଦୁ'ର ଅଧିକାଂଶ କବିତାରେ ଆଧିଭୌତିକ ଚେତନା ପ୍ରତିଫଳିତ ।

ଅନ୍ୟ ରସ କଥା ବିଚାର କଲେ ହାସ୍ୟରସ ପାଇଁ ବହୁ କ୍ଷେତ୍ର ଥିଲେହେଁ ମାନସିଂହ ଏ ରସର ପରିବେଷଣ ପାଇଁ ଆଗ୍ରହ ପ୍ରକାଶ କରିନାହାନ୍ତି । ରୌଦ୍ର ରସରେ ମାନସିଂହ ସୃଷ୍ଟିରେ ବିଶେଷତ୍ୱ ନାହିଁ । 'ବୀରରସ' ପାଇଁ ବିଭିନ୍ନ କ୍ଷେତ୍ର ଥିଲେହେଁ କ୍ୱଚିତ ପ୍ରକାଶିତ ହୋଇଛି । ଭୟାନକ, ବିଭତ୍ସ ଓ ଅଦ୍ଭୁତ ରସ ସୃଷ୍ଟି ପାଇଁ ମାନସିଂହ ଯତ୍ନଶୀଳ ହୋଇନାହାନ୍ତି । 'ଭକ୍ତି ରସ'ରେ ଯାହା ସାମାନ୍ୟ ଭାବ ଦେଖା ଦେଇଛି । 'ବାତ୍ସଲ୍ୟରସ' ସ୍ୱଳ୍ପ ସ୍ଥାନରେ ଦେଖାଇ ଥିଲେହେଁ ଏଥିରେ ଆଂଶିକ ସାଫଲ୍ୟ ପରିଦୃଷ୍ଟ । ଏଣୁ ଶେଷରେ ଏହି ସିଦ୍ଧାନ୍ତ ମିଳଇ ଯେ ଶୃଙ୍ଗାର, କରୁଣ ଓ ଶାନ୍ତ ରସ ପରିବେଷଣରେ ମାନସିଂହ ସଫଳକାମ ହୋଇ ପାରିଛନ୍ତି ।

ମାନସିଂହଙ୍କ ସୃଷ୍ଟିର ବିପୁଳତାକୁ ସାମଗ୍ରିକ ଭାବରେ ଲକ୍ଷ୍ୟ କଲେ ରସ ପରିବେଷଣରେ ମାନସିଂହଙ୍କ ସରସ ହୃଦୟର ତଥା କଳ୍ପନା ପ୍ରବଣ କବି ହୃଦୟର ଏକ ବିଚିତ୍ର ଆଲେଖ୍ୟ ମୁଗ୍‌ଧ ପାଠକର ସମ୍ମୁଖରେ ଝଲସି ଉଠେ ଓ ରସାମୋଦୀ ପାଠକ ସେହି କବିତା ରାଜ୍ୟରେ ଭାବାବେଶ ନେଇ ବିଚରଣ କରେ ।

———

# ଅନ୍ୱେଷଣ ଉପନ୍ୟାସରେ ମାନସିଂହ ମାନସ

( ଏକ )

'ଅନ୍ୱେଷଣ', ଡଃ ମାୟାଧର ମାନସିଂହ (୧୯୦୫-୧୯୭୩)ଙ୍କର ଏକ ମାତ୍ର ଉପନ୍ୟାସ । କବି, ନାଟ୍ୟକାର, ଆଲୋଚକ ଓ ପ୍ରାବନ୍ଧିକ ଭାବରେ ମାନସିଂହଙ୍କର ଉଜ୍ଜ୍ୱଳ ପ୍ରତିଭା ନିକଟରେ ଔପନ୍ୟାସିକ ପ୍ରତିଭାଟି ଆଲୋଚକ ମାନଙ୍କର ଦୃଷ୍ଟି ପଥାରୁଢ଼ ହୋଇ ପାରିନି । ଏକ ମାତ୍ର ଉପନ୍ୟାସ ହୋଇଥିଲେ ମଧ୍ୟ, ଉପନ୍ୟାସରେ ମାନସିଂହ ମାନସର କେତେକ ବିଶିଷ୍ଟ ଦିଗ ପାଠକର ଦୃଷ୍ଟି ଅକର୍ଷଣ କରେ । ପ୍ରସ୍ତୁତ ପ୍ରବନ୍ଧରେ କବିତା, କାବ୍ୟ ତଥା ନାଟକ ନାଟିକାରେ ପ୍ରତିଫଳିତ ଅନେକ ଧାରାର ଆଲୋଚନା ଯଥା ସମ୍ଭବ ହୋଇ ପାରିଛି; କିନ୍ତୁ ଏହି ଉପନ୍ୟାସରେ ପ୍ରତିଫଳିତ କବିଙ୍କ ବିଚାରଧାରା ସ୍ୱତନ୍ତ୍ର ଭାବରେ ଆଲୋଚନାର ଅପେକ୍ଷା ରଖେ ।

ଉପନ୍ୟାସଟିର କଥାବସ୍ତୁ ମୁଖ୍ୟତଃ ତିନୋଟି ସ୍ଥାନକୁ କେନ୍ଦ୍ର କରି ସଂଗଠିତ ହୋଇଛି । କଟକ ସହର, ଧବଳେଶ୍ୱର ପଠା, ମାନସିଂହଙ୍କ ନିଜଗ୍ରାମ ନନ୍ଦଳା, ଯାହାକୁ ଉପନ୍ୟାସରେ ନନ୍ଦଗାଁ ବୋଲି ଉଲ୍ଲେଖ କରାଯାଇଛି ଏବଂ ରସିକ ହାଟ ଗ୍ରାମ ତଥା କଟକ ସହରର ଉଲ୍ଲେଖଥିଲେ ମଧ୍ୟ ଉପନ୍ୟାସଟି ପଲ୍ଲୀକୁ କେନ୍ଦ୍ର କରି ଲେଖାହୋଇଛି । ପଲ୍ଲୀ କୈନ୍ଦ୍ରିକ ପ୍ରାଚୀନ ଭାରତ ଆଜି ସହରର ଗ୍ରାସରେ ଛିନ୍ନଛିନ୍ନ ହୋଇ ଯାଉଛି । ତେଣୁ ଔପନ୍ୟାସିକଙ୍କର ଆହ୍ୱାନ ପଲ୍ଲୀକୁ ଫେରିଚାଲ । ଗାନ୍ଧିଜୀଙ୍କର 'ଗାଁକୁ ଫେରିଚାଲର ଆହ୍ୱାନର ସ୍ୱର ଏଥିରେ ପ୍ରତିଫଳିତ ହୋଇଥିବା ପରି ମନେହୁଏ । ଜ୍ଞାନପୀଠ ପୁରସ୍କାର ଲାଭକରିଥିବା ଶ୍ରୀ ଗୋପୀନାଥ ମହାନ୍ତିଙ୍କର 'ମାଟିମଟାଳ'ର ସ୍ୱର ମାନସିଂହ ପ୍ରଥମରୁ ଶୁଣାଇପାରିଛନ୍ତି । ବିରାଟ କଳେବର 'ମାଟିମଟାଳ'ରେ ଯେଉଁ ଆହ୍ୱାନ ଶୁଣାଯାଇଥିଲା, 'ଅନ୍ୱେଷଣ'ର କ୍ଷୁଦ୍ର କଳେବରରେ ବହୁ ପୂର୍ବରୁ ସେ ଧ୍ୱନି ନିନାଦିତ ହୋଇଛି ।

**ଉପନ୍ୟାସ ପରିକଳ୍ପନାର ସମୟ ସୀମା**—'ଅନ୍ୱେଷଣ' ଉପନ୍ୟାସ(ପ୍ରଥମ ପ୍ରକାଶ ୧୯୫୭)ର ବର୍ଣ୍ଣିତ ସମୟ ଅତି ସଂକ୍ଷିପ୍ତ । ଏକ ଶରତକାଳର ମାତ୍ର କେତୋଟି ଦିନର ଘଟଣା । ଦଶହରାର ଅଳ୍ପଦିନ ଆଗରୁ ଗୋଟିଏ ରବିବାରରେ ଉଦୟନର ଭଉଣୀ ମଲ୍ଲିକାର ଜନ୍ମଦିନ ଉପଲକ୍ଷେ ପିକନିକ୍ ଆରମ୍ଭ ହୋଇଛି ଧବଳେଶ୍ୱର ପଠାରେ । ତା ପରେ ପରେ ପ୍ରଭୁପାଦ ଦଶହରା ପାଇଁ ନିଜ ଗାଁ ଚିଲିକା ମଧ୍ୟସ୍ଥିତ ନନ୍ଦିଗାଁକୁ ଯାଇଛି । ଅଳ୍ପଦିନ ପରେ ପ୍ରଭୁପାଦର ବନ୍ଧୁ ଶ୍ରୀକଣ୍ଠ ପୂର୍ବ ଯୋଜନାନୁସାରେ ନନ୍ଦିଗାଁ ଯାଇଛି । ସେଠାରୁ ସେମାନେ କଟକ ଫେରି ଆସିଛନ୍ତି । ତା'ର ଅଳ୍ପଦିନ ପରେ ଶ୍ରୀକଣ୍ଠର ଗ୍ରାମ ରସିକ ହାତରେ ଶ୍ରୀକଣ୍ଠର ବିବାହ ହୋଇଛି ।

ଉପନ୍ୟାସର **ପ**ରିବେଶ ଏତିକି ଥିଲେ ମଧ୍ୟ କାଳଗତ ଦୃଷ୍ଟିରୁ ବିଚାର କଲେ ଉପନ୍ୟାସର ରଚନା ଭାରତର ପ୍ରାକ୍-ସ୍ୱାଧୀନତା କାଳରେ । ଉପନ୍ୟାସରେ ପ୍ରଦତ୍ତ କେତେକ ସୂଚନାରୁ ଏହାର ପ୍ରମାଣ ମିଳେ । ପ୍ରଭୁପାଦ ପିନ୍ଧିଛି ଶୁଭ୍ର ଖଦଡର ଧୋତି ଓ ପଞ୍ଜାବି, ଗୁରୁଦେବ ମଧ୍ୟ ଖଦଡ଼ର ଧୋତି ପଞ୍ଜାବି ପିନ୍ଧିଛନ୍ତି । ଗାନ୍ଧିଙ୍କ ଆନ୍ଦୋଳନ ଓ ବିଚାର । ଧାରାକୁ ଅନେକତ୍ର ସ୍ଥାନ ଦିଆଯାଇଛି—"ଗାନ୍ଧି କଥାରେ ପଡ଼ି ଲୋକମାନେ ଆଉ ଜେଲକୁ ଭୟ କରୁ ନାହାଁନ୍ତି, ଗାଁ ଗାଁ କେ କଂଗ୍ରେସ କର୍ମୀ ।" ( ପୃ-୧୫୫ ) ବିଜୟ ପ୍ରସାଦ ମଧ୍ୟ କହିଛି—"ବ୍ରିଟିଶ ଅମଳରେ ଆମେ ଯିମିତି ତୁମକୁ ଶାସନ କରୁଥିଲୁ, କଂଗ୍ରେସ ଆସିଲେବି ସେଇମିତି ଶାସନ କରିବୁ ।" ( ପୃ-୧୫୬ ) ଉକ୍ତ ଉକ୍ତିରେ ଉପନ୍ୟାସର ସମୟ ଖ୍ରୀ ୧୯୪୭ ର ନିକଟବର୍ତ୍ତୀ ବୋଲି ସୂଚନା ମିଳେ । କିନ୍ତୁ ଏହା ୧୯୪୮ ଜାନୁୟାରୀ ୩୦ର ପୂର୍ବ ଘଟଣା; କାରଣ ଗାନ୍ଧିଜୀଙ୍କ ଦେହାବସାନର କୌଣସି ସୂଚନା ବା ସ୍ୱାଧୀନତା ପ୍ରାପ୍ତିର ସ୍ପଷ୍ଟ ସଂକେତ ଉପନ୍ୟାସରେ କୌଣସି ସ୍ଥାନରେ ମିଳିପାରିନି । ମଲ୍ଲିକା କହିଛି—"ଦେଶରେ ମହାତ୍ମାଗାନ୍ଧିଙ୍କ ଆଦର୍ଶ ଓ ବାଣୀ ଚାରିଆଡେ ବିଚ୍ଛୁରିତ ହୋଇ ସାରିଲଣି । ସେହି ଅର୍ଦ୍ଧନଗ୍ନ ସନ୍ୟାସୀର ବାଣୀ କେବଳ ଯେ ପୃଥିବୀର ବୃହତ୍ତର ସାମ୍ରାଜ୍ୟକୁ ଥରେଇଥିଲା ତା' ନୁହେଁ, ତାହା ପୃଥିବୀର ସର୍ବ ପ୍ରାନ୍ତରେ କୋଟି କୋଟି ବ୍ୟକ୍ତି ଜୀବନକୁ ମଧ୍ୟ ପ୍ରଭାବିତ କରୁଥିଲା ।" ( ପୃ-୧୬୦ )

ଉପନ୍ୟାସରେ ସଚେତନ ଭାବରେ ସମସ୍ତ ସୀମା ଦେବାପାଇଁ ଔପନ୍ୟାସିକ ଯତ୍ନବାନ ହୋଇନାହାଁନ୍ତି । କଥାବସ୍ତୁର ସଂକ୍ଷିପ୍ତ ପରିଚୟରୁ ଏହାର ସମସ୍ତ ବିଷୟରେ ମଧ୍ୟ ଧାରଣା କରିହେବ ।

**ବିଷୟବସ୍ତୁର ସୂଚନା**—ଶୀତ ଶରତର ଏକ ରବିବାର । ଧବଳେଶ୍ୱରର ପଠାରେ ଜଦୟୁନର ଜାତ୍ରିଣୀ ମଲ୍ଲିକାର ଜନ୍ମଦିନ ଉପଲକ୍ଷେ ପିକ୍‌ନିକ୍‌ପାଇଁ ଜଦୟୁନର ବନ୍ଧୁମାନେ ନିମନ୍ତ୍ରିତ ହୋଇଛନ୍ତି । ମଲ୍ଲିକାର ସାନଭଉଣୀ ସୂଥିକା ସହିତ ମଲ୍ଲିକାର ସାଙ୍ଗ ଶ୍ୟାମା ଯାଇଛି । ପିକ୍‌ନିକ୍‌ର ଆୟୋଜନ କରିଛନ୍ତି ପୁଞ୍ଜିପତି ବିଜୟପ୍ରସାଦ ଯେ କି ଭବିଷ୍ୟତରେ ମଲ୍ଲିକାକୁ ବିବାହ କରିବା ପାଇଁ ଇଚ୍ଛୁକ । ବିଜୟପ୍ରସାଦର ମଲ୍ଲିକା ବାଗ୍‌ଦତ୍ତା ମାତ୍ର ପ୍ରଭୁପାଦ ମଲ୍ଲିକାକୁ ମନପ୍ରାଣ. ଦେଇ ନିଜ ତରଫରୁ ଭଲପାଇଛି । ସେହିଦିନ ଶିଳ୍ପୀ ଶ୍ରୀକଣ୍ଠ ସହିତ ଶ୍ୟାମା ମଲ୍ଲିକାର ସାକ୍ଷାତ ହେବା ସଙ୍ଗେ ସଙ୍ଗେ ରୂପବତୀ ମଲ୍ଲିକାର ଛବି ଆଙ୍କିଛି ଶ୍ରୀକଣ୍ଠ ଓ ବିଜୟପ୍ରସାଦ ସହିତ ସେହିଠାରେ ଶ୍ରୀକଣ୍ଠର ମାନସିକ ଦ୍ୱନ୍ଦ୍ୱ ଆରମ୍ଭ ହୋଇଛି ।

ପ୍ରଭୁପାଦ ପିକ୍‌ନିକ୍‌ରୁ ଫେରି ନିଜଗାଁ ନନ୍ଦଗାଁକୁ ଯାଇଛି । ଗାଁର ମହାଜନ ସାହୁକାର କଳ୍ପତରୁ ସ୍ୱାଇଁଙ୍କର ଝିଅ ସାବି ସହିତ ପ୍ରଭୁପାଦର ବିବାହ ପୂର୍ବରୁ ସ୍ଥିରୀକୃତ ହୋଇଥିଲା । ପ୍ରଭୁପାଦର ବନ୍ଧୁ ଶ୍ରୀକଣ୍ଠ ନନ୍ଦଗାଁରେ ପହଞ୍ଚିବା ପରେ ପରେ କଳ୍ପତରୁ ସ୍ୱାଇଁଙ୍କ କନ୍ୟା ସାବିତ୍ରୀ ସହିତ ଶ୍ରୀକଣ୍ଠର ଦେଖା ଓ ପରସ୍ପରକୁ ଭଲପାଇବା ଆରମ୍ଭ ହୋଇଛି । ସେଇଠାରେହିଁ ଶ୍ରୀକଣ୍ଠ ସହିତ ସାବିତ୍ରୀର ବିବାହ ପ୍ରସ୍ତାବ ପ୍ରଭୁପାଦ ପକାଇଛି ।

ଶ୍ରୀକଣ୍ଠ ଓ ପ୍ରଭୁପାଦ କଟକ ଫେରିଆସିଛନ୍ତି । ପୁଞ୍ଜିପତି ବିଜୟପ୍ରସାଦର ଜୀବନର କେତେକ କଳାଦିଗ ଉଦ୍‌ଘାଟିତ ହୋଇଛି । ପ୍ରଭୁପାଦକୁ ଆଘାତ କରିବା, ଶ୍ରୀକଣ୍ଠ ଦ୍ୱାରା ଉଠାଯାଇଥିବା ମଲ୍ଲିକାରର ଫଟୋ ଚିରିବା ଘଟଣାନେଇ ଜଦୟୁନ ପରିବାରର ବିଜୟପ୍ରସାଦ ସହିତ ସମ୍ପର୍କ ଛିନ୍ନ ହୋଇ ଯାଇଛି ।

ଶ୍ରୀକଣ୍ଠ ନିଜଗାଁ । ଋଷିକଦ୍ୱାଙ୍କୁ ଫେରିଗଲା ପରେ କଲ୍ପତରୁ ସ୍ୱାମିଙ୍କର କନ୍ୟା ମାଳବୀ ସହିତ ବିବାହ ହୋଇଲା । ଉଦପୂନ ବମ୍ବେର ଏକ ସ୍ତୁଡ଼ିକାନନେ ଚାକିରି ପାଇଲା ଓ ପ୍ରହ୍ଲାଦ ସେଠାରେ ଇକନମିକସ୍‌ରେ ଏମ୍. ଏ. ପଢ଼ିବା ପାଇଁ ଯାଇଛି । ମଲ୍ଲିକା ଟିଚର୍ସ ଟ୍ରେନିଂ ପାଇଁ କଟକରେ ରହିଛି ।

ଏକ ସାଧାରଣ କଥାବସ୍ତୁକୁ ନେଇ ଔପନ୍ୟାସିକ ମାନସିଂହ ଏକ ସଙ୍କେତଧର୍ମୀ ନାମକରଣ କରିଛନ୍ତି । 'ଅନ୍ୱେଷଣ' ନାମକରଣ କରି ମାନସିଂହ ଏକ ନୂତନ ଦିଗନ୍ତକୁ ପ୍ରଦର୍ଶନ କରାଇବା ପାଇଁ ଚାହିଁଛନ୍ତି ।

**ନାମକରଣ** :—ଔପନ୍ୟାସିକ ଉପନ୍ୟାସର ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ବିଭିନ୍ନ ସ୍ଥଳରେ ଭାରତର ସେହି ସ୍ୱର୍ଣ୍ଣଯୁଗକୁ ଖୋଜିଛନ୍ତି । ସେହି କୃଷକ-ଶାସିତ ପଲ୍ଲୀ, ବେଦ ଉପନିଷଦର ସେହି ପ୍ରାଚୀନ ପରମ୍ପରା, ଯାହାର ଗୁପ୍ତ। ଆଜି ମଧ୍ୟ ଭାରତର ଗ୍ରାମରେ ବିଦ୍ୟମାନ ତା'ର ମହତ୍ତ୍ୱ ପ୍ରକାଶ କରିବା, ବେଦର ସେହି ମୂଳକଥା ପଞ୍ଜାବର ପଲ୍ଲୀକୁ ନେଇ ଲେଖା ହୋଇଥିଲେ ମଧ୍ୟ ଏବେ ବି ଓଡ଼ିଶାର ଗାଁରେ ତା'ର ରୂପ ଦେଖାଯାଏ ।

ସେହି ଦିନର ସ୍ମୃତି କ୍ରମେ ବିଲୁପ୍ତ ହେବାକୁ ବସୁଛି । ଭାରତର ଗ୍ରାମବାସୀମାନେ କ୍ରମେ ସହରଅଭିମୁଖୀ ହୋଇ ନିଜସ୍ୱ ହରାଇ ବସୁଛନ୍ତି । ନିଜତ୍ୱ, ବେଶପୋଷାକ, ଖାଦ୍ୟ, ଗୃହ ଚଳଣି ହରାଇ, ପାଶ୍ଚାତ୍ୟ ଚଳଣୀ, ସହରି ଘଟାଟୋପ ମଧ୍ୟରେ ନିଜକୁ ଢ଼ାଙ୍କି ଦେବାବେଳେ ମାନସିଂହ ସେହି ପୁରୁଣା ଦିନର ସ୍ମୃତିର ଅନ୍ୱେଷଣ କରାଇଛନ୍ତି । ତେଣୁ ତାଙ୍କର ଉପନ୍ୟାସର ନାୟକ, ଯେ ଗ୍ରାମ ଛାଡ଼ି ସହରକୁ ପଳାଇ ଆସିଥିଲା ସେ ସହରର ଆବହାଓ୍ୱାରେ ଅତିଷ୍ଠ ହୋଇ ନିଜର ପଲ୍ଲୀମାଟିକୁ ଫେରି ଯାଇଛି । ଉପନ୍ୟାସର ଶେଷ ପୃଷ୍ଠାରେ ଗୁରୁଦେବ ଶ୍ରୀକଣ୍ଠକୁ କହୁଛନ୍ତି —"ତୋତେ ମୁଁ ଭାବି ଦେଇଥିଲି କେବଳ ଗୋଟାଏ ବିଳାସୀ, ଜୀବନ ଠାରୁ ପଳାତକ, ସୌଖୀନ, ହାଲୁକା ଧରଣର ଜୀବଟାଏ ବୋଲି । ମୁଁ କିନ୍ତୁ ଦେଖୁଛି ଆଜି ସେହି ସୌଖିନ ଜୀବନର ତଳେ ତଳେ ତୋର ଏକ

ନିରବଚ୍ଛିନ୍ନ ଅନ୍ୱେଷଣ ଓ ସାଧନା ରହିଆସିଛି । କଳାଲକ୍ଷ୍ମୀ ଆଜି ତୋତେ ବରଦାନ କରିଛନ୍ତି ଏବଂ ତାଙ୍କର ଆଶିଷ କେବଳ ନିଜର ଲକ୍ଷ୍ମୀଛଡ଼ା ଜୀବନକୁ ନୁହେଁ, ଦୁଇଟି ପଲ୍ଲୀକୁ, ଦୁଇଟି ପରିବାରକୁ ନଗର ବାସୀ ଓ ପଲ୍ଲୀବାସୀଙ୍କୁ ଆନନ୍ଦ ସୂତ୍ରରେ ବାନ୍ଧି ପାରିଛି । ରୂପଜୀବ କଳା, ସାହିତ୍ୟ ଓ ଶିଳ୍ପର ସମାଜ ପ୍ରତି ଏହାହିଁ ପ୍ରକୃତ ଦାନ । ଆଶାକରେ ଆଜି ତୋର ଅନ୍ୱେଷଣର ଏକ ନୂତନ ଅଧ୍ୟାୟ ଆରମ୍ଭହେଲା । ଏଇ ଅଧ୍ୟାୟର କୃତିତ୍ୱ ତୋର ପୂର୍ବ କୃତିତ୍ୱକୁ ବଳିଯିବ ! ଆଶାକରେ ଯାହାଲାଗି ଜାତି ତୋ ନିକଟରେ ରହିବ ଚିର କୃତଜ୍ଞ ।”

ଉପନ୍ୟାସଟିରେ ପ୍ରାଚୀନ କାଳର ସେହି ଅମର ଚଳଣିର ମହିମାମୟ ଦିଗକୁ ଅନ୍ୱେଷଣ କରାଯାଇଥିଲେ ମଧ୍ୟ ଲେଖକ ପ୍ରସଙ୍ଗକ୍ରମେ କେତେଗୋଟି ଘଟଣାର ସଂଯୋଜନ କରି ଉପନ୍ୟାସର ସଫଳତା ଦିଗକୁ ଧାବିତ ହୋଇଛନ୍ତି ।

**ଘଟଣାର ସଂଯୋଜନ** :—ଉପନ୍ୟାସର ପ୍ରଥମ ଘଟଣା ମଲ୍ଲିକାର ଜନ୍ମ ପାଳନ । ଜନ୍ମଦିନ ପାଳନ କରିବା ପ୍ରାଚ୍ୟ ପାଶ୍ଚାତ୍ୟ ଧାରାରେ ସ୍ୱୀକୃତ ହେଲେ ମଧ୍ୟ ଅନ୍ୟତ୍ର ଯାଇ ପିକ୍‌ନିକ୍ ସହିତ ଜନ୍ମଦିନ ପାଳନ କରିବା ପାଶ୍ଚାତ୍ୟ ଧାରାର ସୂଚନା ଦିଏ । ପୁଣି ସେମାନେ ପିକ୍‌ନିକ୍ ପାଇଁ ସ୍ଥାନ ନିରୂପଣ କରିଛନ୍ତି ଧବଳେଶ୍ୱର ଶୈବ ପୀଠରେ । ପୁନଶ୍ଚ, ସେଠାରେ ସେମାନେ ଆମିଷ ବ୍ୟବସ୍ଥା କରିଛନ୍ତି ।

ଧବଳେଶ୍ୱରରୁ ଫେରିଲାପରେ ପ୍ରେତଚରିତ୍ରର ଉପସ୍ଥାପନ ପାଇଁ ଲେଖକ ଶିକ୍ଷକ କରୁଣାସିନ୍ଧୁର ବନ୍ଧୁଙ୍କ ମୃତ୍ୟୁଘଟଣାକୁ ପ୍ରକାଶ କରିଛନ୍ତି, ଯେଉଁଘଟଣା ସମଗ୍ର ଉପନ୍ୟାସର ଅନ୍ତର୍ଗତରେ କୌଣସି ସମ୍ପର୍କ ରଖେନାହିଁ । ମାତ୍ର ଶିଳ୍ପୀ ଶ୍ରୀକଣ୍ଠର ଧାର୍ମିକ ମହତ୍ତ୍ୱ ସହିତ ଗୁରୁଦେବଙ୍କ ଚିନ୍ତାଧାରା ଓ ଶିକ୍ଷକ କରୁଣାସିନ୍ଧୁର କରୁଣ ପାରିବାରିକ ଜୀବନର ଚିତ୍ର ସେ ପ୍ରଦାନ କରିଛନ୍ତି । ସଦ୍ୟ ବିଧବାର ରୂପ ଦେଖିବାପାଇଁ ଯେତେବେଳେ କରୁଣା-ସିନ୍ଧୁ ଶ୍ରୀକଣ୍ଠକୁ ଆହ୍ୱାନ କରିଛି ସେତେବେଳେ କରୁଣାସିନ୍ଧୁକୁ ଶ୍ରୀକଣ୍ଠ କହିଛି—“ମୁଁ ମୋର ତୂଳିକୁ ମନୁଷ୍ୟର ଦୁଃଖଠାରୁ ବଡ଼ ମନେକରେ ନା । ଆର୍ଟିଷ୍ଟର ତୂଳି ନିଷ୍ପ୍ରାଣ କ୍ୟାମେରା ନୁହେଁ । ସେ ଜୀବନ୍ତ, ତା’ର ଅନୁଭବ

ଅଛୁ । କେବଳ ଛବି ଉଠାଇବା ପାଇଁ ମୁଁ ଜଣେ ସଦ୍ୟ ବିଧବାକୁ ଦେଖିବାକୁ ଯିବି, ଏହା ହୋଇପାରେନା ।” ( ପୃ-୬୩ )

ପ୍ରେତଚନ୍ଦ୍ରର ଉପସ୍ଥାପନ ସଙ୍ଗେ ସଙ୍ଗେ ଔପନ୍ୟାସିକ ଉପନ୍ୟାସର କେତେକ ଚରିତ୍ରଙ୍କ ମୁଖରେ ସମସାମୟିକ ଘଟଣାବଳୀ ତଥା ରାଜନୀତିର ଚିତ୍ର ପ୍ରଦାନ କରିଛନ୍ତି ।

ଗାନ୍ଧିଜୀଙ୍କ ଚିନ୍ତାର ସେହି ଅତୀତ ଭାରତର ଗ୍ରାମ ସ୍ୱରାଜ୍ୟ ବା ପଞ୍ଚାୟତ ଶାସନକୁ ଲେଖକ ମଧ୍ୟ ପସନ୍ଦ କରିଛନ୍ତି । ଯେଉଁଠି ବିଚାର ସମୟରେ ସଭାପତି ନ ଥାନ୍ତି ମାତ୍ର ଗଛତଳେ ଗଛତଳେ ପଞ୍ଚୁପରମେଶ୍ୱର ବସି ବିଚାର କରି ପାରନ୍ତି, ସେ ବିଷୟଟିକୁ ଦେଖାଇବାପାଇଁ ଲେଖକ ଗ୍ରାମରେ ଗ୍ରାମପଞ୍ଚାୟତର ଏକ ସଭା, ଗ୍ରାମର ଭୋଜି, ଗ୍ରାମଲୋକମାନଙ୍କର ବିଚାରଧାରା ଘଟଣାର ଉପସ୍ଥାପନ କରିଛନ୍ତି ।

ପଲ୍ଲୀର ଅବିକଳ ଚିତ୍ର ପ୍ରଦାନ କରିବାପାଇଁ ପ୍ରଭୁପାଦକୁ ଔପନ୍ୟାସିକ ଗ୍ରାମର ବିଲ, ତୋଟାମାଳ, ସମୁଦ୍ରକୂଳ ବୁଲାଇଦେଇ ପ୍ରଭୁପାଦର ଦୃଷ୍ଟିରେ ଗାଁର ଚିତ୍ର ପ୍ରଦାନ କରିଛନ୍ତି, ଯେପରି ପରବର୍ତ୍ତୀ ସମୟରେ ଔପନ୍ୟାସିକ ଗୋପୀନାଥ ମହାନ୍ତିଙ୍କ ମାଟି ମଟାଳ ଉପନ୍ୟାସର ରବି ଗାଁକୁ ଦେଖି ଦେଖି ଯାଉଛୁ ।

ଶ୍ରୀକଣ୍ଠ ପରିବାରର ଗୌରବ, ବିଜୟ ପ୍ରସାଦର ଅତ୍ୟାଚାରୀ ପରିବାରର ଘଟଣା ସଂଯୋଜନ ପାଇଁ ଗୁଳିକର ନଟିଆର କରୁଣ ପରିସ୍ଥିତି ପ୍ରଭୁପାଦର ମଧ୍ୟସ୍ଥତାରୁ ଆଘାତ ପାଇବା, ବିଜୟପ୍ରସାଦ ମଲ୍ଲିକାର ଫଟୋ ଚିରିବା ଘଟଣା ପ୍ରଭୃତିର ଅବତାରଣ କରିଛନ୍ତି । ଏହି ଘଟଣା ସହିତ ମାତ୍ର ୧୮୮ ପୃଷ୍ଠା ଡାଉନ ସାଇଜର ବହିଟିରେ ଲେଖକ ଅନେକ ବିଚିତ୍ର ଚରିତ୍ରର ଉପସ୍ଥାପନା କରାଇ ସେମାନଙ୍କ ଚାରିତ୍ରିକ ବୈଶିଷ୍ଟ୍ୟ ଦେଖାଇ ପାରିଛନ୍ତି ।

**ଚରିତ୍ର**—ଗ୍ରେଟ ଉପନ୍ୟାସଟିରେ ବିଭିନ୍ନ ଟାଇପ୍‌ର ଦଶଟି ପୁରୁଷ ଚରିତ୍ର ଓ ସାତଟି ନାରୀ ଚରିତ୍ର ଚିତ୍ରଣ କରିବା ପାଇଁ ଔପନ୍ୟାସିକ ଚେଷ୍ଟିତ । ସାତଟି ନାରୀଚରିତ୍ର ମଧ୍ୟରୁ ପାଞ୍ଚଟି କେବଳ ମା’ ଚରିତ୍ର,

ମାତ୍ର ଦୁଇଟି ଯୁବକଙ୍କ ଚରିତ୍ର । ଏହି ଚରିତ୍ରମାନଙ୍କ ମଧ୍ୟରୁ ମାତ୍ର କେତୋଟିକୁ ଗ୍ରହଣ କଲେ ସମସ୍ତ ଚରିତ୍ର ଉପନ୍ୟାସର ପ୍ରାରମ୍ଭରୁ ଶେଷପର୍ଯ୍ୟନ୍ତ ବିଦ୍ୟମାନ ପୂର୍ବରୁ ସୂଚନା ଦିଆଯାଇଛି ଯେ ଉପନ୍ୟାସର ଘଟଣାମାନ ତିନୋଟି ସ୍ଥାନକୁ କେନ୍ଦ୍ର କରି, କଟକ, ନନ୍ଦଗାଁ ଓ ରସିକ ହାଟ ଗ୍ରାମ । ଏହା ମଧ୍ୟରୁ ଉପନ୍ୟାସର ବହୁ ଅଂଶ କେବଳ ନନ୍ଦଗାଁକୁ କେନ୍ଦ୍ର କରି ଲେଖା ହୋଇଛି ।

**ପ୍ରଭୁପାଦ** :—'ଅନ୍ୱେଷା' ଉପନ୍ୟାସରେ ପ୍ରଭୁପାଦ ଚରିତ୍ର ପ୍ରାରମ୍ଭରୁ ଶେଷପର୍ଯ୍ୟନ୍ତ ରହିଥିଲେ ମଧ୍ୟ ଏହି ଚରିତ୍ର ଉପନ୍ୟାସର ନାୟକ ହେବାର ଗୌରବ ଲାଭକରି ପାରିନି । ପ୍ରଭୁପାଦର ଘର ସହରଠାରୁ ଅନେକ ଦୂରରେ ଥିବା ନନ୍ଦଗାଁରେ, କିନ୍ତୁ ସେ ପ୍ରାୟ ବିଦେଶରେ କଟାଇଛି । ଏବେ ସେ ପୋଷ୍ଟଗ୍ରାଜୁଏଟ୍ ଛାତ୍ର । କ୍ଷୌର କର୍ମର ଦୈନନ୍ଦିନ ଅଭ୍ୟାସ ବହୁକାଳ କାଳପରେ ସେ ଏବେ ପ୍ରକୃତି ନିକଟରେ ଆତ୍ମସମର୍ପଣ କରିସାରିଛି । ତା'ର ଗଣ୍ଡ ଓଷ୍ଠ ଓ ଚିବୁକ ବର୍ତ୍ତମାନ କୃଷ୍ଣମସୃଣ ଶ୍ମଶ୍ରୁର ପ୍ରଲେପରେ ଅଲଂକୃତ । ପ୍ରାତଃସ୍ନାନ ତା'ର ବହୁଦିନର ଅଭ୍ୟାସ । ଶୁଭ୍ର ଖଦଡ଼ର ଧୋତି ଓ ପଞ୍ଜାବି ପିନ୍ଧି ସେ ପିକ୍‌ନିକ୍‌କୁ ବାହାରିଛି । ଜଣେ ଶିକ୍ଷକର ପୁତ୍ର ଆଦର୍ଶ-ବାଦୀ ହୋଇପାରିବ ଏହି ଧାରଣାର ବଶବର୍ତ୍ତୀ ହୋଇ ଲେଖକ ଦୁଇଟି ଶିକ୍ଷକ ସନ୍ତାନର ଚିତ୍ର ଦେଇଛନ୍ତି । ଶିକ୍ଷକ ମଥୁରାମୋହନଙ୍କର ସନ୍ତାନ ଉଦୟନ ଓ ଶିକ୍ଷକ ଜଗନ୍ମୋହନଙ୍କର ସନ୍ତାନ ଏହି ପ୍ରଭୁପାଦ ।

ଏକ ଆଦର୍ଶ ଚରିତ୍ର ଭାବରେ ସୃଷ୍ଟି କରିବାକୁ ଯାଇ ଶେଷ ପର୍ଯ୍ୟନ୍ତ ତା'ର କାର୍ଯ୍ୟକଳାପରେ କୌଣସି ଦୋଷ ଦେଖାଇ ନାହାନ୍ତି । ମଣିଷର ମନ କିନ୍ତୁ ଏକ ଭିନ୍ନ ଉପାଦାନରେ ଗଢ଼ା । ଆଦର୍ଶର ଘଟାଟୋପ ମଧ୍ୟରେ ମଣିଷ ମନର ଅସଲ ରୂପ ପରିପ୍ରକାଶ ଲାଭ କରିଥାଏ ।

ପ୍ରଭୁପାଦ ଗାଁର ମହାଜନ କଲ୍ପତରୁ ସ୍ୱାଇଁର କନ୍ୟା ସାବିତ୍ରୀର ବାକ୍‌ଦତ୍ତ । ସେ ନିଜେ ମଧ୍ୟ ସାବିତ୍ରୀକୁ ବିବାହ କରିବାପାଇଁ ସ୍ଥିରକରିଛି ; କିନ୍ତୁ ଯେତେବେଳେ ଉଦୟନର ଭଉଣୀ ମଲ୍ଲିକାର ଦେଖା ପାଇଛି ସେତେବେଳେ ସେ ନିଜ ତରଫରୁ ମଲ୍ଲିକାକୁ ଭଲ ପାଇ ବସିଛି । "ପିକ୍‌ନିକ୍ ପାର୍ଟିରେ ଯୋଗଦେବାକୁ, ଧବଳେଶ୍ୱର ଦେଖିବାକୁ,

ବିଶେଷତଃ······ଗୋଟିଏ ସୁନ୍ଦର ମୁହଁକୁ ଆନ୍ତର ଥରେ । ହେଲେ ପରନ୍ତୁ, ସହସ୍ରତମ ଥର ଆନ୍ତର ଥରେ ଅତି ନିକଟରେ ଦେଖିବାକୁ ତା'ର ତୀବ୍ର ଆକର୍ଷଣ ।" (ପୃ-୫) ।

ସେ ରୂପର ଉପାସକ । ତେଣୁ ରୂପପ୍ରତି ତା'ର ଦୁର୍ବଳତା ରହିବା ସ୍ୱାଭାବିକ । ମାତ୍ର, ସେ ଉପାସନା ଉଦ୍ଦେଶ୍ୟପ୍ରଣୋଦିତ । ଲେଖକଙ୍କ ଭାଷାରେ—"ସେ ସୌନ୍ଦର୍ଯ୍ୟର ଅହେତୁକ ଉପାସକ ପ୍ରକୃତିର ନରନାରୀ ଶିଶୁବାଳକବାଳିକା, ଯୁବକଯୁବତୀ, ଶିଳ୍ପ ସ୍ଥାପତ୍ୟ, ଯେଉଁଠି ସୌନ୍ଦର୍ଯ୍ୟର ଅଭିବ୍ୟକ୍ତି ଘଟିଥିବାର ସେ ଅନୁଭବକରେ ସେ ସେଇଠି ମୁଗ୍ଧ ହୋଇ କ୍ଷଣେ ଅଟକିଯାଏ" । ( ପୃ-୧୦୧ ) ପୁଣି "ସେ ସୌନ୍ଦର୍ଯ୍ୟକୁ ଯୌବନ ଓ ଯୌନ ବିକାଶଠାରୁ ଭିନ୍ନକରି ଦେଖିବାକୁ ଶିଖିଛି । ରୂପ ସଙ୍ଗେ ଯୌବନ ଓ ଯୌନ ବାସନାର ଅଙ୍ଗାଙ୍ଗି ସମ୍ପର୍କ ଯେ ନାହିଁ ତାହା ସେ ମନେ ମନେ ଭାବିଛି ଅନେକବାର । ଯଦିଓ କାର୍ଯ୍ୟତଃ ତା'ର ଚିତ୍ତ-ଦେଶରେ ରୂପର ଅନାସକ୍ତ ଉପାସନା ଏ ପର୍ଯ୍ୟନ୍ତ ଧୂମହୀନ ବହ୍ନିଶିଖା ପରି ଏକାନ୍ତ ବିଶୁଦ୍ଧ ହୋଇ ପାରିନି ।" ( ପୃ ୧୦୨ ) ମଲ୍ଲିକା ପ୍ରତି ପ୍ରଭୁପାଦର ଆନ୍ତରିକ ଦୁର୍ବଳତାକୁ ଲେଖକ ପ୍ରକାଶ କରିଛନ୍ତି—

"ବିଜୟ କୁମାରର ବାକ୍‌ଦତ୍ତା ସାଥି ଉଦୟନର ଭଗ୍ନୀ ମଲ୍ଲିକାର ସୂକ୍ଷ୍ମ ପ୍ରତ୍ୟକ୍ଷତାରେ ଆସି ଇ' ଭିତରେ ଏହି ରୂପର ଆରାଧନା ଯେଉଁ ବିପ୍ଳବ ତା'ର ମର୍ମଦେଶରେ ଆରମ୍ଭ କରି ଦେଇଛି ସେ ସମସ୍ତ ବର୍ତ୍ତମାନ ପ୍ରଭୁପାଦର ଅନ୍ତରରେ ଉଦ୍‌ବେଳିତ ହେବାକୁ ଲାଗିଲା । × × କିନ୍ତୁ ଏଇ ସାଙ୍ଗର ଭଉଣୀଟି ଯେଉଁ ବିପ୍ଳବ ତା ଆତ୍ମାରେ ନିକଟରେ ଆଣି ଦେଇଛି ଆପାତତଃ ବାହାରକୁ ପ୍ରଭୁପାଦର କିଛି ଘଟି ନ ଥିଲାପରି ଜଣାଗଲେ ମଧ୍ୟ, ସେ ନିଜେ ଜାଣେ ସଙ୍କଟରେ ସେ ଆସି ପହଞ୍ଚିଛି । ଏଇ କେତୋଟି ଦିନ ଭିତରେ ତା'ର ସମସ୍ତ ଚିନ୍ତା ଓ ଯୋଜନା ସବୁ ଯେପରି ଓଲଟ ପାଲଟ ହୋଇଯାଇଛି । ସେ, ସେପ୍ରକାର ବିପ୍ଳବକୁ ହୃଦୟରେ ଧରି ସାବିତ୍ରୀକୁ ବିବାହ କରିବାକୁ ଭାବିବା ଘୋର ପ୍ରତାରଣା ହେବନାହିଁ କି" । (ପୃ-୧୦୨)

ଜୀବନ ସଂଗ୍ରାମ କ୍ଷେତ୍ରରେ ଅଟେଇ ଯିବାପାଇଁ ପ୍ରଭୁପାଦ ଏକ ଦୁର୍ବଳ ଚରିତ୍ର । ସେ ଶିକ୍ଷକ କନ୍ଦର୍ପ୍ରଶାସିନ୍ଧୁର ବିବାହିତ ଜୀବନର ବିଫଳତା ଦେଖିଲା ପରେ ବିବାହ ପାଇଁ ସାହସ କରି ପାରିନି, ମାତ୍ର, ହୃଷୀପାଣିଗ୍ରାହୀର ପବିତ୍ର ଦାମ୍ପତ୍ୟଜୀବନର ଚିତ୍ର ଦେଖି ତା'ର ହୃଦୟରେ ବିବାହପାଇଁ କାମନା ଜାଗରିତ ହୋଇଛି ।—"ପାନବରର ଅମଳ ଗମ୍ଭୀର ପ୍ରେମସ୍ରୋତର ତଟ-ଦେଶରେ ଠିଆ ହୋଇ ସେ ମନେକଲା ଏ ଅନୁଭୂତି କ'ଣ ଜୀବନରେ ସମ୍ଭବ ହୋଇ ପାରିବ ? କିଏ ତା'ର ପାନରାଣୀ, ସାବି ନା ଆଉ କିଏ ?" ସାବିତ୍ରୀ ପ୍ରତି ମଧ୍ୟ ପ୍ରେମର ନିଷ୍ଠା ନ ଥାଇ ସେ ଭାବୁଛି "ସାବିର ଯେତେ ପରିବର୍ତ୍ତନ ହେଲେହେଁ ସେ ଏଇ ଅଛି, ଏଇ ହାତ ପାଖରେ ସୁଲଭ ଖେଳନା । ତେଣୁ ତାକୁ ନେଇ ବିନଦ୍ରଯାମିନୀ ବା ଅସ୍ଥିର ଦିବସ କଟାଇବାର ମାନସିକ ଦ୍ୱନ୍ଦ୍ୱ ଏ ପର୍ଯ୍ୟନ୍ତ ଘଟିନି । ହେଲେ ଭଲ, ନ ହେଲେ କ୍ଷତି ନାହିଁ; ଏଇପରି (ପୃ-୧୦୩) ।

ମୋଟ ଉପରେ ସେ ଉପନ୍ୟାସର ଶେଷପର୍ଯ୍ୟନ୍ତ ମଲ୍ଲିକାର ସ୍ନେହର ଅନ୍ୱେଷଣ କରିଛି । ମାତ୍ର ତା'ଭିତରେ ଦେଖାଦେଇଥିବା ସଂସ୍କୃତି ପ୍ରୀତି ତଥା ସାମାଜିକ ଉତ୍ଥାନ ବିଲୁପ୍ତ ହୋଇଯାଇଛି ।

**ଶ୍ରୀକଣ୍ଠ:**—ଶ୍ରୀକଣ୍ଠ ଜଣେ ଆର୍ଟିଷ୍ଟ, ଅବିବାହିତ । "ଶ୍ରୀକଣ୍ଠଙ୍କୁ ବିଜୟ ପ୍ରସାଦ ଭାବେ ଏକ ଭାଗାବଣ୍ଡ ଓ ଶ୍ରୀକଣ୍ଠ ବିଜୟ ପ୍ରସାଦକୁ ଭାବେ ଏକ ବିଷାକ୍ତ ପାରସାଇଟ୍—ପାରଙ୍ଗପୁଷ୍ଟ ଉଦ୍ଭିଦ ।" (ପୃ-୩୩) ଶ୍ରୀକଣ୍ଠ ଏକ ଅବକ୍ଷୟୀ ଜମିଦାର ପରିବାରର ସନ୍ତାନ, ଯେଉଁ ପରିବାରର ସମ୍ପତ୍ତି ନେଇ ସାଧାରଣ ଗୁମାସ୍ତାରୁ ବିଜୟ ପ୍ରସାଦର ପରିବାର ବିରାଟ ହୋଇଛନ୍ତି । ଶ୍ରୀକଣ୍ଠ, ପିତାମାତାଙ୍କ ମୃତ୍ୟୁପରେ ଗାଁ ଛାଡ଼ିଛି । ପ୍ରଥମତଃ ପରିବାରର ପୂର୍ବ ଆଡ଼ମ୍ବରକୁ ଚଳାଇବା କଷ୍ଟକର । ପୁଣି ଔପନ୍ୟାସିକ ଶ୍ରୀକଣ୍ଠର ଗାଁ ଛାଡ଼ିବାର କାରଣ ଦର୍ଶାଇଛନ୍ତି —"ସେ ଧରିନେଇଥିଲା ଯେ କଳା କେବଳ ନଗରରେ ହିଁ ବଞ୍ଚିପାରେ । ପଲ୍ଲୀରେ ତା'ର ଚିତ୍ର କିଣିବାର ଦୂରେ ଥାଉ କିଏ ବା ବୁଝିବ ? କଳାର ସମଜ୍‌ଦାର ହେବାପାଇଁ ଦରକାର ଉଚ୍ଚଶିକ୍ଷା । ସେ ଶିକ୍ଷିତ ସବୁ ପଲ୍ଲୀରେ କାହାନ୍ତି ? କଳାକାରର ପୃଷ୍ଠପୋଷକ ହେବେ କେବଳ ଧନୀମାନେ । ସେ ଧନବାନ ଲୋକ ପଲ୍ଲୀରେ ଆସିବେ କାହିଁ ?

ତା'ର ଚିତ୍ରର ଉପାଦାନ ପଲ୍ଲୀରେ ମିଳବ କାହୁଁ ? ଅନ୍ୟ କାରଣ ହେଲା ବିଜୟପ୍ରସାଦ ପରିବାରଭଳି ପରିବାରର ପଲ୍ଲୀଜୀବନକୁ କଳୁଷିତ-କରଣ ।"

ଉପନ୍ୟାସର ପ୍ରଥମ ଅଂଶରେ ଶ୍ରୀକଣ୍ଠ ଧବଳେଶ୍ୱର ପଠାରେ ଚିତ୍ର ଆଙ୍କିବାବେଳେ ମଲ୍ଲିକା ଓ ତା'ର ସାଥି ଶ୍ୟାମାର ଛବି ଆଙ୍କିଛି । ତା'ର ଚିତ୍ର ବିଷୟରେ ଲେଖକ ପରିଚୟ ଦେଇଛନ୍ତି—ତା'ଘରକୁ ପଶି-ଗଲେ ଆଖିରେ ପଡ଼େ "ଜଳ ଓ ଅଗ୍ନି" ଚିତ୍ରଟି । ଗୋଟିଏ ପଲ୍ଲୀ ପୁଷ୍କରିଣୀ ଓ ତା' ଜଳରେ ସ୍ନାନରତା ଏକ ନବବୟସୀ ସୁନ୍ଦରୀ ପଲ୍ଲୀବାଳା—ଏଇ ତା'ର ବିଷୟବସ୍ତୁ । ସେ ରୂପକୁ ଅଗ୍ନି ମନେକରେ ଓ ସେଇ ରୂପକୁ ନେଇ ପ୍ରତ୍ୟହ ତୂଳି ଓ ବର୍ଣ୍ଣରେ ଖେଳାକରେ ସେ ଏ ପର୍ଯ୍ୟନ୍ତ ସେଥିରେ ଦଗ୍‌ଧ ହୋଇନି କିପରି ? ତାହାହିଁ ଭାବିବାର କଥା "(ପୃ-୯)

ଲେଖକ ଏଇ ଯେଉଁ ଆଶଙ୍କା କରିଥିଲେ ତାହା ବେଶିଦିନ ଯାଇନି । ଅଳ୍ପଦିନ ପରେ ସେ ପୂଜାଛୁଟିରେ ପ୍ରଭୁପାଦର ଗାଁ ନନ୍ଦିଗାଁକୁ ଯାଇଛି । ଆଉ ସେଇଠି ଭେଟିଛି ପଲ୍ଲୀକୁମାରୀ ସାବିତ୍ରୀକୁ । ଯେତେବେଳେ ଗାଁ ତୋଟାରେ ପ୍ରଥମେ ସାବିତ୍ରୀକୁ ଭେଟିଛି, ଲେଖକଙ୍କ ଭାଷାରେ—"ପଲ୍ଲୀର ପ୍ରସ୍ଫୁଟିତ ପୁଷ୍ପ ସାବିତ୍ରୀ, ହେଳାୟିତ ତା'ର ବାସ । ସେହି ବସ୍ତ୍ରର ଆବରଣକୁ ହେଳାରେ ଠେଲିଦେଇ ତା'ର ଭରାଯୌବନ ସହସ୍ର ବିନ୍ଦୁରେ ନିସ୍ୟନ୍ଦିତ ହୋଇପଡ଼ୁଛି ଅଯତ୍ନ-ଶିଥିଳତାର ପ୍ରଚୁର କେଶଗୁଚ୍ଛ । ମୁଖରେ ଘର୍ମମୌକ୍ତିକର ସୁନ୍ଦର ଆସ୍ତରଣ । ହାତରେ ତା'ର ସଦ୍ୟ-ଛିନ୍ନ ପ୍ରସ୍ଫୁଟିତ କଇଁଫୁଲ (ପୃ-୧୧୨)

ଶ୍ରୀକଣ୍ଠର ମହତ୍ତ୍ୱ ବଢ଼ାଇବାପାଇଁ ଲେଖକ ପ୍ରଭୁପାଦ ସହିତ ତୁଳନାକରି କହିଛନ୍ତି—"ଶ୍ରୀକଣ୍ଠ ଆସିବା ଯାଏ ପ୍ରଭୁପାଦ ହିଁ ଥିଲା ଏ ଗ୍ରାମରେ ସଭ୍ୟ ଶିକ୍ଷିତ ଲୋକର ପ୍ରତିନିଧି । ଶ୍ରୀକଣ୍ଠର କଳାମୟ ବ୍ୟକ୍ତିତ୍ୱ ନିକଟରେ ପ୍ରଭୁପାଦ ହୋଇ ଉଠିଛି ସ୍ଥୂଳ, ରୁକ୍ଷ, ଅନାଗ୍ରହ । ସାବିତ୍ରୀ ତେଣୁ ସେହି ସୁନ୍ଦର ଯୁବକଟିକୁ ଲୁକ୍‌କାୟିତ ସ୍ଥାନରୁ ଭଲକରି ଦେଖି-ନେଇଥିଲା ଏବଂ ଯେତିକି ଦେଖୁଥିଲା ତା ମନରେ ସେତିକି ସେତିକି କି ଏକ ଅନୁଭୂତ ବିକାର ବାଜୁଥିବାର ସେ ଅନୁଭବ କରୁଥିଲା (ପୃ-୧୨୨)

ବିଶ୍ୱଯୁଦ୍ଧର ଗାଁ ତୋଟାରେ ପାର୍ବତୀକୁ ଭେଟିବାରେ ଶ୍ରୀକଣ୍ଠ ମନରେ ଯେଉଁ ଭାବାବେଗକୁ ଲେଖକ ପ୍ରକାଶ କରିଛନ୍ତି । ସେଥିରେ ଶ୍ରୀକଣ୍ଠ ଚରିତ୍ରର ବୈଶିଷ୍ଟ୍ୟ ପ୍ରତିପାଦିତ—"ଜଗତର ସକଳ ରାଜା, ମହାରାଜା ଡ଼ିକ୍‌ଟେଟରଙ୍କୁ ଯେ ଆଙ୍ଗୁଠି ଦେଖାଇ ପାରନ୍ତି, ଯେ ଭୟଙ୍କରେ ତାହାକୁ ନା ନନ୍ଦଗାଁର ମୂର୍ଖ, କଲ୍ପନାରୁ ସ୍ୱାଇଁର ଗ୍ରାମ୍ୟକନ୍ୟା ପାର୍ବତୀକୁ, ଅବଳାର କି ବିରାଟ ଜୟ ସତେ । (ପୃ-୧୨୫)

ନନ୍ଦଗାଁରେ ପାର୍ବ ଶ୍ରୀକଣ୍ଠ ପରସ୍ପରକୁ ନୀରବ ଭଲପାଇବାର ବେଦନା ନେଇ ଫେରିଛନ୍ତି । ପୁଣି ବାହାର ଦେଖାକୁ ଶ୍ରୀକଣ୍ଠ ପୂର୍ବପରି ଥିଲେ ମଧ୍ୟ ଭିତରେ ଭିତରେ ତା'ର ଅନ୍ତର୍ଦେଶରେ ଏକ ବିପୁଳ ଭୂମିକମ୍ପ ଯେ ଏ ଭିତରେ ଘଟିଯାଇଛି ତା'ର କୌଣସି ସୂଚନା ସେ ବାହାରକୁ ଦେଇ ନ ଥିଲା । ସରଳା ଅପାପବିଦ୍ଧା ନିରୀହା ପଲ୍ଲୀକୁମାରୀ ପାର୍ବତୀ ତାର କବି ଓ ଶିଳ୍ପୀର ଅନ୍ତରକୁ ଓଲଟ ପାଲଟ କରିଦେଇଥିଲା (ପୃ-୧୪୨) ନନ୍ଦଗାଁକୁ ଫେରିଲା ପରେ ଶ୍ରୀକଣ୍ଠ ଭାବୁଛି "ପୁରୁଷର ସାର୍ଥକତା କ'ଣ ନାରୀ ହାତରେ ? ମୋ ଜୀବନର ସକଳ ସୁଖ କ'ଣ ପାର୍ବତୀ ହାତରେ ?" (ପୃ-୧୪୨)

ଶ୍ରୀକଣ୍ଠ କଟକ ଫେରି ଆସିଲା ପରେ ପୁଣି ନିଜ ଗ୍ରାମ ରସିକ-ହାଟକୁ ଫେରି ଯିବାକୁ ମନେ କରିଛି । ସେ ସେଇଠାରେ ହିଁ ତା'ର ଭବିଷ୍ୟତକୁ ଅନ୍ୱେଷଣ କରିବ । ସେ ଯେଉଁ ନୂତନ ନଗର ସନ୍ଧାନ କରୁଥିଲା, ତାହା ସହରରେ ସମ୍ଭବ ନୁହେଁ । ବୈଦିକ ଭାରତର ମୁକ୍ତି ପଲ୍ଲୀରେ ହିଁ ତାହା ବିଦ୍ୟମାନ । ପଲ୍ଲୀକୁମାରୀ ପାର୍ବତୀକୁ ବିବାହ କରି ସେ ରସିକହାଟରେ ଅବସ୍ଥାନ କରିଛି ।

**ବିଜୟୀ ପ୍ରସାଦ** :—'ଅନ୍ୱେଷଣ ଉପନ୍ୟାସର ଖଳ ଚରିତ୍ର ଭାବରେ ଲେଖକ ବିଜୟୀପ୍ରସାଦ ଚରିତ୍ରର ଅବତାରଣା କରିଛନ୍ତି । ଔପନ୍ୟାସିକ ଫକୀରମୋହନ ଯେପରି ବଂଶ ପରମ୍ପରା ଓ ବଂଶ ଗୌରବ ଉପରେ ଚରିତ୍ରର ପ୍ରତିଫଳନରେ ବିଶ୍ୱାସ କରୁଥିଲେ, ମାନସିଂହ 'ଅନ୍ୱେଷଣ'ରେ ଅନୁରୂପ ଚିନ୍ତାଧାରାକୁ ବ୍ୟକ୍ତ କରିଛନ୍ତି । ରାମଚନ୍ଦ୍ର

ମଙ୍ଗରାଜ (ଛ'ମାଣ ଆଠଗୁଣ୍ଠ) ନାଜର ନଟବର ଦାସ (ମାମୁଁ) ରାଜୀବ ଲୋଚନ (ସଭ୍ୟ ଜମିଦାର) ପ୍ରଭୃତିରେ ସେ ଦେଖାଇଛନ୍ତି ଯେଉଁମାନଙ୍କ ପରମ୍ପରା ଉନ୍ନତ ନୁହେଁ ସେମାନେ ଉଚ୍ଚ ମାନବିକ ଗୁଣସମ୍ପନ୍ନ ହୋଇ ପାରିବେ ନାହିଁ । ମାତ୍ର ବଂଶଗୌରବ ଥାଇ ସାମୟିକ ଦରିଦ୍ର ବା ପଥ-ଭ୍ରଷ୍ଟ ହେଲେ ମଧ୍ୟ ସେ ଚରିତ୍ରଗୁଡ଼ିକ ମାନବୀୟ ମହତ ଗୁଣରେ ଉଦ୍‌ଭାସିତ ହୋଇ ପାରନ୍ତି । ଉଦ୍ଧତ ବିଜୟପ୍ରସାଦର ବଂଶ ପରିଚୟ ଦେବାକୁ ଯାଇ ଅନ୍ୱେଷଣରେ ମାନସିଂହ ଲେଖିଛନ୍ତି—"ବିଜୟପ୍ରସାଦ କାନୁନଗୋର ପ୍ରପିତାମହ ଥିଲେ ନିଜଗାଁର ନିକଟବର୍ତ୍ତୀ ଏକ ବଡ଼ ଜମିଦାରର ସାମାନ୍ୟ ଗୁମାସ୍ତା ମାତ୍ର ଥିଲେ । ମାତ୍ର ୫୦।୬୦ ବର୍ଷର ଇତିହାସ ××× ଆଜି ବିଜୟ ମୋଟରକାର ବିନା ଘରୁ ବାହାରୁନି ××× ଥିଲେ ତାର ଗୋଟେଇଁ ବାପାର ବାପା ତା'ର ଗାଁରୁ କଟକକୁ ପ୍ରାୟ ୪୦ ମାଇଲ ବାଟ ନିଜ ବୋଝ ନିଜେ ବୋହି ଚାଲି ଚାଲି ଆସୁଥିଲା, ସେ ପୁଣି ପରର ଭୃତ୍ୟ ଭାବରେ । ××× କୃତ୍ତିବାସଙ୍କ ପୁଅ ନେତ୍ରାନନ୍ଦ ବ୍ରିଟିଶ ସରକାର ଏ ଦେଶରେ ପ୍ରଥମ ଜମିଜମା ବନ୍ଦୋବସ୍ତ କଲାବେଳେ ଗୋଟିଏ ଅମିନ—ସେଠାରୁ କାନୁନଗୋ—ପରର ଜମି ମାପୁ ମାପୁ ନିଜର ଜମି ଓ ଟଙ୍କା ବଢ଼ାଇ ଚାଲିଲେ । ××× ନେତ୍ରାନନ୍ଦଙ୍କ ପୁଅ ଗୋପୀନାଥ ଇଂରାଜୀ ପଢ଼ିଲେ ଏବଂ ବ୍ରିଟିଶ ସରକାରଙ୍କ ତଳେ ଏକ ନୌକରୀ କରି ବଂଶର ସୁଖ ଏବଂ ଗର୍ବାଧିକ ମଧ୍ୟ ଉଜ୍ଜ୍ୱଳ କରି ନେଇଗଲେ । ନୌକରୀର ଅଳ୍ପକାଳ ଭିତରେ ଗୋପୀନାଥ କଟକରେ ପ୍ରକାଣ୍ଡ ବଗିଚା ଘର ସଙ୍ଗେ ବଂଶର ପୂର୍ବ ଖାମିଦ ମୋହନ୍ତିରାୟଙ୍କ ଜମି ଓ ଜମିଦାରୀ ମଧ୍ୟ କିଣି ପକାଇଲେ ।

ହାକିମ ଗୋପୀନାଥ ଗଲେଣି । ମଲାବେଳକୁ ସେ ଏପରି ଏକ ଧନ ସମ୍ପତ୍ତି ଛାଡ଼ିଯାଇ ଥିଲେ ଯେ ଦୁଇ ପୁଅଙ୍କ ଜୀବନ ବିନା ପରିଶ୍ରମରେ ଏକ ରଙ୍ଗୀନ ରୂପକଥା ହୋଇ ରହିବ । ବିଜୟ ତେଣୁ ଏକ ପ୍ରକାର ଦାୟିତ୍ୱହୀନ ରାଜପୁତ୍ର ପରି ସମୟ କଟେଇ ଆସିଛି । ବିଜୟ ଉପରେ ଘର ଓ ବ୍ୟବସାୟର କେଉଁ ଦାୟିତ୍ୱ ଅଛି ଜଣାଯାଏନା । ସେ ପ୍ରାୟ କଲିକତା ବମ୍ବେ ଦୌଡ଼େ । ମାଟ୍ରିକ ପାଶ୍ କରି କଲେଜରେ ନାମ ଲେଖାଇଥିଲା, ଫେଲହେଲା, ଆଉ ପଢ଼ିଲା ନାହିଁ । ମନେ କଲା ପଢ଼ି ଲାଭ କ'ଣ ? ସେ

ଦେଖିଛୁ ବି. ଏ. ଏମ. ଏ, ନୌକରୀ ପାଇଁ ଗୋଡ଼ ଭାଙ୍ଗି ଆସି ଠିଆ ହେଉଛନ୍ତି । ଜ୍ଞାନ ଆହରଣର ପରିଶ୍ରମ ସେ କରନ୍ତା ବା କାହିଁକି ? ଲେଖକଙ୍କ ଉକ୍ତିରୁ ତା'ର ଚରିତ୍ରିକ ମହତ୍ତ୍ୱ ସ୍ପଷ୍ଟ ହୋଇପଡ଼େ—"ବିଜୟ ଜୀବନଟାକୁଇଁ ଭାବୁଥିଲା ଗୋଟାଏ ଭଣ୍ଡାର ଘର, ଯେଉଁଠୁ ସେ ହାତ ବଢ଼ାଇ ଆଞ୍ଜୁଳା ଭର୍ତ୍ତିକରି କେବଳ ନେଇ ଆସିବ ଭୋଗ ଓ ସୁଖ, ତା'ର ସବୁ ପ୍ରବୃତ୍ତିମାନଙ୍କ ଭିତରେ ପ୍ରଧାନ ହୋଇ ଉଠିଲା ସଂଗ୍ରହ ଓ ଅଧିକାର । ଘୋଡ଼ା, ମୋଟର, ପୋଷାକ, ଖାଦ୍ୟ, ନାରୀ, ଯେତେବେଳେ ଯାହା ଇଚ୍ଛା ହେଲା । × × × ମନ ଯାହା ଚାହିଁଛି ସେ ତାର ଆୟୋଜନ ଓ ଅଧିକାର ଛଡ଼ା ଜୀବନର ଅନ୍ୟ କିଛି କର୍ତ୍ତବ୍ୟ ବା ସମସ୍ୟା ଯେ ଅଛି ତାହା ତାକୁ ଜଣା ନଥିଲା ବା ସେଥିପ୍ରତି ସେ ଖାତିର କରୁ ନଥିଲା । ତା'ର ରକ୍ତରେ ବହୁପୁରୁଷର ସେଇ ସଂଗ୍ରହ ଓ ଅଧିକାର କରିବାର ସହଜାତ ଦୁର୍ବାର ଲାଳସା । ସେ ବହୁହବନୁ ଜାଣିରଖିଛି ଗୋଟାଏ ସ୍ତ୍ରୀକୁ ପାଇବା ଭଳି ସାମାନ୍ୟତମ ସମସ୍ୟା ଜୀବନରେ ଦିଶିପାରୁ ନାହିଁ । ହାଟରେ ପରିବ ଟଙ୍କୁଡ଼ ପାଇବା ଠାରୁ ମଧ୍ୟ ସହଜତର । ସେଥିପାଇଁ ମଥା ଘୂରାଇବା କେବଳ ଓଲମି; କେବଳ ମୂର୍ଖତା ।"

ଏଭଳି ଦୁର୍ଦ୍ଦାନ୍ତ ବିଜୟ ପ୍ରସାଦକୁ ପାଠପଢ଼ା ସମୟରେ ଆୟତ୍ତ କରିବା ପାଇଁ ଉଦୟନର ପିତା ମଥୁରାମୋହନ ସକ୍ଷମ ହୋଇଥିଲେ । ସେହି ସୂତ୍ରରେ ଉଦୟନ ପରିବାର ସହିତ ବିଜୟପ୍ରସାଦର ସମ୍ପର୍କ । ସେ ସମ୍ପର୍କର ଅନ୍ୟତମ ଯୋଗସୂତ୍ର ମଲ୍ଲିକାର ବିଜୟ ପ୍ରସାଦ ସହିତ ବିବାହ ପ୍ରସ୍ତାବ । "ବିଜୟ ଚାହେଁ ମଲ୍ଲିକାକୁ, କାରଣ ସେ ସୁନ୍ଦର । ସମସ୍ତଙ୍କର ଆଦର ଓ ଆକର୍ଷଣର କେନ୍ଦ୍ର, ଗୋଟିଏ ସୁନ୍ଦର ବସ୍ତୁର ଅଧିକାରୀ ହୋଇ ସେ ନଜର କରିବାକୁ ଚାହେଁ । (ପୃ୧୯)

ଏହି ସୁଯୋଗରେ ବିଜୟ ପ୍ରସାଦ ମଲ୍ଲିକା ସହିତ ଅବାଧରେ ମିଶି ପାରୁଥିଲା ଓ ସୁଯୋଗ ପାଇଲେ ବାହୁବନ୍ଧନରେ ବାନ୍ଧି ରଖୁଥିଲା । କିନ୍ତୁ ସେହି ବାଳିକା ବିରାଟ ବୈଚିତ୍ର୍ୟ ବିଜୟ ପ୍ରସାଦର କବଳରୁ ମୁକ୍ତ ହୋଇ ଯାଉଥିଲା ।

ବିଜୟ ପ୍ରସାଦର ଚାଲିଚଳନ, କଥାବାର୍ତ୍ତାରେ ଏକ ଅହମିକାର ସ୍ୱର ଲେଖକ ଶୁଣାଇଛନ୍ତି । ପିକ୍‌ନିକ୍ ଦିନ ଶ୍ରୀକଣ୍ଠ ବିଜୟପ୍ରସାଦ ଉପରେ

ମନ୍ତବ୍ୟ ଦେଇ କହିଛନ୍ତି—"ମୁଁ ଯାଇଥାନ୍ତି ଭାଇ, କିନ୍ତୁ ପୁଞ୍ଜି ଉଦ୍ଧତ ବଜ୍ରପ୍ରସାଦ କାନୁନଗୋ ଆଉ ଦରିଦ୍ର ଆର୍ଟିଷ୍ଟ ଶ୍ରୀକଣ୍ଠର ଆସନ ଏକବ ହୋଇ ନପାରେ ଭାଇ ।" (ପୃ୩୭)

ଶ୍ରୀକଣ୍ଠ ପ୍ରଦତ୍ତ ଛବି ଦେଖିଲା ବେଳେ ବଜ୍ରପ୍ରସାଦ ବଂଶର ଅହମିକା ଦେଖାଇ କହିଛନ୍ତି—'ସେ ଯାହାହେଉ ଅଳୁହା ଅବୋଲା ଜଣେ ବାହାର ଲୋକ ଆସି ଘର ଝିଅର ଛବି ଉଠାଇବ, ଏଇଟା ଆମ ଘରେ ଅନ୍ତତଃ କେହି ସହି ପାରିବେ ନ ।" (ପୃ୪୦)

ଶୃଙ୍କର ନଟିଆର ପରିବାର ପ୍ରତି ବ୍ୟବହାରରେ ବଜ୍ରପ୍ରସାଦ ଚରିତ୍ରର କଳଙ୍କିତ ଦିଗକୁ ଔପନ୍ୟାସିକ ଦେଖାଇଛନ୍ତି । ପ୍ରଭୁପାଦ ପ୍ରତି ବଜ୍ରଙ୍କର ବ୍ୟବହାର ଓ ଶେଷରେ ଉଦୟନର ପରିବାରରେ ତା'ର ଗୃହଚାଳନ ପାଠକ ମନରେ ବଜ୍ରପ୍ରସାଦ ପ୍ରତି ଅଶ୍ରଦ୍ଧା ଆଣେ । ବଂଶ-ପରମ୍ପରାହୀନ ଲୋକମାନେ ଗୌରବହୀନ ହୋଇ ପଡ଼ନ୍ତି ବୋଲି ଫକୀର ମୋହନଙ୍କର ଧାରଣା ମାନସିଂହଙ୍କ ମାନସରେ ମଧ୍ୟ ବଳବତ୍ତର ହୋଇ ରହିଛି ।

**କଳ୍ପତରୁ ସ୍ୱାଇଁ** :—ଅନ୍ୱେଷଣ ଉପନ୍ୟାସର ଉଲ୍ଲେଖଯୋଗ୍ୟ ପୁରୁଷ ଚରିତ୍ର ମଧ୍ୟରୁ କଳ୍ପତରୁ ସ୍ୱାଇଁ ଅନ୍ୟତମ । ତା'ର ନାମକରଣ ସଙ୍ଗେ କାର୍ଯ୍ୟକଳାପର ବିଦ୍ରୂପ ଭାବ ଲେଖକ ପ୍ରକଟିତ କରିଛନ୍ତି । ଚରିତ୍ରଟି ନାମର ସମ୍ପୂର୍ଣ୍ଣ ବିପରୀତ ଗୁଣର ଅଧିକାରୀ । ଏହି ଚରିତ୍ରଟି ଦେଖିଲାବେଳେ ଫକୀରମୋହନଙ୍କ ଅଧିକାର ଆମ ଉପରୁ ଅପସାରିତ ହୋଇଛି ବୋଲି ମନେ ହୁଏ ନାହିଁ । ରାମଚନ୍ଦ୍ର, ମଙ୍ଗରାଜ, ନାଜର ନଟବର ଦାସ ପୁଣି ଭିନ୍ନ ରୂପ ନେଇ ଆମ ସମ୍ମୁଖରେ ପ୍ରତିଭାତ । ଏହି ଚରିତ୍ର ସହିତ ଔପନ୍ୟାସିକ କାହ୍ନୁ ଚରଣଙ୍କର ଶାସ୍ତି ଉପନ୍ୟାସର ଚନ୍ଦ୍ରେଇ ସ୍ୱାଇଁ ଚରିତ୍ର ତୁଳନା କରାଯାଇପାରେ । ଚନ୍ଦ୍ରେଇ ସ୍ୱାଇଁର ରୂପ ଆମେ କଳ୍ପତରୁ ସ୍ୱାଇଁ ପାଖରେ ଦେଖିବାକୁ ପାଇବା । ଲେଖକଙ୍କ ଭାଷାରେ—"ନନ୍ଦଗାଁ ରଙ୍ଗମଞ୍ଚର କେନ୍ଦ୍ର ଅଭିନେତା ହେଉଛନ୍ତି କଳ୍ପତରୁ ସ୍ୱାଇଁ । ଗାଁର ମହାଜନ । ଗାଁର ଦୋକାନଟି ସ୍ୱାଇଁଙ୍କର; ଜମି ଜମା ବି ଅଛି । ହନପାକ ଜମିବାଡ଼ ଦେଖା ଦେଖି କରନ୍ତି ।ଆଉ ସଞ୍ଜକୁ ହାର୍କ ନଟିଏ ଜାଳଦେଇ ତନୋଟି ଘୃତାକ୍ତ

ସଳତାରେ ସଞ୍ଜବତୀ ଦେଇ ଓ ଇଷ୍ଟଦେବୀଙ୍କୁ କ୍ଷଣକାଳ ମୁଣ୍ଡ ନୁଆଇଁ ନମସ୍କାର କରି ଛାତି ଓ ପିଠିକୁ କୋଚଟ ଗାମୁଛାରେ ଘୋଡ଼ାଇ ପୋଛିପାଛି ଦୋକାନ ମଝିରେ ଥିବା କାଠ ଚୌକିଟିରେ ବସନ୍ତି । ସାରା ଗାଁଟା ପାଖକୁ ଚାଲିଆସେ ।

ହିସାବ କିତାବ କରିବାରେ କଳ୍ପତରୁ ସ୍ୱାଇଁଙ୍କ ସମକକ୍ଷ କେହି ନାହିଁ । ଗାଁରେ ସେହି ଦକ୍ଷତା ସୂତ୍ରରେ ଟଙ୍କାତକ ସେ ସେହି ଗାଁରେ କରଜ ଦିଅନ୍ତି । ସାରା ଗାଁ କେହି ତା'ର ହିସାବର ଅନ୍ତ ପାଆନ୍ତି ନାହିଁ । ତା'ର ଶସଗୁପ୍ତ ପାଞ୍ଜି ସେ ବର୍ଷରେ ଦୁଇଥର ବାହାର କରନ୍ତି ଇତ୍ୟାଦି । × × × ଗାଁକୁ ଶରଣ ପଞ୍ଜର କଳ୍ପତରୁ ସ୍ୱାଇଁ । ଏହି ମଉକାରେ ମୂଳ କଳନ୍ତର କରି ସେ ଗୃଷୀମାନଙ୍କୁ ଯେପରି ଶୋଷଣ କରନ୍ତି, ଯେପରି ସେମାନେ ଆଉ ଉଠି ପାରିବେ ନାହିଁ । ସେହି କଳ୍ପତରୁ ସ୍ୱାଇଁର ଝିଅ ସାବିତ୍ରୀ ସହିତ ଶ୍ରୀକଣ୍ଠର ବିବାହ ହୋଇଛି । କଳ୍ପତରୁ ସ୍ୱାଇଁଙ୍କର ସ୍ତ୍ରୀଙ୍କର ମହିମାପୂର୍ଣ୍ଣ ଗୁଣ ଯୋଗୁ ଔପନ୍ୟାସିକ ସ୍ୱାଇଁ ଉପରେ ମନ୍ତବ୍ୟ କରି କହନ୍ତି— "ସ୍ୱାଇଁ ପରିବାରର ଏକମାତ୍ର ଅପ୍ରିୟବସ୍ତୁ ହେଉଛନ୍ତି ସ୍ୱାଇଁ ନିଜେ । ସେ ଯେ ନିତାନ୍ତ ମନ୍ଦଲୋକ ବା ଦୁଷ୍ଟଚରିତ୍ର ସେପରି କିଛି ନୁହେଁ, କିନ୍ତୁ ତା'ର ଚନ୍ଦା ମୁଣ୍ଡରେ ମାନବିକତା ବା ଦୟାଧର୍ମ ପାଇଁ କୌଣସି ସ୍ଥାନ ନଥିଲା, ଲୋକଟା ଜୀବନରେ କେବେ କାନ୍ଦିବାର ଶୁଣାଯାଇ ନାହିଁ । ତା'ର ଧାନ ଅମାର ଆଉ ଟଙ୍କା ସୁନା କିପରି ଅଧିକରୁ ଅଧିକ ହେବ ଏଇ ହୋଇ-ଆସିଛି ପରମ ଚିନ୍ତା ତା' ଜୀବନର ଗତ ତିରିଶ ବର୍ଷ ଧରି । (ପୃ୧୬୧) ଏଥିରୁ ସ୍ପଷ୍ଟ ହୁଏ ଗୋଟିଏ କୃପଣ ଟାଉଟର ଚିତ୍ର ଅଙ୍କନ କରି ସମାଜର ଏ ବ୍ୟାପକ ରୂପ ପ୍ରଦାନ କରି ଅଛନ୍ତି ।

**ଅନ୍ୟ ପୁରୁଷ ଚରିତ୍ର.**—ଏହି ଗୃରୋଟି ପୁରୁଷ ଚରିତ୍ର ବ୍ୟତୀତ ଆଉ କେତେଗୁଡ଼ିଏ ପୁରୁଷ ଚରିତ୍ର ରହିଛି । ଉଦୟନ ଚରିତ୍ର ଉପନ୍ୟାସର ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ରହିଥିଲେହେଁ ସେ କେବଳ ଆଦର୍ଶ ଶିକ୍ଷକର ଆଦର୍ଶ ସନ୍ତାନ ଭାବରେ ଗଢିକରି ଗୃଲିଛି । ଶିକ୍ଷକ ମଥୁରା-ମୋହନ ଚରିତ୍ର ଉପନ୍ୟାସରେ କୌଣସି ଭୂମିକା ଗ୍ରହଣ ନକରିଥିଲେ ମଧ୍ୟ ଅନ୍ୟାନ୍ୟ ଚରିତ୍ରର ବିକାଶରେ ତାଙ୍କର ଯଥେଷ୍ଟ ଅବଦାନ ସୂଚିତ

ହୁଏ । ଗୁରୁଦେବ ଚରିତ୍ରଟି ଛାଇଆଲୁଅ ମଧ୍ୟରେ ରହିଯାଇଛି । ଆମେ ତାଙ୍କୁ ଉପନ୍ୟାସର ଅନେକସ୍ଥଳେ ସାକ୍ଷାତ କଲେ ମଧ୍ୟ କେତେକ ଆଦର୍ଶ ଚରିତ୍ରର ବିକାଶରେ ସାହାଯ୍ୟ କରିବା ବ୍ୟତୀତ ତାଙ୍କର ଅନ୍ୟ ଭୂମିକା ନାହିଁ । ଶିକ୍ଷକ କରୁଣାସିନ୍ଧୁ ଶିକ୍ଷିତ ଓ ଶିକ୍ଷିତା ସ୍ତ୍ରୀପାଇ ମଧ୍ୟ ଅଶାନ୍ତିରେ ଜୀବନଯାପନ କରୁଛି । ଏକ ସୁଖୀ ବିବାହିତ ଜୀବନକୁ ପ୍ରଦର୍ଶନ କରାଇବା ପାଇଁ ଔପନ୍ୟାସିକ ଏକ ବିପରୀତଧର୍ମୀ ପାନବି ଚରିତ୍ର ସହିତ ଶିକ୍ଷକ କରୁଣାସିନ୍ଧୁ ଚରିତ୍ରର ଅବତାରଣା କରିଛନ୍ତି ।

ଏ ସହାୟ ଚରିତ୍ରମାନଙ୍କୁ ଛାଡ଼ିଦେଲେ ଔପନ୍ୟାସିକ କେତେକ ପଲ୍ଲୀ ଚରିତ୍ରର ମଧୁମୟ ଦିଗ ଦେଖାଇବାକୁ ଚେଷ୍ଟା କରିଛନ୍ତି । ସେମାନଙ୍କ ମଧ୍ୟରୁ, ଗୃହକର ନଟିଆର ସରଳ ବାପ, ଶ୍ରୀକଣ୍ଠର ଘର ଜଗିଥିବା ତରେଇ ପରିବାର ନନ୍ଦଗାଁର ସରଳବିଶ୍ୱାସୀ ଶ୍ରୀପତି ସାହୁ ଯିଏ ଛାପା ଭାଗବତ ବହି ମିଳୁଥିବା ସମୟରେ ମଧ୍ୟ ମ୍ଳେଚ୍ଛ ପାଠ ନ ପଢ଼ି ତାଳପତ୍ରରେ ଭାଗବତ ଲେଖି ପାଠକରେ ବୋଲି ମାନସିଂହ ଓଡ଼ିଆ ସାହିତ୍ୟ ଇତିହାସରେ ଉଲ୍ଲେଖ କରିଛନ୍ତି, ଭଗତିଆର ବଳିଷ୍ଠ ଚେହେରାରେ ଓଡ଼ିଆ ପାଇକର ରୂପ ଦେଖାଇବାକୁ ଚେଷ୍ଟାକରିଛନ୍ତି । ଗାଁର ନିଛକ ଚିତ୍ର ଦେବାପାଇଁ ଯେଉଁ ପଞ୍ଚାୟତର ଉପସ୍ଥାପନ ଉପନ୍ୟାସରେ କରାଯାଇଛି ସେଥିରେ କମ୍ପୁ ସ୍ୱାଇଁ ଭଳି ଚରିତ୍ରର ଚିତ୍ରଣ ବାସ୍ତବିକ ଉପଭୋଗ୍ୟ । ଗୌଣ ପୁରୁଷ ଚରିତ୍ର-ମାନଙ୍କ ମଧ୍ୟରୁ ହୃଷୀ ପାନବି ଚରିତ୍ରଟି ବାସ୍ତବିକ ମାନସିଂହଙ୍କର ଅନନ୍ୟ-ସାଧାରଣ ଚରିତ୍ର । ଏଭଳି ନିବିଡ଼ ଦାମ୍ପତ୍ୟ ପ୍ରେମ ସୃଷ୍ଟିରେ ବିରଳ । ତା' ସ୍ତ୍ରୀର ମୃତ୍ୟୁରେ ସେ "ମନେକରେ ଯେ ତା'ର ଦୁଃଖ ନଜାଣିଥିବ, ବିଶ୍ୱରେ ଏପରି ଲୋକ ନାହିଁ । ଏତେ ଦୁଃଖ କି ଅଜ୍ଞାତ ଥାଇପାରେ କାହାକୁ ? ତା' ଅନ୍ତରର ଦହନ ଏତେ ତୀବ୍ର, ଏତେ ଜ୍ୱଳନ୍ତ ଯେ ତାହା କି କାହାକୁ ଅଦୃଶ୍ୟ ରହିପାରେ । (ପୃ-୧୦୫)

ନିଜ ସ୍ତ୍ରୀକୁ ନିଜର ଆଖି ସହିତ ତୁଳନାକରି ସେ କହିଛି—"ବାବୁ ରାଜା ରାଜ୍ୟ ହରାଇଲେ ସେ କଷ୍ଟ ଭୁଲିଯିବ, ଧନିଷ୍ଟଲୋକ ଧନ ହରାଇଲେ ସେ କଷ୍ଟ ପାଶୋରିଯିବ ଦିନେ । କିନ୍ତୁ ଆଖି ଥିବା ଲୋକର ଆଖି ଦି'ଟାକୁ କାଢ଼ିନେଇ ତାକୁ ଠିଆ ଠିଆ ଅନ୍ଧ କରିଦେଲେ ସେ କି ତାହାକୁ

ଭୁଲିପାରେ । ସେ ତ ଚାଲିଯାଇଛି, ମୋର ଡାହାଣ ହାତ କଟି ଯାଇଛି" । ( ପୃ-୧୦୫ ) ପାନଗ୍ର ବୁଢ଼ୀର ଗୁଣଗାନ କରି ବୁଢ଼ା ପୁଣି କହୁଛି—"ପୁଅ ଝିଅଙ୍କୁ ବାହାକରିଦେଲି, ନାତିନାତୁଣୀ ଦେଖିଲି, ବାହାହେଲାଦିନରୁ ଦିନେହେଲେ ମତେ ଛାଡ଼ିନାହିଁ । ଏ ବୟସରେ ଛାଡ଼ି ଚାଲିଗଲା, ଥରେ ଧରିକୋଠ ରାଜାଙ୍କ ଘରକୁ ଭେଟିନେଇ ଯାଇଥିଲି । ତାକୁ ବାହାରେ ବସାଇଦେଇ ଭିତରକୁ ଗଲି । ରାଜା ବଢେଇକଲେ । ମୁଣ୍ଡି ଆମାର ଭେଟିଦେଇ ପଛକୁ ଅନାଏ ତ ସେ ମୋର ପଛରେ ଠିଆ ହୋଇଛି । ରାଜା ମନ୍ତ୍ରୀ ଦେଖି ହସିଲେ । ତାକୁ ପଚାରିଲି "କାଳେ, ତୁ କାହିଁକି ଚାଲିଗଲୁ ? ସେ କହିଲା ରାଜା ଘର କଥା, କାଳେ କ'ଣ ହେବ, ମନଟା ମାନିଲାନି, ଭାବିଲି ଯାଏ ପଛରେ ଠିଆ ହୋଇଥାଏ ।" ( ପୃ-୧୦୬ ) ଔପନ୍ୟାସିକ ପାନଗ୍ର ଉପରେ ମନ୍ତବ୍ୟ ଦେଇ କହନ୍ତି—"ସ୍ୱପ୍ନେ, ଜାଗରଣେ ବୁଢ଼ା ପାନଗ୍ରର ମର୍ମସ୍ଥଳରେ ରହିଛି କେବଳ ଦୁଇଟି କଳ୍ପନା; ଗୋଟିଏ ତା'ର ପତିବ୍ରତା ପତ୍ନୀ ଆଉ ସେହି ସୂତ୍ରରେ ଗ୍ରଥିତ ରସମୟ ଭଗବାନ ।" ( ପୃ-୧୦୮ )

**ନାରୀ ଚରିତ୍ର** :—ଔପନ୍ୟାସିକ ପାଞ୍ଚଗୋଟି ମା' ଚରିତ୍ରର ଉପସ୍ଥାପନା କରିଛନ୍ତି । ଉଦୟନର ମା', ପ୍ରଭୁପାଦର ମା', ସାବିତ୍ରୀର ମା' ଏ ତିନୋଟି ମା' ଚରିତ୍ର ସାଙ୍ଗରେ ଆଉ ମା' ଚରିତ୍ର ଭାବରେ ଦଣ୍ଡାସି ମା' ଓ ସାନମା ଚରିତ୍ର ସଂଯୋଜିତ ହୋଇଛି । ପ୍ରଥମ ତିନୋଟି ମା' ଚରିତ୍ରରେ ମାନସିଂହ ଏକ ପ୍ରକାର ଧାରଣା ଦେଇଥିବାର ଜଣାଯାଏ । ଉଦୟନର ମା', ପ୍ରଭୁପାଦର ମା' ଓ ସାବିତ୍ରୀର ମା' ଚରିତ୍ର ମଧ୍ୟରେ ବିଶେଷ ଉଲ୍ଲେଖଯୋଗ୍ୟ କୌଣସି ପ୍ରଭେଦ ନାହିଁ । ଉଦୟନର ମା' କଟକ ସହରରେ ରହୁଥିଲେ, ପରିବାର ଆୟ ଅନୁସାରେ ବ୍ୟୟ କରିବା, ସନ୍ତାନସନ୍ତତିଙ୍କୁ ଆଦର୍ଶଭାବରେ ଗଢ଼ିବା ବ୍ୟତୀତ ଅନ୍ୟ ଭୂମିକା ନାହିଁ । ପ୍ରଭୁପାଦର ମା' ସ୍ନେହପ୍ରବଣା ଓ ଆଦରରେ ବିଭିନ୍ନ ପ୍ରକାର ଖାଦ୍ୟକରି ପୁତ୍ର ତଥା ପୁତ୍ରପ୍ରତିମ ଶ୍ରୀକଣ୍ଠକୁ ଖୁଆଇଛନ୍ତି । ସାହୁକାର କଳ୍ପତରୁ ସ୍ୱାଇଁଙ୍କର ସ୍ତ୍ରୀ ତଥା ସାବିତ୍ରୀ ମା' ବିଷୟରେ ଲେଖକ କହନ୍ତି –"ତା'ର ସ୍ତ୍ରୀଟି ଏତେ ଭଲଲୋକ ଯେ କେବଳ ତା'ଘରର ନୁହେଁ ସମଗ୍ର ଗାଁର ଲକ୍ଷ୍ମୀ ବୋଲି କୁହାଯାଏ । ଏପରି ସ୍ତ୍ରୀକୁ ଅପମାନ କରିବାକୁ ସାହସ ସ୍ୱାଇଁର

ହୋଇନ । ଯୌବନରେ ସ୍ୱାଇଁଆଣୀ ସୁନ୍ଦର ଥିଲେ । ସେଇ ସୁନ୍ଦରୀ ମା'ର ଉତ୍ତରାଧିକାରୀ ଥିବା ଯୋଗୁହିଁ ଆଜ କନ୍ୟା ସାବିତ୍ରୀ ସାରା ଗାଁରେ ସର୍ବୋତ୍ତମ ପୁଷ୍ପ ହୋଇ ଆସିଛି ।" ( ପୃ-୧୨୧ )

ଛଅୋଟି ମା' ଚରିତ୍ର ସୃଷ୍ଟି କରିଥିଲେ ମଧ୍ୟ ସେ ଚରିତ୍ରରେ, ମା'ଙ୍କୁ କେବଳ ଗୋଟିଏ ରୂପରେ ଦେଖାଇଛନ୍ତି । ମା' ମଧ୍ୟ ଉଗ୍ର ହୋଇ ପାରେ, ସଂହାରରୂପ ଧରିପାରେ । ସେପରି ନ ଦେଖାଇବାର କାରଣ ମାନସିଂହ ବ୍ୟକ୍ତିଗତ ଜୀବନରେ ମା'ର ସ୍ନେହ ପାଇପାରି ନାହାଁନ୍ତି । ତେଣୁ ମା' ଚରିତ୍ରକୁ ଏକ ସ୍ନେହମୟୀ ଆଦର୍ଶ ଚରିତ୍ର ଭାବରେ ଚିତ୍ରଣ କରିବା ପାଇଁ ସମସ୍ତ କରିଛନ୍ତି । ଉଗ୍ର, ହିଂସ୍ର ପ୍ରବଣ ଭାବରେ ଚିତ୍ରଣ କରିବାପାଇଁ ତାଙ୍କର ଇଚ୍ଛା ବୋଧହୁଏ ହୋଇନ ।

ପରବର୍ତ୍ତୀ ଦୁଇଟି ମା' ଚରିତ୍ରରେ ବୈଚିତ୍ର୍ୟ ଥିଲେ ମଧ୍ୟ ସେ ଏଇ ଛଅୋଟି ଚରିତ୍ର ପରି ସ୍ନେହପ୍ରବଣା ବତ୍ସଳା ଭାବରେ ବର୍ଣ୍ଣିତ । ସାଧାରଣ ପଲ୍ଲୀ ଚରିତ୍ରକୁ ଦୁଇଟି ଭିନ୍ନମୁଖୀ ମା' ଚରିତ୍ର ଆଣିଛନ୍ତି । ଜଣେ ସ୍ନେହ-କାଙ୍ଗାଳୁଣୀ, ପାଗଳମା ଦଣ୍ଡାସିମା, ଆଉଜଣେ ଜୀବନର ସମସ୍ତ ସ୍ନେହକୁ ଅପରକୁ ଦେଇ ତ୍ୟାଗର ଜୀବନ୍ତ ପ୍ରତିମୂର୍ତ୍ତି ସାନମା' ।

ଦଣ୍ଡାସିମା' ବିଷୟରେ କହିଛନ୍ତି—"ସେ ବିଧବା । ତା'ର ଏକମାତ୍ର ପୁଅ ଦଣ୍ଡାସିଆ, ପ୍ରଭୁପାଦ ଘରେ ଶ୍ରେଷ୍ଠ ଶୂକର ହୋଇ ପେଟ ପୋଷୁଥିଲା । ହଠାତ୍ ମାତ୍ର ଗୃହବନ୍ଧନ ଜରରେ ଦଣ୍ଡାସିଆ ମା'ଙ୍କୁ ପାଗଳମା କରି ଛାଡ଼ି ଚାଲିଗଲା । × × × ସମଗ୍ର ଗ୍ରାମ ଏଇ ଦୁଃଖିନୀ ପୁତ୍ରହୀନା, ସ୍ୱାମୀହୀନା ମାଆର କରୁଣ ବିଳାପରେ ଅହରହ ମୁଖରିତ । ଗାଆଁର କେଉଁଠି ବା' ଦଣ୍ଡାସିଆ ପଦଚିହ୍ନ ବା ସ୍ମୃତି ଚିହ୍ନ ନାହିଁ ? ଦଣ୍ଡାସିମା' ଯେଉଁଆଡେ ଅନାଏ ବା ଯେଉଁଆଡେ ଗୁହେଁ ସେ ତା'ର ମାତୃତ୍ୱର ସକରୁଣ ତୃଷାପୂ ନେତ୍ରରେ ସ୍ପଷ୍ଟ ଦେଖେ ତା'ର ଦଣ୍ଡାସିଆକୁ । ଦଣ୍ଡାସି ମାଆକୁ ଲେଖକ ଚଳନ୍ତ କାରୁଣ୍ୟ ବୋଲି ଉଲ୍ଲେଖ କରିଛନ୍ତି । ଦଣ୍ଡାସିମା' ନନ୍ଦଗାଁର ମାତୃତ୍ୱର କରୁଣ ପ୍ରତୀକ । ପାଞ୍ଚଛଅ ବର୍ଷଧରି ସେ କେବଳ କାନ୍ଦି ଆସିଛି ।

**ସାନମା** :—ସବୁ ଧାଙ୍ଗ ଯେପରି ଗାଁ ଯାକର ଅଜା; ସାନମା ସେହିପରି ସମସ୍ତ ଗାଁ ର ଗୋଟିଏ ମା’ । ତା’ର ବୟସ କେତେ କେହି ଜାଣନ୍ତି ନାହିଁ । ସେ ନିଜେ ଜାଣେନା × × × × ତେର ବର୍ଷ ବୟସରେ ସେ ପ୍ରଧାନ ଘର ବୋହୂ ହୋଇ ଆସିଥିଲା । ସ୍ୱାମୀ ନରୋତ୍ତମ ପ୍ରଧାନ କିଛି ରୋଗା ମଣିଷ ନଥିଲା । ତିନି ଶୁଦ୍ଧିଦିନ ଜରରେ ଭେଣ୍ଡା ବଳୁଆ ନରୋତ୍ତମଟା ଚାଲି ମଲା । ସାନମା’ ତା’ର ସେହି ସ୍ୱାମୀ ନରୋତ୍ତମକୁ ଜାଣିଥିଲା ଗଭୀର ନିଶୀଥରେ, ଅନ୍ଧକାରମୟ କକ୍ଷରେ । ସାନମା’ ପ୍ରତି ଦରଦ ଦେଖାଇ ଲେଖକ ଲେଖିଛନ୍ତି—“ସେହି ନିଶୀଥ ରାତ୍ରୀର ନିସ୍ତବ୍ଧ ନୀରବତାରେ ବାତାୟନହୀନ ଅନ୍ଧକାରମୟ କକ୍ଷର ମାଟି ଚଟାଣରେ ଷୋଡଶୀ ସାନମା, ସେହି ପୁରୁଷ ଯା’ର ନାଁ ସେ ଧରେନା, ତା’ ସାଥିରେ ମୋଟରେ ହୁଏତ କେତେ ମାସ ମାତ୍ର ଭେଟିଥିବ, ସେ ଲୋକର ଚେହେରା ତା’ର ସ୍ପଷ୍ଟ ମନେନାହିଁ । ସେ କାଳରେ ଅନ୍ତରରେ ତା’ର ବସନ୍ତ ସବୁ ଥିଲା; ଭବିଷ୍ୟତ ପାଇଁ ତାହା ମଧ୍ୟ ତା’ର ମନେନାହିଁ । କୌଣସି ହେଲେ ସ୍ୱପ୍ନ ସ୍ପଷ୍ଟ ହେବା ପୂର୍ବରୁ ସେ ସମସ୍ତର କେନ୍ଦ୍ରଟି ଉଭେଇଗଲା । ନରୋତ୍ତମ ରଖିଯାଇଥିଲା ଇତି ମଧ୍ୟରେ ତା’ର ସନ୍ତ୍ୱ, ସେ ମରିବାର ଦୁଇମାସପରେ ପିଲାଟି ଜନ୍ମହେଲା, କିନ୍ତୁ ଅଭାଗିନୀର କପାଳକୁ ସେ ବି ରହିବାକୁ ନାରାଜ ହେଲା । ( ପୃ-୯୬ )

ସନମା’ କେବଳ ସାନମା । ତା’ର ଇତିହାସ ଭୂଗୋଳ ସହିତ ସମ୍ପର୍କ ନାହିଁ । ସେ ଏ ସମସ୍ତଙ୍କଠାରୁ ବଡ । କାରଣ ସେ ଆର୍ତ୍ତଜୀବନର ପ୍ରତୀକ । ତା’ର ସେହି ନିରକ୍ଷର ନିରାଡମ୍ବର, ଅଶ୍ରୁଜର୍ଜ୍ଜର, କରୁଣଜୀବନରେ ସେ କି ବଞ୍ଚିବା ନ ବଞ୍ଚିବା, ଉପରୁ ତିନି ପୁରୁଷ ଆରତଳକୁ ତିନି ପୁରୁଷ ଧରି କେବଳ ସ୍ଥେଟ ନନ୍ଦଗାଁ । ନୁହେଁ ଆଖପାଖ ଅନେକ ଗାଁ ର ପ୍ରାୟ ସବୁ ପରିବାରର ଗୋଟି ଗୋଟି ଇତିହାସ ସାନମା’କୁ ଜଣା । (ପୃ-୯୭)

ସାନମା’ର କେହି ନାହିଁ ନିଜର । ବାପ, ମା’ ଅନେକଦିନୁ ଗୁଲିଯାଇଛନ୍ତି । ଭାଇ ଦି’ଟା ବି ଗୋଟାକପରେ ଗୋଟାଏ ଗୁଲିଗଲେ । ସାନମା’ର ଭବିଷ୍ୟତ ତ କିଛି ନାହିଁ; ତେଣୁ ସେ ଅତୀତକୁ ଧରିରହିଛି । ସେ ଏକ ମୂର୍ତ୍ତିମନ୍ତ ଅତୀତ ମାତ୍ର । (ପୃ-୯୮ ) ସାନମା’ ପୁତୁରା ଏବଂ ପୁତୁରାବୋହୂର ଦୁର୍ବ୍ୟବହାର, ଦୀର୍ଘ ଜୀବନର କରୁଣ ଘଟଣାବଳୀ ସବୁ

କିନ୍ତୁ ଭୁଲିଯାଏ । ସ୍ତ୍ରୈଣ ଦୁଇଜଣେ ନାରୀ ନାଗୁଣୀର ଜୀବନବନ୍ଧୁ, ଏଇ ନାରୀର ଜୀବନରେ ଅକାଳ ମୃତ୍ୟୁ, ସକଳ ବିପର୍ଯ୍ୟୟକୁ ପରାଜୟ କରି ଦେଇଛି । ସେଇ ଯୋଗୁ ତ ସାନମା' ହସେ, ଖାଏ, ଆଉ ଦଶଜଣ ପରି ଗାଁରେ ଗପକରି, ବଞ୍ଚେ । ସନମା' ସମଗ୍ର ଗାଁର ଦୁଃଖମୟ ଜୀବନ୍ତ ଇତିହାସ । ( ପୃ-୯୯ )

**ମଲ୍ଲିକା** :—ଆଦର୍ଶ ଶିକ୍ଷକ ମଥୁରାମୋହନଙ୍କ କନ୍ୟା ମଲ୍ଲିକା ପ୍ରଥମରୁହିଁ ସହରଜୀବନରେ ବଢ଼ିଆସିଛି । ସହରରେ ବଢ଼ିଥିଲେ ମଧ୍ୟ ସହରର ଶୃଙ୍ଖଳଚକ୍ରରେ ସେ ସଜ୍ଜିତା ନୁହେଁ । ଉପନ୍ୟାସରେ ତା'ର ରୂପ ବର୍ଣ୍ଣିତ ହୋଇଛି :—' ମଲ୍ଲିକ ତମ୍ବୀ, ମୁଖଟି ସାମାନ୍ୟ ଲମ୍ବାସିଆ ଓ ଅତ୍ୟନ୍ତ ଉଜ୍ଜଳ, ନାକ ସରୁ ଓ ସିଧା, ବର୍ଣ୍ଣ କମଳା ଲେମ୍ବୁର ବର୍ଣ୍ଣପରି ଶ୍ୱେତ ଓ ହରିଦ୍ରାର ମଧୁର ମିଶ୍ରଣ । ମୁଖମଣ୍ଡଳରେ ସ୍ନିଗ୍ଧ ଲାବଣ୍ୟ ଓତଃ-ପ୍ରୋତ ହୋଇ ରହିଛି । ପଛରେ ଝୁଲିପଡ଼ିଛି କୃଷ୍ଣକୁଞ୍ଚିତ ମୁକ୍ତ କେଶଜାଳ । ଚୂର୍ଣ୍ଣକୁନ୍ତଳସବୁକୁ ସେ ବାରମ୍ବାର ଦୁଇଗଣ୍ଡରୁ ପଛକୁ ପେଲି ପେଲି ଦେଉଛି; ମୁଖର ସ୍ଥିର ସୌନ୍ଦର୍ଯ୍ୟକୁ ଚଞ୍ଚଳ ଓ ବଙ୍କୁରିତ କରି, କପାଳରେ ଚନ୍ଦନର ଶ୍ୱେତ ଆସ୍ତରଣ ଭିତରେ ଗୋଟିଏ ସିନ୍ଦୂରର ଟିପା ।

ମଲ୍ଲିକା ଏଣେ ବଢୁଥିଲା ଏକ କୁସୁମିତ ତରୁଣ ଲତାପରି । ଭଲ ପଢ଼େ । ସୁନ୍ଦର ବୀଣାବାଦନ କରେ । ଅତ୍ୟନ୍ତ ସୁଶୀଳା । ଏଣେ ଦେଖିବାକୁ ସୁନ୍ଦର । ମଲ୍ଲିକା ଯେଉଁଠି ରୁହେ ସେ ହୋଇଉଠେ ଦର୍ଶନ ଓ ଆକର୍ଷଣର କେନ୍ଦ୍ର । ବିଜୟପ୍ରସାଦର ବାଗ୍‌ଦତ୍ତା ହୋଇଥିବାରୁ ସେ ଦେହ ଓ ମନ ଉପରେ ବିଜୟର ଅଧିକାର ମାନିନେବା ପାଇଁ ସ୍ଥିର କରିଥିଲା; କିନ୍ତୁ ସେ ନିରୀହା ବାଳିକା ବିରାଟ ଦୈତ୍ୟ ବିଜୟର ବାହୁ-ବନ୍ଧନରେ 'ବିଜୟ ଭାଇ, ଛି ଛି ମତେ ଛାଡ଼ିଦିଅ କହି କହି ଠେଲି ବାହାରି ଯାଏ । ବିଜୟର ପ୍ରାଥମିକ ସ୍ନେହାଦରକୁ ମାନିନେବା ଥିଲା ମଲ୍ଲିକାର ଅପରିଣତ ମନ ଉପରେ ସାମାଜିକ ସଂସ୍କାରର ଫଳ । କିନ୍ତୁ ତା'ର ପବିତ୍ର ଅନାଘ୍ରାତ ଅସ୍ପୃଷ୍ଟ ନାରୀତ୍ୱ ପୁଷ୍ପକୁ ଏତେ ସହଜରେ ମୁହୂର୍ତ୍ତର ପଣ୍ୟ ନ କରିଦେବାର ପ୍ରଚେଷ୍ଟା ଥିଲା ତା'ର ସହଜାତ ନାରୀପ୍ରବୃତ୍ତି । ମଲ୍ଲିକା ଯେଉଁ ପରି କୋମଳ ସେ ମଧ୍ୟ ସେହିପରି କଠୋର ହୋଇପାରିଛି । ବିଜୟପ୍ରସାଦକୁ ସେ ଯେପରି ଆତ୍ମୀୟ ବୋଲି ଭାବି ନେଇଥିଲା ବିଜୟ-

ପ୍ରସାଦ ଚରିତ୍ରର ଅନ୍ଧକାର ଦିଗ ଦେଖିଲା ପରେ ସେ ସେହିପରି ତାକୁ ନିସ୍ପୃହ ଭାବରେ ତ୍ୟାଗ କରନ୍ତି, ଯାହାକି ଉଦଯୂନ ପରିବାରରେ ଦେଖାଦେଇଥିବା ମାନସିକ ଦ୍ୱନ୍ଦ୍ୱର ଅବସାନ କରାଇପାରିଛି ।

**ସାବିତ୍ରୀ** :—ମଲ୍ଲିକା ଓ ସାବିତ୍ରୀ ଲେଖକଙ୍କର ଗୋଟିଏ ଗ୍ରନ୍ଥରେ ଗଢ଼ା ଦୁଇଟି ମୂର୍ତ୍ତି । ଜଣେ ଆଧୁନିକ ଶିକ୍ଷା ଓ ଚାଲିଚଳନରେ ଅଭ୍ୟସ୍ତ ଓ ସହରୀ ବାତାବରଣରେ ବର୍ଦ୍ଧିତ । ଆଉ ଜଣେ ସରଳା ପଲ୍ଲୀକୁମାରୀ, ସାଧାରଣ ଶିକ୍ଷାପ୍ରାପ୍ତ ସୁନ୍ଦରୀ, ଯାହାକୁ ଲେଖକ ପଲ୍ଲୀର ପ୍ରସ୍ଫୁଟିତ ପୁଷ୍ପ ଭାବରେ ବର୍ଣ୍ଣନା କରିଛନ୍ତି । ଲେଖକଙ୍କ ଭାଷାରେ ସେ ନିରୀହା ନିରପରାଧା, ଅପାପବିଦ୍ଧା, ସରଳା, ଷୋଡ଼ଶୀ ।

ସେ ଭଲପାଉଛି ମନେ ମନେ ଶ୍ରୀକଣ୍ଠକୁ । ଖାଣ୍ଟି, ଓଡ଼ିଆଣୀ ଝିଅପରି ଦେଉଳମାନଙ୍କରେ ବୁଲୁଛି, କଅଁଫୁଲ ତୋଳି ଉପହାର ଦେଉଛି ସଲ୍ଲଜ ଭାବରେ ତା'ର ମନର ପୁରୁଷକୁ । ମନପୁରୁଷଠାରୁ ନିର୍ଜନସ୍ଥଳରେ ପାଇଥିବା ରଙ୍ଗଣୀ ଫୁଲକୁ ବିବାହ ପରେ ପର୍ଯ୍ୟନ୍ତ ବକ୍ଷରେ ସ୍ଥାନ ଦେଇ ଆସିଛି । ତାହାର ରୂପ ଓ ମନ ଶ୍ରୀକଣ୍ଠ ଭଳି ଏକ ବାଉଳା ଚରିତ୍ରକୁ ସହରର ବିଭ୍ରାନ୍ତ ପରିବେଶରୁ ପଲ୍ଲୀକୁ ଫେରାଇ ଆଣି ପାରିଛି । ଶ୍ରୀକଣ୍ଠ ପଲ୍ଲୀରେ ଜୀବନର ସୁଖ ସୌନ୍ଦର୍ଯ୍ୟକୁ ଅନ୍ୱେଷଣ କରୁଛି; ଆଉ ଅନ୍ୱେଷଣ କରୁଛି ଏଇ ପଲ୍ଲୀକୁମାରୀର ମନକୁ ।

ମଲ୍ଲିକା ସାବିତ୍ରୀ ଉଭୟେ ସମାନ ବୟସର, ସମାନ ଶ୍ରେଣୀର, ସମାନ ରୂପର । ମଲ୍ଲିକାର ପରିବାର ଓ ପରମ୍ପରା ତାଙ୍କୁ ସରଳ ତଥା ଆଦର୍ଶମୟୀ କରିଥିବାବେଳେ, ସାବିତ୍ରୀ ଉପରେ ପରିବେଶର ପ୍ରଭାବ ପଡ଼ିଛି । କୁଟିଳ ଚରିତ୍ର ବାପା ଅପେକ୍ଷା ସରଳା ମାତାର ପ୍ରଭାବକୁ ଗ୍ରହଣ କରିଛି ।

**ମାନସିଂହଙ୍କ ଅନୁଭବର ପରିପ୍ରକାଶ** :—'ଅନ୍ୱେଷଣ' ଉପନ୍ୟାସରେ ମାନସିଂହ ନିଜ ଅନୁଭବର ପରିପ୍ରକାଶ କରିଛନ୍ତି । ପୂର୍ବରୁ ସୂଚନା ଦିଆଯାଉଛି ଯେ ଉପନ୍ୟାସର ବର୍ଣ୍ଣିତ ସ୍ଥାନମାନଙ୍କ ମଧ୍ୟରୁ ନନ୍ଦଗାଁ ବିଶେଷ ଅଂଶ ଗ୍ରହଣ କରିଛି । ଏହି ନନ୍ଦଗାଁ ମାନସିଂହଙ୍କ

ନିଜ ଗାଁ ନନ୍ଦଳା, ଯାହାର ଚିତ୍ର କେବଳ 'ଅନ୍ୱେଷଣ' ଉପନ୍ୟାସରେ ନୁହେଁ ମାନସିଂହଙ୍କ ଅନେକ ସୃଷ୍ଟିରେ ପ୍ରଦତ୍ତ। ଜଣେ ଆଦର୍ଶ ଶିକ୍ଷକ ବା ଶିକ୍ଷାୟତନର ଅଧିକାଂଶ ଭାବରେ ସେ ତାଙ୍କର ପ୍ରବନ୍ଧ ପୁସ୍ତକରେ ଯେଉଁ ଧାରା ଦେବାପାଇଁ ଚାହିଁଥିଲେ, ଉପନ୍ୟାସରେ ଶିକ୍ଷକ ମଥୁରାମୋହନ ଚରିତ୍ରରେ ସେଇଥି ପ୍ରତିଫଳିତ । ତାଙ୍କ ପ୍ରଣୀତ ଓଡ଼ିଆ ସାହିତ୍ୟ ଇତିହାସର ୪୭ ପୃଷ୍ଠାରେ ଜଣେ ଗ୍ରାମ ଲୋକ ଯେ କି ନିଜ ପଠନ ନିମିତ୍ତ ସମଗ୍ର ଭାଗବତକୁ ତାଳପତ୍ରରେ ନକଲ କରି ପାଠକରୁଥିଲା ସେତେବେଳକୁ ଛପାପୁସ୍ତକ ମିଳିଲେ ମଧ୍ୟ । ସେହି ଚରିତ୍ର ଶ୍ରୀପତି ସାହୁ, ଉପନ୍ୟାସର ୮୨ ପୃଷ୍ଠାରେ ବିଦ୍ୟମାନ । ସାନମା, ଦଣ୍ଡାସି ମା' ତଥା ଗ୍ରାମର ଅନ୍ୟାନ୍ୟ ଚରିତ୍ର ମାନସିଂହଙ୍କ ନିଜ ଗ୍ରାମର ଅନୁଭୂତିର ଚିତ୍ର । ଗ୍ରାମର ସଭାରେ ଯେଉଁ ପଲ୍ଲୀବାସୀମାନଙ୍କର ଚିତ୍ର ଦେଇଛନ୍ତି ସେଗୁଡ଼ିକ ଗ୍ରାମରେ ଏବେ ମଧ୍ୟ ବିଦ୍ୟମାନ । କମ୍ବୁ ସ୍ୱାଇଁ ଘର ଓଲି ଜଡ଼ା, ଅପର୍ତ୍ତି ନାୟକ ଘର ଶୂନ୍ୟରେ ଜଳି ଆରମ୍ଭ କରିବା ଲୋକ ଯେ ନିଜ ଗାଁରେ ଦେଖିଥିବେ । ବର୍ତ୍ତମାନ ମଧ୍ୟ ଗ୍ରାମମାନଙ୍କରେ ସେମାନଙ୍କର ପ୍ରତିନିଧି-ସ୍ଥାନୀୟ ଚରିତ୍ର ଦେଖାଯାନ୍ତି ।

( ୨ )

**ମାନସିଂହଙ୍କ ବିଚାରଧାରା** :—ମାନସିଂହ ନିଜସ୍ୱ ଦୃଷ୍ଟି-କୋଣରୁ ସଙ୍ଗୀତ, ସାହିତ୍ୟ, କଳା, ରାଜନୀତି ଓ ସହରର ତଥା ପଲ୍ଲୀ ଉପରେ ବିଚାର କରିଛନ୍ତି, ଯାହାସବୁ ଅନ୍ୱେଷଣ ଉପନ୍ୟାସର ବିଭିନ୍ନ ଛତ୍ରରେ ଲିପିବଦ୍ଧ ହୋଇଛି । ସ୍ରଷ୍ଟା ନିଜ ସୃଷ୍ଟି ମଧ୍ୟରେ ଜ୍ଞାତଭାବରେ ନିଜର ଚିନ୍ତାଧାରାକୁ ଗୁଞ୍ଜିଦେଇଥାଏ । ସେହି ଚିନ୍ତାରୁ ସ୍ରଷ୍ଟାର ନିଜସ୍ୱ ମାନସର ଚିତ୍ର ସ୍ପଷ୍ଟ ହୋଇ ଉଠେ । ଅନ୍ୱେଷଣ ଏକ କ୍ଷୁଦ୍ର ତଥା ମାନସିଂହଙ୍କ ଏକମାତ୍ର ଉପନ୍ୟାସ ହୋଇଥିଲେ ମଧ୍ୟ ବହୁଭାବରେ ମାନସିଂହ ମାନସର ଛବି ଏଥିରେ ପ୍ରତିଫଳିତ । ସେହି ବିଚାରଧାରାକୁ ସଂକ୍ଷେପରେ ବ୍ୟକ୍ତ କରାଯାଇ ପାରେ ।

**ସହର** :—ପୂର୍ବରୁ ସୂଚୀତ ହୋଇଛି ଯେ ପ୍ରକୃତପ୍ରେମୀ ପଲ୍ଲୀ-ପ୍ରାଣ କବି ମାନସିଂହ 'ଅନ୍ୱେଷଣ' ଉପନ୍ୟାସକୁ ପଲ୍ଲୀ ଉପରେ ଆଧାର କରି ଲେଖିଛନ୍ତି । ତେଣୁ ସହର ପ୍ରତି ତାଙ୍କର ଦୃଷ୍ଟିକୋଣ ହେଲା—

"ଯେଉଁଆଡ଼େ ଆଖି ବୁଲାଇବ କେବଳ ଇଟା ଓ ପଥର, ପଥର ଓ ଇଟା, ଯାହାକୁ ଲୋକେ କୋଠା କହନ୍ତି । ପ୍ରଦେଶର ପ୍ରଧାନ ସହରର ସମସ୍ତ ମଇଳା, ସକଳ ବିଭତ୍ସତାକୁ ଘୋଡ଼ାଇବାର ବିରାମହୀନ ଦୁର୍ଦ୍ଧର୍ଷ ଚେଷ୍ଟାରେ ଚତୁର୍ଦ୍ଦିଗରେ ଉଠିଛି କୋଠାରମାଳା, ଆଗରେ, ପଛରେ ଏପଟେ ସେପଟେ ଯେଉଁଆଡ଼େ ଆଖିପକାଇବ ।" (ପୃ-୧) ସହରର କୁହେଳିକାରେ ଅନ୍ଧ ସହରଗତ ପଲ୍ଲୀବାସୀଙ୍କ ପ୍ରତି ସେ କହନ୍ତି—'ଯେଉଁମାନେ ମଫସଲର ଗୋମୟକୁ ନାକଟେକନ୍ତି, ଏଇ ସହରରେ ସେମାନେ ଅଶ୍ୱପୁରୀଷ ଓ ନର୍ଦ୍ଦମାର ନରକକୁ ନିରୁଦ୍‌ବେଗରେ ସହିଥାନ୍ତି । ଗାଁଦାଣ୍ଡର ଧୂଳି ଯାହାଙ୍କ ଆଖିରେ ଆଦିମତା ଓ ଅସଭ୍ୟତାର ପ୍ରତୀକ, ଦୁଇଅସ୍ରା ବର୍ଷାପରେ ସହରର ରାସ୍ତାରେ ଲକ୍ଷଲକ୍ଷ ନରପଦର ଠୁଳୀଭୂତ ମଇଳା ଓ କାକଲଟା ତାଙ୍କ ଆଖିକୁ ବାଧେନାହିଁ । ଆଶ୍ଚର୍ଯ୍ୟ ଏଇ ସହର ମୋହ !" (ପୃ-୧)

ସହରର ବସ୍ତିମାନଙ୍କର ବିଭତ୍ସ ଦୃଶ୍ୟକୁ ଲେଖକ ଦର୍ଶାଇଛନ୍ତି—"ଦୁଆର ସାମନାରେ ବହିଗଲାଛି ମ୍ୟୁନିସ୍‌ପାଲିଟିର ମେଲା ଡ୍ରେନ୍ କୁତ୍ସିତ, କୃଷ୍ଣ, ନାଳୁଆ, ପୋକ ଓ ପୂତିମୟ ପଦାର୍ଥର ବିଭତ୍ସ ବେଣୀ । ନଗର ସଭ୍ୟତାର ପ୍ରତୀକ ଈର୍ଷଣୀୟ ମନବର କୁତ୍ସିତ ଦୈନନ୍ଦିନ ଜୀବନର ପତାକା । ଆଗପଟେ ଡ୍ରେନ୍‌ର ବିଭୀଷିକାକୁ ପରାଭୂତ କରି ପଛରେ ସଗର୍ବରେ ଦଣ୍ଡାୟମାନ ପାଇଖାନାର ନାରକୀୟ ବିଭତ୍ସତା । ଗୁରଆଡେ ମାଛି, ଗୁରଆଡେ ଅସନା, ଗୁରଆଡେ ସୁନ୍ଦରତାକୁ ଜାଣିଜାଣି ତାଡ଼ନାକରି କୁତ୍ସିତତାର ଯେପରି ସଦମ୍ଭ ସାମାଜ୍ୟ ବିସ୍ତାର ।" (ପୃ-୫୭) ଶେଷରେ ଲେଖକ ପଲ୍ଲୀର ଓ ସହରର ମେହେନ୍ତରମାନଙ୍କ ଜୀବନ ତୁଳନା କରିଛନ୍ତି । ଗୋଟାଏ ସମଗ୍ର ମନୁଷ୍ୟ ଗୋଷ୍ଠୀକୁ ମନୁଷ୍ୟ ମଇଳାପୋଛି ଓ ବୋହି ଜୀବିକାର୍ଜ୍ଜନ କରେଇବାର ନାରକୀୟ ଜଘନ୍ୟ ଅମାନୁଷିକତାକୁ ଘୃଣା କରିଛନ୍ତି ।

**ପଲ୍ଲୀ** .—ପଲ୍ଲୀ ଔପନ୍ୟାସିକଙ୍କୁ ମୁଗ୍‌ଧ କରିଛି । ତେଣୁ ଯେଉଁଠି ସେ ସୁବିଧା ପାଇଛନ୍ତି ପଲ୍ଲୀର ମନୋରମ ଦୃଶ୍ୟ ଅଙ୍କନ କରିଛନ୍ତି ।

ପଲ୍ଲୀର ସମସ୍ୟା, ପଲ୍ଲୀଜୀବନର କଳୁଷିତ କରଣ ଇତ୍ୟାଦିର ଚିତ୍ର ପ୍ରଦାନ କରିଛନ୍ତି ।

ପ୍ରଥମେ ସେ ଏକ ଉତ୍କଳୀୟ ପଲ୍ଲୀର ଅବସ୍ଥିତି ବିଷୟରେ ଲେଖିଛନ୍ତି—"ଢିଁଧାଡ଼ି ଗୃହଘର, ପାଖକେ ଭାଗବତଘର, ପାଖକେ ଗ୍ରାମର ଦେଉଳ, ପ୍ରତି ଗୃହସ୍ଥର ଘର ଆଗରେ ଓ ପଛରେ ଛୋଟ ବଡ଼ ବଗିଚ୍ଛ । ବର୍ଷାଦିନେ ଗୃହ ଉପରେ ଲାଉ, କଖାରୁର ବଦ୍ଧପ୍ରସାରି ନଟା ଦେଇ ସବୁଜ ଲକ୍ଷ୍ମୀର ମନୋହର ବିସ୍ତାର, ଖରାଦିନେ ମଲ୍ଲୀ, ଶୀତଦିନେ ଗେଣ୍ଡୁ, ବସନ୍ତରେ ଚମ୍ପା ଓ ବଉଳ ପ୍ରଭୃତି ନାନା ଋତୁରେ ନାନା କୁସୁମ-ସୁନ୍ଦରୀଙ୍କର ଆଗମନ । ଗାଁ ପଛଆଡ଼େ ତରଳ ନୀଳ କାଚର ଆଧାର ପରି ଛୋଟ ସେଇ କେନାଲଟି । ସକାଳେ ଓ ସଞ୍ଜରେ ଯା'ର ଦୁଇଟି ଘାଟରେ ଗାଁର ଝିଅ ବୋହୂଙ୍କର ସମାଗମ ହୁଏ ।" (ପୃ-୫୭।୫୮)

ପଲ୍ଲୀର ସୃଷ୍ଟି ସମ୍ବନ୍ଧରେ ଲେଖକଙ୍କ ଧାରଣା,—"ସହରର ଇତିହାସ ଅଛି, ପ୍ରାୟ ପ୍ରତ୍ୟେକ ସହରର; କିନ୍ତୁ ପଲ୍ଲୀ ? ନା ଅଛି ତା'ର ଇତିହାସ ନା' ସେ ବିଷୟରେ ସେ ଅନୁସନ୍ଧିତ୍ସୁ ? ପଲ୍ଲୀ ନିଜେ ମଧ୍ୟ ସେ କିପରି ହେଲା ଜାଣେନା । ବର୍ଷାଜଳ ସହସ୍ର ଖାଲରେ ଜମାହୋଇ ସହସ୍ର ପଲ୍ୱଳ ସୃଷ୍ଟି କଲାପରି ମନୁଷ୍ୟ ବିନ୍ଦୁ ଅନୁକୂଳ ମାଟିରେ ଆପେ ଆପେ ପୁଞ୍ଜୀଭୂତ ହୋଇ ଧରଣୀର ଉପର ପୃଷ୍ଠରେ କୋଟି କୋଟି ଗ୍ରାମ ସୃଷ୍ଟି କରେ । ସ୍ୱୟଂସମ୍ଭବ ପଲ୍ଲୀ, ସେଇ ହିଁ ତା'ର ଇତିହାସ ।

କିନ୍ତୁ ଭାରତର ନିରକ୍ଷର ଅଜ୍ଞ ପଲ୍ଲୀ ତ ଜାଣେନା ତା'ର ଏଇ ଇତିହାସ । ଏ ଦେଶର ଅଧିକାଂଶ ଶିକ୍ଷିତ ଲୋକ ମଧ୍ୟ ବିଶ୍ୱାସ କରିପାରିବେ ନାହିଁ ଯେ ଏ ଦେଶର ଦୀର୍ଘ ପାଞ୍ଚହଜାର ବର୍ଷର ସଭ୍ୟତାର ଅଳଙ୍ଘ ଗୁପ କେବଳ ସେହି ଅବହେଳିତ ପଲ୍ଲୀରେ ହିଁ ଏବେ ବି ଦେଖିବାକୁ ମିଳେ,—ନଗରରେ ନୁହେଁ, କଲିକତା, ବମ୍ବେ, ମାଡ୍ରାସ ଏବଂ ଦିଲ୍ଲୀ ଏ ସବୁ ଅଢ଼େଇ ଦିନର କଥା । ଦୁଇଶହ ସାତଶ ଆଠଶ ବର୍ଷ ପୂର୍ବେ ସେମାନଙ୍କ ନାମଧାମ ହିଁ ଶୁଣାନଥିଲା । କିନ୍ତୁ ଋଗ୍‌ବେଦର ସଂସ୍କୃତି କେବଳ ପଞ୍ଜାବର ପଲ୍ଲୀରେ ନୁହେଁ, ଓଡ଼ିଶାର ପଲ୍ଲୀରେ ଏବେ ମଧ୍ୟ ବଞ୍ଚିରହିଛି । 'ଗ୍ରାମ',

'ଗୋତ୍ର', 'ଗୋଷ୍ଠ', 'ଗୋଷ୍ଠୀ' 'କ୍ଷେତ୍ରକ୍ଷେତ୍ର', 'ବିଶ' ପ୍ରଭୃତି ପଲ୍ଲୀ-ଜୀବନର ଘନିଷ୍ଠ ପରିଚିତ ଶବ୍ଦଗୁଡ଼ିକର ଆରମ୍ଭ ସେଇ ଋଗ୍‌ବେଦରେ। ଋଗ୍‌ବେଦପରି ଏବେବି ପଲ୍ଲୀବାସୀର ଜୀବନ ନାଟକର କେନ୍ଦ୍ର ହେଉଛି ଶସ୍ୟକ୍ଷେତ୍ର। ବର୍ଣ୍ଣାଶ୍ରମିକ କେଉଁ ବ୍ରାହ୍ମଣ 'ଗୋତ୍ର'ର ଗର୍ବ କରେନା ? କିନ୍ତୁ ବିନା 'ଗୋ'ରେ 'ଗୋତ୍ର'ର ଗର୍ବ କେବଳ ଇତିହାସର ଅପମାନ ସିନା ! 'ଗୋ'ରୁ ସେଦିନ ଆସିଲା 'ଗୋଷ୍ଠ' ଓ 'ଗୋତ୍ର'। କେତେକ ଗୋତ୍ରର ସମଷ୍ଟି ଥିଲା 'କୁଳ', କେତେକ କୁଳର ସମୂହ ନାମ ଥିଲା 'ଗ୍ରାମ'। ଯା'ର ଆଭିଧାନିକ ଅର୍ଥ ଏବେବି 'ସମୂହ', କିନ୍ତୁ ଲୌକିକ ଅର୍ଥରେ ବୁଝାଏ ପଲ୍ଲୀ ବା ଗାଁ। କେତେକ ଗ୍ରାମର ଏକକକୁ ଋଗ୍‌-ବେଦରେ ମଧ୍ୟ କୁହାଯାଇଥିଲା 'ବିଶ'।

ଋଗ୍‌ବେଦର ଆର୍ଯ୍ୟପରି ଏବେବି ପଲ୍ଲୀର କୃଷକ ଖେତରେ ଖଟେ, ବଣବୁଦାରେ ଶିକାର କରେ, ଗୀତ ଗାଏ, ଭୋଜି ଖାଏ, ନାଚେ ଏବଂ ନିଜ ଛଡ଼ା ଜଗତର ଅନ୍ୟ ସମସ୍ତଙ୍କୁ ଅବଜ୍ଞା ଚକ୍ଷୁରେ ଦେଖେ। (ପୃ ୮୪,୮୫)

ପଲ୍ଲୀ ତା'ର ସେହି ମୂଳ ରୂପରେ ରହିବ ନା ତା'ର ଆଧୁନିକୀ-କରଣ ଦରକାର ସେ ବିଷୟରେ ଲେଖକ ମନ୍ତବ୍ୟ ପ୍ରକାଶ କରିଛନ୍ତି।— "ପ୍ରଭୁପାଦ ଜବାବ ଦେଲେ—ତୁମେ କ'ଣ ଚାହଁ ପଲ୍ଲୀକୁ ବିଜୁଳିଶକ୍ତି ଯିବନି ? ପଲ୍ଲୀରେ କୋଠାଘର ହେବନି ? ସେଠି କେହି ଯୋତା କୁର୍ତ୍ତା ପିନ୍ଧିବେନି ? ସେଇମିତି ହଳଦିଆ କସ୍ତା ପିନ୍ଧି ରହିଥିବେ ? (ପୃ ୧୩୯) ଉପନ୍ୟାସର ନାୟକ ଶ୍ରୀକଣ୍ଠ ମୁହଁରେ ଲେଖକ ଉତ୍ତର ଦେଉଛନ୍ତି—'ନିଶ୍ଚୟ ମୁଁ ଚାହେଁନା, ପଲ୍ଲୀରେ ବିଦ୍ୟୁତ ଶକ୍ତି। ପଲ୍ଲୀର ପରମତମ ଶକ୍ତି, ସୁନ୍ଦରତମ ଶକ୍ତି ଦେଉଛି, ସରଳ ନିର୍ଦ୍ଦୋଷ, କର୍ମଠ, ସୁସ୍ଥ ମନୁଷ୍ୟ ଶକ୍ତି। ସେ ଶକ୍ତିକୁ ପଛକୁ ଫିଙ୍ଗିଦେଇ ଅନ୍ୟ କୌଣସି ଶକ୍ତି ପଲ୍ଲୀରେ ପ୍ରାଧାନ୍ୟ କରିବାକୁ ଦେବାର ଅର୍ଥ ଇ ପଲ୍ଲୀକୁ ଧ୍ୱଂସ କରିବା। ମନେ ପକାନ୍ତୁ ଗୁରୁଦେବ, କାଳିଦାସଙ୍କ ନାଟକରେ ମହାରାଜ ଦୁଷ୍ମନ୍ତ କଣ୍ୱାଶ୍ରମରେ ପଶିଲାବେଳେ, ତାଙ୍କୁ କପଟ ରାଜକୀୟ ପୋଷାକ ଆଶ୍ରମ ବାହାରେ ଛାଡ଼ିଯିବାକୁ ହୋଇ-ଥିଲା। ପଲ୍ଲୀରେ ପଶିଲାବେଳେ ପଲ୍ଲୀ ବି ସହରର ଅଭିଜ୍ଞତା ନେଇ ସଂସ୍କାର

କରିବାକୁ ଗଲବେଳେ ଆମକୁ ସେହି ଦୁଷ୍ମନ୍ତଙ୍କ ପରି ଅନେକ କାଣ୍ଟୁ ବାଧାରେ ଛନ୍ଦିପିବାକୁ ହେବ । ପଲ୍ଲୀର ଉନ୍ନତି, ପଲ୍ଲୀ ସମସ୍ୟାର ସମାଧାନ ସେହି ପଲ୍ଲୀର ଉପାଦାନ, ପଲ୍ଲୀର ପରମ୍ପରା, ପଲ୍ଲୀର ସଂସ୍କୃତିକୁନେଇ ଆମକୁ କରିବାକୁ ହେବ । ନଚେତ ଆମର ଗାଁସବୁ ନେଣ୍ଟି ସହର ହୋଇପାରେ, କିନ୍ତୁ ପ୍ରେରଣାଦାୟିନୀ ପଲ୍ଲୀ ଆଉ ରହିବ ନାହିଁ । (ପୃ୧୩୯) ପଲ୍ଲୀର ଅସଲ ସମସ୍ୟା ବିଷୟରେ ନାୟକ ଶ୍ରୀକଣ୍ଠ ମୁହଁରେ କହୁଛନ୍ତି—'ପଲ୍ଲୀର ପ୍ରକୃତ ସମସ୍ୟା ବିଦ୍ୟୁତଶକ୍ତି ଯୋଗାଣ ନୁହେଁ, ପଲ୍ଲୀର ଶ୍ରୀବୃଦ୍ଧି ପାଇଁ ପଲ୍ଲୀମାଟିରେ ପଲ୍ଲୀର ମନୁଷ୍ୟଶକ୍ତିକୁ ନବଜୀବନ ଦାନ ହିଁ ଏକମାତ୍ର ସମାଧାନ । ପଲ୍ଲୀର ମନୁଷ୍ୟଶକ୍ତି ଆଜି ତା'ର ପରମ୍ପରା ହରାଇଛି । ସେ ଗୁ, ବିଡ଼ି, ଅଫିମ, ଗଞ୍ଜେଇ, ମଦ ଖାଇ ନଷ୍ଟ ହେବା ଉପରେ ମାଲି-ମୋକଦ୍ଦମା, ବିବାହ, ଶ୍ରାଦ୍ଧର ଆଡ଼ମ୍ବରରେ ସେ ସର୍ବସ୍ୱାନ୍ତ । ପଲ୍ଲୀରେ ବର୍ତ୍ତମାନ କୋଠାଘର ଓ ସୁନାର ଅଳଙ୍କାରର ପ୍ରତିଯୋଗିତା ଆସନ ମାଡ଼ି ବସିଲାଣି । ଏଣେ ଧର୍ମ ଓ ପାରିବାରିକ ଜୀବନର ଭିତ୍ତି ଭୁଟିପିବାରୁ, ବିବାହିତ ଜୀବନରୁ ଇତରତାରେ ଲୋକସଂଖ୍ୟା ବଢ଼ି ଚାଲିଛି । ମାଣକ ପୈତୃକ ଜମି ପାଞ୍ଚଖଣ୍ଡ ହେଉଛି । ପାଞ୍ଚହାତ ଘର ଡିହ ଉପରେ ହାତେ ହାତେରେ କାନ୍ଥ ପଡୁଛି । (ପୃ୧୪୦) ଏ ସମସ୍ୟାର ସମାଧାନ ପାଇଁ ସେ ନିର୍ଦ୍ଦେଶ ଦେଇଛନ୍ତି ଯେ :—"ପଲ୍ଲୀମାଟିକୁ ଏହି ଅନାକାଂକ୍ଷିତ ପଙ୍ଗପାଳଙ୍କ ଅତ୍ୟାଚାରରୁ ରକ୍ଷା କରିବାକୁ ହେବ । ବିଲକୁ ଏକ ନିର୍ଦ୍ଦିଷ୍ଟ ପରିମାଣର ତଳକୁ ଯିବାକୁ ଦିଆଯିବ ନାହିଁ ।" (ପୃ୧୪୦)

ପଲ୍ଲୀକବି ନନ୍ଦକିଶୋରଙ୍କର ଦ୍ୱିତଳ କୋଠାଘର ନାମରେ ଦେଖି କବିଙ୍କୁ ସଂସ୍କୃତିହୀନ ଗାଞ୍ଜିଆସର୍ବସ୍ୱ ମହାଜନମାନଙ୍କ ସଙ୍ଗେ ସମାନ କରିଛନ୍ତି । ଔପନ୍ୟାସିକ ଆଶା କରୁଥିଲେ ଅନ୍ତତଃ ନୂତନ ସ୍ଥିତିରେ ଗଠିତ ମାଟିକୁଟୀରରେ ବାସ କରୁଥିଲେ, ପଲ୍ଲୀମାଟିର କବି ନନ୍ଦକିଶୋର ପଲ୍ଲୀର ପଶ୍ଚାତପଟରେ ଆହୁରି ଅନେକ ବଡ ହୋଇ ପାରିଥାନ୍ତେ । ଏଥିରୁ ଔପନ୍ୟାସିକଙ୍କ ପଲ୍ଲୀର ସୃଷ୍ଟି, ସ୍ଥିତି, ବିକାଶ ଓ ବିକୃତି ସମ୍ବନ୍ଧୀୟ ଧାରଣା ସ୍ପଷ୍ଟ ହୋଇ ଉଠେ ।

**କୃଷକ:**—ମାନସିଂହ ପଲ୍ଲୀକୁ ଯେଉଁପରି ଶ୍ରଦ୍ଧା କରୁଥିଲେ ପଲ୍ଲୀର କୃଷକକୁ ମଧ୍ୟ ସେହି ସଶ୍ରଦ୍ଧ ଦୃଷ୍ଟିରେ ଦେଖୁଥିଲେ । ଧବଳେଶ୍ୱର

ପିକ୍‌ନିକ୍‌ରେ ମାନସିଂହ ପ୍ରଭୁପାଦର କଣ୍ଠରେ ଯେଉଁ ଗୀତଟି ଉପସ୍ଥାପନ କରିଛନ୍ତି ସେ ଗୋଟିଏ କୃଷକ ଯୁବକର କଥା । ପୁନଶ୍ଚ ଫରାସୀ ଚିତ୍ରଶିଳ୍ପୀ ମିଲେର୍‌ଙ୍କ ସାଂଧ୍ୟପ୍ରାର୍ଥନା ଛବିର ବିଷୟ ମଧ୍ୟ କୃଷକ ଦମ୍ପତିକୁ ନେଇ । ମାନସିଂହ କହନ୍ତି ଏଇ ଚିତ୍ରର କେତୋଟି ରେଖା ଯେପରି ସମଗ୍ର ମାନବଜାତିର ରୂପକ ହୋଇ ଦଣ୍ଡାୟମାନ । ଦରିଦ୍ର କୃଷିକାରୀ ସ୍ୱାମୀ ସ୍ତ୍ରୀ, ଗ୍ରାମ୍ୟଗୀର୍ଜାରେ ସଂଧ୍ୟା ଘଣ୍ଟା ବାଜିବା ସଙ୍ଗେ ସଙ୍ଗେ ହାତହତିଆର ପକାଇ ଦେଇ ଏକତ୍ର ମୁଣ୍ଡ ନୁଆଇଁ ପ୍ରାର୍ଥନା କରୁଛନ୍ତି ।

ପଲ୍ଲୀ ଯେଉଁପରି ମଣିଷର ପ୍ରାଚୀନ ବସତି; କୃଷକ ମଧ୍ୟ ସେହିପରି ପଲ୍ଲୀର ପ୍ରାକ୍ତନ ଅଧିବାସୀ । ସଭ୍ୟତାର ବିବର୍ତ୍ତନ ସଙ୍ଗେ ସଙ୍ଗେ କୃଷକର କିପରି ବିବର୍ତ୍ତନ ହୋଇଛି ମାନସିଂହ ଦର୍ଶାଇଛନ୍ତି —

"କୃଷକ ହେବା ପୂର୍ବରୁ ମନୁଷ୍ୟ ଥିଲା ଜଙ୍ଗଲର ଏକ ଜୀବମାତ୍ର । କୃଷିହିଁ ତା'ର ଭ୍ରାମ୍ୟମାଣ, ଲକ୍ଷ୍ୟହୀନ ଜୀବନକୁ ସ୍ଥିର ପ୍ରତିଷ୍ଠିତ କଲା । ମନୁଷ୍ୟର ଶ୍ରମରେ ଖୁସିହୋଇ ମା' ବସୁଧା ସୁନାର ଫସଲ ଅଜାଡ଼ି ଦେଲା ନରନାରୀ ଅଞ୍ଚଳରେ । ଉଦ୍‌ଗତ ହେଲା ତା ପ୍ରାଣର ସଙ୍ଗୀତ ସାହିତ୍ୟ, କେବଳ କଳା ଓ ଶିଳ୍ପ ନୁହେଁ ସମାଜର ପ୍ରକୃତ ସମ୍ପତ୍ତି କହିଲେ ଯାହା ବୁଝାଏ ସେ ସମସ୍ତର ସୃଷ୍ଟିହିଁ ସେହି କୃଷିକାରୀ । ଦିନେ ସେ ଏକାଧାରରେ ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟ ଥିଲା । କିନ୍ତୁ ଅନ୍ତତଃ ଓଡ଼ିଶାରେ ଏହି କୃଷକ ସଭ୍ୟତା ଏଇ ସେଦିନ ପର୍ଯ୍ୟନ୍ତ ଗୌରବରେ ବଞ୍ଚି ରହିଥିଲା । ପ୍ରତ୍ୟେକ ଗ୍ରାମ, ପ୍ରତ୍ୟେକ ବିଶ, ପ୍ରତ୍ୟେକ ଖଣ୍ଡ, ପ୍ରତ୍ୟେକ ଦଣ୍ଡପାଟ, ଏକ ଏକ ମୁଖ୍ୟ କୃଷକ ଦ୍ୱାରା ପରିଚାଳିତ ହେଉଥିଲା । ଏଇ ଶ୍ରେଷ୍ଠ ବଡ ଶାସକଗୋଷ୍ଠୀ ଓଡ଼ିଆ ସମାଜ, ସଭ୍ୟତା ଓ ସଂସ୍କୃତିର ଭଣ୍ଡାର ଓ ପ୍ରତୀକ ସ୍ୱରୂପ ଥିଲେ । ଏଇମାନେ ଥିଲେ ପ୍ରକୃତ ଦେଶର ବିତ୍ତଶାଳୀ । ସାହିତ୍ୟ, ସଙ୍ଗୀତ ଓ କଳାକୁ ଏଇମାନେ ବଞ୍ଚାଇ ରଖିଥିଲେ । ଏଇମାନେହିଁ ଗଢ଼ିଥିଲେ । ଏଇମାନେହିଁ ମୁଣ୍ଡଦେଇ ଦେଶକୁ ଶତ୍ରୁ ହସ୍ତରୁ ରକ୍ଷା କରିଥିଲେ ।" (ପୃ୧୭୫) ବ୍ରାହ୍ମଣ ପରିଚାଳିତ ସମାଜରେ ଗ୍ରାମମାନଙ୍କରେ ସଂସ୍କୃତ ଭାଷା ଚର୍ଚ୍ଚା ହେଉଥିଲା, ଜନତାକୁ ଚିର

ଅଜ୍ଞତାରେ ବୁଡ଼ାଇ ରଖିବାର ଏ ହୀନ ପ୍ରଚେଷ୍ଟା । ମାନସିଂହ କହିଛନ୍ତି—"ଅବସର ମିଳିଲେ କଠୋର ଶ୍ରମନିଯୁକ୍ତ କୃଷିକାର୍ଯ୍ୟ ଗ୍ରାମମାନଙ୍କରେ ଲାଗି ଯାଉଥିଲା ଜନତାର ବ୍ୟାପାରେ, ପୁରାଣ, କାବ୍ୟ ସଙ୍ଗୀତର ଚର୍ଚ୍ଚା ଗାଁ । ଦାଣ୍ଡରେ ଯାତ୍ରା ଓ ପାଲା, ନାଗମହଲରେ ଯୁଦ୍ଧ, ଶତାର ପ୍ରତିଯୋଗିତା ପୁଣି ବ୍ରତ ଓଷାର ମଧୁର ଗାନ ଓ ମିଳନ ।"(୧୬୫)

ଓଡ଼ିଶାକୁ ବ୍ରିଟିଶ ଆଗମନ ସଙ୍ଗେ ସଙ୍ଗେ ସେ କୃଷକର ଗୌରବ ଲୁପ୍ତ ହୋଇଗଲା । ବହୁ ସହସ୍ର ବର୍ଷର ଉତ୍କଳୀୟ କୃଷକ ସଂସ୍କୃତି ଲୁପ୍ତ ବା ବିକୃତ ହୋଇ ପଡ଼ିଲା, ଦେଶର ମେରୁଦଣ୍ଡ ଯେଉଁ କୃଷକ ସେ ହେଲା ଅପାଂକ୍ତେୟ ଓ ଘୃଣିତ । ସମଗ୍ର ଦେଶ ହେଲା ଦରିଦ୍ର । (ପୃ୧୬୭)

**ବିବାହ**.—ବିବାହ ପ୍ରତି ମାନସିଂହଙ୍କର ଧାରଣା ଉପନ୍ୟାସରେ ପ୍ରତିଫଳିତ । ବିବାହ ବିଷୟରେ ପ୍ରଭୁପାଦ ଭାବୁଛନ୍ତି—"ପୁଣି ବିବାହ ଦାମ୍ପତ୍ୟ ଜୀବନ ସତେ କ'ଣ ମନୁଷ୍ୟକୁ ଦିଏ ସୁଖ ଓ ସ୍ୱାଚ୍ଛନ୍ଦ୍ୟ ? ତା'ର ଶ୍ରେଷ୍ଠ ଜୀବନରେ ସେ ଇତିମଧ୍ୟରେ ଅନେକ ବିବାହିତଙ୍କର ପ୍ରତ୍ୟକ୍ଷ ଅଭିଜ୍ଞତା ଜାଣିବାକୁ ପାଇଛି । ନବବଧୂର ଗୁଳବା ବାଟରେ ପଦ୍ମଫୁଲ ସତେ ଫୁଟେନା—ଯେପରି କବିମାନେ ବର୍ଣ୍ଣନା କରିଥାନ୍ତି ଏବଂ ଯାହାକୁ ପଢ଼ି କୋଟି କୋଟି ତରୁଣ ପୁରୁଷ ପୁରୁଷ ଧରି ଏଇ ମଧୁର ଭ୍ରାନ୍ତି ପୋଷଣ କରି ଅଜ୍ଞାତ ଅଭ୍ୟନ୍ତର ଜୀବନ ଦ୍ୱାରର ଦ୍ୱାର ଖୋଲନ୍ତି । କାବ୍ୟର ଅଭିଜ୍ଞତା ଓ ଜୀବନର ଅଭିଜ୍ଞତା ଭିତରେ ଏତେ ଫରକ, ଏତେ ଦୂରନ୍ତ ଓ ଏତେ ବେଶି ଭାବରେ ଆଖିରେ ପଡ଼ିନା । ବିଚରା ସ୍ୱପ୍ନ-ବିଳାସୀ ତରୁଣ ହତାଶ ଭଗ୍ନସ୍ୱପ୍ନ, ନିସ୍ତେଜ, ବିକୃତଚରିତ୍ର ହେବାକୁ ବେଶି କାଳ ଲାଗେନା । ସୌନ୍ଦର୍ଯ୍ୟ ଓ ଯୌବନ ଯଦି ଇହଜୀବନରେ ସୁଖର ଉତ୍ସ ହୋଇଥାନ୍ତା ତେବେ ବିଶ୍ୱପ୍ରସିଦ୍ଧ ଚଳଚ୍ଚିତ୍ରତାରକାମାନଙ୍କର ଛ, ଛ ମାସରେ ବିବାହ ବିଚ୍ଛେଦ ଘଟୁନଥାନ୍ତା । (ପୃ୧୦୩) ଏଥିରୁ ମନେହୁଏ ଔପନ୍ୟାସିକ ବାସ୍ତବ ଜୀବନରେ ଦାମ୍ପତ୍ୟ ପ୍ରେମ ଓ ବିବାହର ଆବଶ୍ୟକତା ଉପଲବ୍ଧି କରିଥିଲେ ମଧ୍ୟ ତାହା ଏକ ସୌନ୍ଦର୍ଯ୍ୟପୂର୍ଣ୍ଣ ବିଳାସର ବସ୍ତୁ ମନେ କରି ନାହାନ୍ତି । ବରଂ ବାସ୍ତବତାରେ ତାହା କୃଷ କର୍କଶ ଓ ମଧୁରର ଏକ ସୁସମ ମିଶ୍ରଣ ।

**ନାରୀ**—ପ୍ରେମ ପ୍ରଣୟର କବି ମାନସିଂହଙ୍କର 'ଅନ୍ୱେଷଣ' ଉପନ୍ୟାସରେ ନାରୀ ପ୍ରତି ଦୃଷ୍ଟିକୋଣ ନିମ୍ନରେ ଆଲୋଚିତ । ପ୍ରକୃତି ଓ ମନୁଷ୍ୟ ପରସ୍ପରର ପରିପୂରକ । ମନୁଷ୍ୟ ବିଶେଷତଃ ମନୁଷ୍ୟା ବା ନାରୀ ତା କଳନାରେ ପ୍ରକୃତିର ଶ୍ରେଷ୍ଠତମ ବିକଶିତ ଫୁଲର କୋମଳତା ଓ ସୌରଭଠାରୁ ଝଡ଼ ଓ ଭୂମିକମ୍ପର ଅକରୁଣ ରୁଦ୍ରତା ପର୍ଯ୍ୟନ୍ତ ପ୍ରକୃତିର ସକଳ ବିଭବ ସେ ନାରୀଠାରେ ସୂକ୍ଷ୍ମଭାବରେ ପୁଞ୍ଜୀଭୂତ ଥିବାର ମନେ କରେ । ସେଇଥିପାଇଁ ହିଁ ସେ ଭାବେ ନାରୀ ଏପରି ଲୀଳାମୟୀ । ନାରୀ ସୁନ୍ଦରୀ ହୁଏ ସୃଜନ ପାଇଁ, ପୁଣି ତୋଫାନ ହୁଏ ତା'ର ନିଜ ସୃଷ୍ଟି ସଂସାରକୁ ନିୟନ୍ତ୍ରିତ କରିବା ପାଇଁ । ଶ୍ରୀକଣ୍ଠ ମନେକରେ ଏଇ ଯେ ନାରୀ ଓ ତା'ର ଅନୁଚର ଓ ସାଥୀ ପୁରୁଷ ଏମାନଙ୍କ ଅନୁପସ୍ଥିତିରେ କୌଣସି ଚିତ୍ର ବା କଳା ସମ୍ପୂର୍ଣ୍ଣ ହୋଇ ନପାରେ । (ପୃ୯୭) ପୁଣି ସେ ଭାବୁଛି—ଯଦି ଏ ଜଗତରେ ବିଧାତାର ପ୍ରକୃଷ୍ଟ ପରିଚୟ କିଛି ଥାଏ ତେବେ ସେ ମନୁଷ୍ୟ ଓ ତା'ର ଲୀଳାମୟୀ ସଙ୍ଗିନୀ ନାରୀ ଏବଂ ଏ ଦୁହିଁଙ୍କର ପରସ୍ପର ପ୍ରତି ଓ ପରସ୍ପର ଭିତରେ ଯେଉଁ ମାନସିକ ଆକର୍ଷଣ ଓ ଦ୍ୱନ୍ଦ୍ୱ, ତାହାହିଁ । ( ପୃ୧୦୪ )

**ପ୍ରେମ**:—ମାନସିଂହଙ୍କ ଦୃଷ୍ଟିରେ ପ୍ରେମର ସ୍ୱରୂପ—ଆତ୍ମାଦ୍ୱାରା ଆତ୍ମାର ମନ୍ଥନହିଁ ପ୍ରେମ । ସମୁଦ୍ର ମନ୍ଥନରୁ ସୁଧା ଓ ଶ୍ରୀର ଆବିର୍ଭାବ ପରି ଏହି ଆତ୍ମମନ୍ଥନରୁ ଜାତହୁଏ ମାନବର ଶାନ୍ତି ଓ ସୁଖ । (ପୃ୧୪୭ । ପ୍ରେମର ସ୍ୱରୂପ ପାଇଁ ପ୍ରଥମେ ଶ୍ରୀକଣ୍ଠ ମନରେ ଦ୍ୱନ୍ଦ୍ୱ ସୃଷ୍ଟି ହୋଇଥିଲା—ସେ କହନ୍ତି—ଦେହ ଓ ଦେହର ମିଳନରେ ଏପରି ଏକ ସୁଖ ଅଛି, ଯାହାର ପାଇଁକି ସମସ୍ତ ଜୀବସଂସାର ପାଗଳ, ସେହିପରି ଆତ୍ମା ଆତ୍ମାର ଏକ ନିର୍ଦ୍ଦେହିକ ମିଳନ ଥାଇପାରେ କି ? ତାହାର ନାମ କି ପ୍ରେମ ? ତାହାରି ତାଡ଼ନାରେ କ'ଣ ରାଜକନ୍ୟା ଗୌରୀ ଭିକାରୀ ଶିବପାଇଁ ତପସ୍ୟା କରିଥିଲେ ? ପରିପୂର୍ଣ୍ଣ ପ୍ରେମର ସ୍ୱରୂପ ଜଣାଇବା ପାଇଁ ମାନସିଂହ ଉଲ୍ଲେଖ କରିଛନ୍ତି:—"ଅଶ୍ରୁ ପ୍ରେମର ପ୍ରତୀକ । ସୁଖ ପ୍ରେମର ଲକ୍ଷ୍ୟ ନୁହେଁ, ପ୍ରେମର ଲକ୍ଷ୍ୟ ପରିତୋଷ ଓ ପରିପୂର୍ଣ୍ଣତା । ଦୁଇଟି ଅଧା ଜୀବନ ମିଶି ପୂର୍ଣ୍ଣ ହୁଅନ୍ତି ଓ ସେହି ପୂର୍ଣ୍ଣତା ଆଣେ ପ୍ରାଣରେ ପ୍ରଥମ ପରିତୋଷ । ପ୍ରେମହିଁ ପ୍ରେମର ଏକମାତ୍ର ଓ ସର୍ବଶ୍ରେଷ୍ଠ ପରିଣତି ଓ ଫଳ । ଜଣେ

ନାରୀର ପରିପୂର୍ଣ୍ଣ ପ୍ରେମଠାରୁ ମାନବ ଜୀବନରେ ମହତ୍ତର ପୁଣ୍ୟ ନାହିଁ । ଏହା ନିକଟରେ ସାମ୍ରାଜ୍ୟ ହିଁ ତୁଚ୍ଛ । ନାରୀ ହୃଦୟର ସିଂହାସନ ନିକଟରେ ମଣିମାଣିକ୍ୟର ସିଂହାସନ ପଙ୍କର ଶେଯପରି । (ପୃ-୧୪୬ )

ତାଙ୍କ ମତରେ ଦୈହିକ ପ୍ରେମ ନିକୃଷ୍ଟ ଧରଣର ପ୍ରେମ ବା କାମ । ପ୍ରେମର ଦେହ ସଙ୍ଗେ ଅଙ୍ଗାଙ୍ଗି ସମ୍ପର୍କ ନାହିଁ । ସେଥିପାଇଁ ବୋଧହୁଏ ଭାରତୀୟ ପୁରାଣରେ ପ୍ରେମଦେବତାର ନାମ ଅନଙ୍ଗ ।"

**ଯୌନ ଜୀବନ** :—ଯୌନନିଷ୍ଠା ଏକ ପ୍ରବୃତ୍ତି ହୋଇଥିଲେ ମଧ୍ୟ ଏଥିରେ ସଂଯମ ଓ ସାମାଜିକତା ଆବଶ୍ୟକ । ସାନ ମା'ର କରୁଣ ପାରିବାରିକ ଜୀବନର ଚିତ୍ର ଦେଇ ଔପନ୍ୟାସିକ ବର୍ଣ୍ଣନା କରିଛନ୍ତି— "ମାନମ' ନରୋତ୍ତମଙ୍କୁ କେବଳ ଜାଣିଥିଲା ଗଭୀର ନିଶିଥରେ, ଏକ ଅନ୍ଧକାରମୟ କକ୍ଷରେ । ସେଇ ତ ଥିଲା ସେ କାଳର କୌଳିକ କାଇଦା । ଏକାନ୍ନବର୍ତ୍ତୀ ପରିବାରରେ ବଡ଼, ଶ୍ରେଷ୍ଠ, ସମସ୍ତେ, ଦମ୍ପତି ଓ ସମ୍ପତ୍ତିଟାକୁ ବ୍ୟକ୍ତିଗତ ଦାବୀ ଭିତରେ ଗଣୁ ନ ଥିଲେ । ଯୌନସୁଖର ଅଧିକାର ସମସ୍ତଙ୍କର ଅଛି, କିନ୍ତୁ ଏହା ଏପରି କିଛି ମହତ୍ ପଦାର୍ଥ ନୁହେଁ ଯାହାର ପ୍ରାପ୍ତି ଓ ଭୋଗପାଇଁ ସମଗ୍ର ପରିବାରର ବଡମାନଙ୍କ ମନରେ ବିନିଦ୍ରା ବା ବିରକ୍ତି ଜାତ କରାଯାଇପାରେ । ପରିବାରର ଐକ୍ୟ ପାଇଁ, ଜ୍ୟେଷ୍ଠ-ମାନଙ୍କର ସମ୍ମାନ ପାଇଁ, ଯୌନ ସମ୍ପର୍କ ପରି ସାଧାରଣୀ କ୍ଷୁଧାଟାକୁ ସଞ୍ଚିତ, ସମାବୃତ, ଗୋପନ ଭାବରେ ନିବୃତ୍ତ କରାଇବାରେ କ୍ଷତି କ'ଣ ? ପରିବାରର ସମୂହ ଜୀବନର ସୁଖଶାନ୍ତିଠାରୁ ତାହା କ'ଣ ବଡ ? (ପୃ-୯୬ )

ଯୌନନିଷ୍ଠାର ସ୍ୱରୂପ ସମ୍ପର୍କରେ ସେ କହନ୍ତି—"କ୍ଷୁଧାନିବାରଣ ପରି ଯୌନ ସମ୍ପର୍କ ଏକ ଶାରୀରିକ ସୁଖ । ପଶୁପକ୍ଷୀ, ସରୀସୃପ, ନରନାରୀ, ସମସ୍ତେ ସେହି ସୁଖପାଇଁ ଲାଳସୀ । ଏହା ପ୍ରକୃତିର ନିର୍ଦ୍ଦେଶ ଓ ତାଡ଼ନା । ଗାଈ କୁକୁରମାନଙ୍କଠି ସେ ଲକ୍ଷ କରିଛି, ବର୍ଷସାରା ଯୌନଲାଳସାର କୌଣସି ଚିହ୍ନ ସେମାନଙ୍କଠାରେ ଦେଖାଯାଏ ନାହିଁ । ହଠାତ୍ ଗୋଟିଏ ଋତୁରେ ଗୋଟିଏ ସମୟରେ ପ୍ରକୃତିର ନିର୍ଦ୍ଦେଶ ଆସେ; ନିରୀହ ଜୀବ ଅସ୍ଥିର ହୋଇ ଉଠେ । ଗାଈ ଓ କୁକୁରୀ ଖୋଜି ଖୋଜି ପୁରୁଷ ଜୀବ

ନିକଟରେ ଆତ୍ମସମର୍ପଣ କରେ । ତା'ପରେ ପରେ ପୁରୁଷ ଓ ସ୍ତ୍ରୀ ଜୀବର ସମ୍ପର୍କ ଏକାବେଳକେ ଅଯୌନ ପୁଣି ଆଉ କେବେ ପ୍ରକୃତିର ନିର୍ଦ୍ଦେଶ ଆସିଲାଯାଏ ।" (ପୃ-୧୪୪)

ଶେଷରେ ଲେଖକ କହୁଛନ୍ତି—"ଏ ପର୍ଯ୍ୟନ୍ତ ବୁଝିପାରେନା ପ୍ରକୃତି, ସେ ଯୌନ ତାଡ଼ନା ପୂରାଏ କାହିଁକି ? ପୁଣି ତା'ପରେ ଦିଏ କାହିଁକି ଦେହ ଓ ମନର ଦୁର୍ବଳତା ଓ ଆତ୍ମଗ୍ଲାନି ? ଯଦି ବା ସେ ଜାଣୁଛି କେବଳ ତା'ର ଜନ୍ମ ନୁହେଁ; ବୁଦ୍ଧ, ଗାନ୍ଧି, ବିବେକାନନ୍ଦଙ୍କ ଜନ୍ମ ସେମାନଙ୍କର ପିତାମାତାଙ୍କର ଏକ ଦୁର୍ବିତହମ୍ୟ ଆପାତସୁଖମୟ ଜଞ୍ଜାଳ-କ୍ଲାନ୍ତି ଅଭିଜ୍ଞତାରୁ ହିଁ ଘଟିଛି, ତଥାପି ଜଗତର ସର୍ବଶ୍ରେଷ୍ଠ ନାରୀ ଓ ନର ସେ ଅଭିଜ୍ଞତାକୁ ବରାବର ଏଡ଼ାଇବାକୁ ଚେଷ୍ଟା କରନ୍ତି ।" (ପୃ-୧୮୫)

**ସଙ୍ଗୀତ** :—ମାନସିଂହ ସଙ୍ଗୀତକୁ ଯେଉଁ ଦିଗରୁ ବିଚାର କରୁଥିଲେ ତାହା ତାଙ୍କର ଚରିତ୍ର ପ୍ରଭୁପାଦର ମୁଖରେ ଅଭିବ୍ୟକ୍ତ— "ପ୍ରଭୁପାଦର ଗାନର ପ୍ରେରଣା ଭରତାୟ ସଙ୍ଗୀତଓ ବିଜ୍ଞାନର ଅବୋଧ, ଦୁର୍ବୋଧ ଓ ଅନାବଶ୍ୟକୀୟ ଚନ୍ଦୁକୁଣ୍ଠାରୁ ଆସେନା !! ତାହା ଆସେ, ଅନ୍ତରର ପ୍ରେରଣାରୁ" ( ପୃ-୪୪ ) ସଙ୍ଗୀତର ରୂପ କିପରି ହେବ, ସେ ବିଷୟରେ କହନ୍ତି—'ପ୍ରଭୁ ପ୍ରକୃତରେ ଗାଏ, ଗାଏ ଯେପରି ପୁରୁଷ ପକ୍ଷୀ କେବଳ ତା'ର ପ୍ରିୟ ପକ୍ଷିଣୀକି ଡାକିବାର ଆନନ୍ଦରେ । ତା'ର ଗାନ ପ୍ରକାଶ, ତାଳ, ଲୟର ଅନୁଶାସନ ମାନି ତା'ର ସହଜ, ଲୀଳାୟିତ ସ୍ୱାଭାବିକ ମାଧୁର୍ଯ୍ୟ ହରାଇ ନ ଥାଏ । ତେଣୁ ହିଁ ତାହା ସ୍ପର୍ଶ କରେ ପ୍ରାଣ ଯଦିଓ କୌଣସି କସରତ୍ ବାଲା ଓସ୍ତାଦ ଆଖିରେ ତା'ର ଗାନର ସ୍ୱାଭାବିକ କୋମଳ ଲାବଣ୍ୟର କୌଣସି ମୂଲ୍ୟ ନ ଥିଲା । ଯେହେତୁ ସେଥିରେ ନ ଥାଏ ଜିମାଷ୍ଟିକର ଚମତ୍କାରିତା ଓ ମାଂସପେଶୀର ପ୍ରଦର୍ଶନୀ ।"( ପୃ-୪୪ )

ସଙ୍ଗୀତର ସ୍ୱରୂପ ଓ ଭାଷା ବିଷୟରେ ସେ କହନ୍ତି, "ଗୀତଟି, ସହଜ, ଶାନ୍ତ, ନିରାଡ଼ମ୍ବର, ଓଡ଼ିଆରେ ଗୀତ କହିଲେ ଭାଷାକୁ ଯେପରି ମୋଡ଼ାମୋଡ଼ି ସାପକେଞ୍ଚୁଆ ପରି ଲମ୍ବା ଓ ବନ୍ଦଗଣ୍ଠି କରି ଥୋଇବାକୁ ହୁଏ, ଏଥିରେ ତାହା ନ ଥିଲା । ଏହାର ଭାଷା ଆମ ଦୈନନ୍ଦିନ ଜୀବନର ଭାଷା

ଏବଂ ଭାବ ସାଧାରଣ ଅନୁଭୂତି । ଏହି ସାଧାରଣକୁ ଅସାଧାରଣ କମନୀୟତା ଦେଇ ପାରିଥିଲା କୌଣସି ସ୍ୱର ବିଜ୍ଞାନର କସରତ୍ ନୁହେଁ କେବଳ ପ୍ରଭୁପାଦର ଉଦାର କଣ୍ଠଧ୍ୱନି ଓ ମର୍ମର ଅନୁଭୂତି ( ପୃ-୪୭ )

ଲେଖକଙ୍କର ଓଡ଼ିଆ ଗୀତ ପ୍ରତି ଦୃଷ୍ଟିକୋଣ ନିମ୍ନ ଉଦ୍ଧୃତିରୁ ଜଣାପଡ଼େ । "ସାଧାରଣତଃ ଓଡ଼ିଆ ଗୀତମାନଙ୍କରେ ଥାଏ ରବାଡ଼ମ୍ବର, କେବଳ ଝଙ୍କାର ଓ ଠଙ୍କାର, କେବଳ ଅନର୍ଥକ ଏଣ୍ଡୁ ତେଣ୍ଡୁ ଗୁଡ଼ାଏ ଶବ୍ଦ । ପ୍ରଭୁଙ୍କର ଗୀତଟିର ଆତ୍ମା ଓ ସର୍ବସ୍ୱ ଥିଲା କେବଳ ତାର ଭାବନା । ସମଗ୍ର ଗୀତଟି କେବଳ ଗୋଟିଏ ଶ୍ରେଷ୍ଠ କରୁଣ ଆଖ୍ୟାୟିକା ।"(ପୃ ୪୭) ସମସ୍ତ ଉଦ୍ଧୃତିରୁ ସ୍ପଷ୍ଟ ହୁଏ ମାନସିଂହ ସରଳ ସ୍ୱାଭାବିକ ଗାନର ପରିପ୍ରକାଶକୁ ଏବଂ ଭାବପୂର୍ଣ୍ଣ ଗୀତକୁ ଶ୍ରେଷ୍ଠ ମନେ କରିଛନ୍ତି । ତାଙ୍କ ଦୃଷ୍ଟିରେ ତାଳ, ଲୟ, ରାଗ, ରାଗିଣୀ ଦ୍ୱାରା ସମ୍ପୂର୍ଣ୍ଣ ସଂଯତ ଓ ଶୃଙ୍ଖଳିତ ଗୀତ ପ୍ରଭାବ ହରାଇଥାଏ । ଏଥିରୁ ମନେହୁଏ ଲେଖକ ନିଜ ଜୀବନରେ ଶ୍ରେଷ୍ଠ ସଙ୍ଗୀତର ମହତ୍ତ୍ୱ ଉପଲବ୍ଧି କରିବାର ଅବସର ପାଇନାହାନ୍ତି ।

**ସାହିତ୍ୟ :—**ଅନ୍ୱେଷଣ ଉପନ୍ୟାସରେ ମାନସିଂହ ଗୋଟିଏ ସାହିତ୍ୟ ପତ୍ରିକା ବିଷୟରେ ଉଲ୍ଲେଖ କରି ସେଥିରେ ଥିବା ଦୁର୍ବଳତାକୁ ଦର୍ଶାଇଛନ୍ତି 'ଏଇ ଦେଖ ଏକ ପ୍ରବନ୍ଧ । ରଣଖେତ କେଶରୀଙ୍କ ମୃତ୍ୟୁ ବର୍ଷ ।' କେବଳ ଅବୋଧ ଅଙ୍କ ଗଣନା ଓ ଅନୁଶାସନର ଧସ୍ତାଧସ୍ତି । 'ସାହିତ୍ୟରେ ଜଳାତଙ୍କବାଦ' । ଆଉ ଏକ ପ୍ରବନ୍ଧ 'ଉଡ୍ରୋ ଉଇଲସନ ଓଡ଼ିଆ କି ନୁହେଁ ?' ଲେଖକ ପଣ୍ଡିତ ରାମାନୁଜ ତୀର୍ଥଶର୍ମା କାବ୍ୟ ବ୍ୟାକରଣ ସାଂଖ୍ୟଦର୍ଶନ ତୀର୍ଥ, (ପୃ. ୬୮)କବିତା ବିଷୟରେ କହନ୍ତି—

'କବିତା ଉକ୍‌ସନାରି ନୁହେଁ ଯେ ସେଥିରୁ ମାନେ ବାହାରିବ । କବିତା ହେଲା ରହସ୍ୟମୟୀ ସରସ୍ୱତୀ । ସେ ଯେତିକି ରହିବେ ରହସ୍ୟାବୃତ୍ତା ଯେତିକି ଅସ୍ପଷ୍ଟ, ଯେତିକି ଅବୋଧ, ଅଗମ୍ୟ, ଅଜ୍ଞେୟ; ସେତିକି ତାଙ୍କର ମାଧୁର୍ଯ୍ୟ ବୃଦ୍ଧି ପାଇବାର ଆଶା । କେବଳ ଇତର ସାଧାରଣହିଁ ଖୋଜନ୍ତି ମାନେ, ଯାହା ହେବ ସ୍ପଷ୍ଟ ସୀମାବଦ୍ଧ ନିର୍ଦ୍ଦିଷ୍ଟ । ପ୍ରକୃତ ସମଜଦାର ପାଠକମାନଙ୍କ ଠାରେ କିନ୍ତୁ କବିତା ସେହି, ଯାହା ସବୁକଥା ପ୍ରକାଶ କରିବାକୁ କୁଣ୍ଠିତ; ଅନ୍ୟ କଥାରେ ଯାହା ଅବୋଧ, ଦୁର୍ବୋଧ, ଅସ୍ପଷ୍ଟ । ଜଗତରେ

ସର୍ବଜ ପ୍ରକୃତ ସମଜଦାର ପାଠକର ସଂଖ୍ୟା ମୁଷ୍ଟିମେୟ । (ପୃ. ୩୦) ଉକ୍ତିଗୁଡ଼ିକ ଲେଖକ ଅନ୍ୟମୁଖରେ ପ୍ରକାଶ କରି ଯେପରି ଆଧୁନିକ କବିତା ପ୍ରତି ଏକ ବ୍ୟଙ୍ଗାତ୍ମକ ଢଙ୍ଗରେ ପ୍ରକାଶ କରିଛନ୍ତି । ତାଙ୍କ ଦୃଷ୍ଟି ଓ ସୃଷ୍ଟି ଏହାଠାରୁ ଭିନ୍ନ ମନେହୁଏ ।

**କଳା** :—କଳାର ଭାଷା ସାର୍ବଜନୀନ—କୌଣସି ପ୍ରକୃତ ଶିଳ୍ପୀ ବା କବି ନିଜ କୃତକାର୍ଯ୍ୟରେ ସନ୍ତୁଷ୍ଟ ପ୍ରାୟ ହୋଇ ନ ଥାନ୍ତି । ପାଶ୍ଚାତ୍ୟ କଳା ଓ ସାହିତ୍ୟରେ ମନୁଷ୍ୟ ଓ ପ୍ରକୃତିକୁ ଦୁଇଟି ପରସ୍ପରବିରୋଧାତ୍ମକ ବ୍ୟକ୍ତିତ୍ୱ ବୋଲି ଯାହା ନିଆଯାଏ, ଶ୍ରୀକଣ୍ଠର ଅଭିପ୍ରାୟ ଠିକ୍ ତାହା ଗ୍ରହଣ କରିନାହିଁ । ସେ ବୁଝେ ଯେ ପ୍ରକୃତି ଓ ମନୁଷ୍ୟ ପରସ୍ପରର ପରିପୂରକ । (ପୃ. ୧୨୩) ସେଥିପାଇଁ ସେ ମୁସଲମାନୀ ଭାସ୍କର୍ଯ୍ୟ ଓ ସ୍ଥାପତ୍ୟ ପ୍ରତି ବୀତସ୍ପୃହ । କଳା କେବଳ ଜ୍ୟାମିତି ଶାସ୍ତ୍ର ଉପରେ ପ୍ରତିଷ୍ଠିତ ଓ ମହିମାନ୍ୱିତ ହୋଇ ନ ପାରେ । କେବଳ ରେଖା ତ୍ରିକୋଣ, ଚତୁଷ୍କୋଣ, ବୃତ୍ତ, ଅର୍ଦ୍ଧବୃତ୍ତ ଦେଇ ଶିଳ୍ପ କିପରି ପ୍ରାଣବନ୍ତ ଓ ଗୌରବାନ୍ୱିତ ହୋଇପାରେ ସେ କଳ୍ପନା କରିପାରେନା । ଯଦି ଏ ଜଗତରେ ବିଧାତାର ପ୍ରକୃଷ୍ଟ ପ୍ରତୀକ କିଛି ଥାଏ ତେବେ ସେ ମନୁଷ୍ୟ ଓ ତା'ର ଲୀଳାମୟୀ ସଙ୍ଗିନୀ ନାରୀ ଏବଂ ଏ ଦୁହିଁଙ୍କର ପରସ୍ପର ପ୍ରତି ଯେଉଁ ମାନସିକ ଆକର୍ଷଣ ଓ ଦ୍ୱନ୍ଦ୍ୱ ତାହାହିଁ । ଅଥଚ ମୁସଲମାନୀ କଳାରେ ମନୁଷ୍ୟ ସଂସ୍କୃତିର ଏଇ ଚରମୋତ୍କୃଷ୍ଟ ବିକାଶ ଓ ପ୍ରକାଶ ନାହିଁ । କୌଣସି ଦ୍ରବ୍ୟ ବା ବ୍ୟକ୍ତି ମନୋରମ ହୋଇପାରେ, ଯେପରି ମୁସଲମାନୀ ସ୍ଥାପତ୍ୟର ଅନେକ କିଛି, କିନ୍ତୁ ତାହା ବୋଲି ତାକୁ ବରେଣ୍ୟ ବୋଲି ଗ୍ରହଣ କରାଯାଇ ନ ପାରେ । ଏଥିରୁ ଲେଖକଙ୍କ କଳା ସମ୍ବନ୍ଧୀୟ ବିଚାରଧାରା ଅତି ସ୍ପଷ୍ଟ ଅଭିବ୍ୟକ୍ତ ହୋଇଅଛି ।

**ଧର୍ମ ଓ ସଂସ୍କୃତି** :—ମାନସିଂହ ହିନ୍ଦୁ ଧର୍ମର ପୁରୋହିତ ଗୋଷ୍ଠୀଙ୍କ ନାନା ମନୋମୁଖୀ କାରବାରର ପ୍ରତିବାଦ କରୁଥିଲେ । ନିଜେ ବୌଦ୍ଧ ଧର୍ମରେ ବିଶ୍ୱାସ ସ୍ଥାପନ କରି ବୁଦ୍ଧଙ୍କୁ ମହତ୍ତ୍ୱ ପ୍ରଦାନ କରୁଥିଲେ । ତେଣୁ ସେ ଧବଳେଶ୍ୱର ମନ୍ଦିରର ପଣ୍ଡାଙ୍କୁ ଅର୍ଥୈକ ଦୃଷ୍ଟି ପଣ୍ଡା' ବୋଲି କହିଛନ୍ତି । ବିବାହରେ ପୁରୋହିତ ମନ୍ତ୍ରପାଠ ପ୍ରତି ଅନାସ୍ଥା

ପ୍ରକାଶ କରି କହନ୍ତି—ବାହାରେ ଅଧାପାଠୁଆ ବ୍ରାହ୍ମଣ ଭୁଲଭାଲ ସଂସ୍କୃତରେ ମିଳନମନ୍ତ୍ର ଉଚ୍ଚାରଣ କରୁଥାଏ, ତାହା କେବଳ ସାମାଜିକ ପ୍ରଥା ମାତ୍ର। ତା'ର କୌଣସି ଦରକାର ହିଁ ନ ଥିଲା, କାରଣ ପ୍ରକୃତି ନିଜେ ହିଁ ପୁରୋଧା ହୋଇ ଦୁଇଟି ପ୍ରାଣକୁ ବହୁ ଆଗରୁ ଓ ବର୍ତ୍ତମାନ ଏକାଠି କରି ସାରିଥିଲା।"

ଧବଳେଶ୍ୱର ମନ୍ଦିର ଓ ଶିବଲିଙ୍ଗ ପ୍ରତି ମନ୍ତବ୍ୟ ଦେଇ କହନ୍ତି—ଚଟାଣ ବର୍ଷା ଦିନର ରାସ୍ତା ପରି କାଦୁଅ ପାଣିରେ ସପର ସପର। ହିନ୍ଦୁ ଦେବତା ସେହି ପଥରଗଡ଼ା, ମୈଥୁନାରତ ଯୋନିପ୍ରତୀକ ଉପରେ ବହୁଦିନର ପତ୍ରଫୁଲର ପଚନଶୀଳ ସମାହାର। କିନ୍ତୁ ଏ ସଂସ୍କାର ଓ ବାହ୍ୟ ବସ୍ତୁର ଶିକ୍ଷା ମନୁଷ୍ୟର ମନକୁ ଏପରି ଗଢିଦିଏ ଯେ ଯେଉଁମାନେ ଠିକ୍ ସେହି କାଦୁଅ, ସେଇ ପଚା ଫୁଲ, ପତ୍ର ଏବଂ ସେହି ଅଭଦ୍ର ପ୍ରତୀକକୁ ବାହାରେ ଯେଉଁଠି ଦେଖିଲେ ହେଲେ ଘୃଣାରେ ପରିତ୍ୟାଗ କରନ୍ତେ, ସେହିମାନେ ଦେବତା ଓ ଧର୍ମ ନାମରେ ସେ ସମସ୍ତଙ୍କୁ ସାଗ୍ରହରେ ଗ୍ରହଣ କରି ନେଲେ, ନମସ୍କାର କଲେ ଓ ମନର ନିଗୂଢ଼ତମ କାମନା-ରାଜିର ସଫଳତା ପାଇଁ ଏତେ ଦରଖାସ୍ତ ପେଶ କରି ଆସିଲେ ଦେବତା ଓ ମନୁଷ୍ୟ ଭିତରେ ଥିବା ଅସଭ୍ୟ ଆଶିକ୍ଷିତ ଅନାବଶ୍ୟକ ସ୍ୱାର୍ଥସର୍ବସ୍ୱ ମଧ୍ୟସ୍ଥ ପଣ୍ଡାକୁ କେତୋଟି ମାତ୍ର ତାମ୍ର ମୁଦ୍ରା ଦେଇ। (ପୃ. ୪୯)

ନିମ୍ନରେ ହିନ୍ଦୁ ସନ୍ନ୍ୟାସୀମାନଙ୍କ ପ୍ରତି ମାନସିଂହଙ୍କର ଦୃଷ୍ଟିକୋଣ ପ୍ରଦତ୍ତ ହେଲା। ତା'ର ଦୃଢ଼ ଧାରଣା ମାନବିକ ବିବର୍ତ୍ତନର ଶ୍ରେଷ୍ଠ ନିକଷ ହେଉଛି ରୂପର ଆଦର, ନୁହେଁ ରାଜମାତି, ନୁହେଁ ବିଜ୍ଞାନ, ନୁହେଁ ଯୋଗାଭ୍ୟାସରେ ଜଟାଭାର, ପାଉଁଶ ଧୂସର ହିନ୍ଦୁ ସନ୍ନ୍ୟାସୀକୁ ଆଉ ଆଖିରେ ଚାହିଁ ପାରେନା। ସେ ସେମାନଙ୍କୁ ମନେକରେ ମାନବିକ ଦୁର୍ବୃତ୍ତ। ସୁନ୍ଦର ଭଗବାନଙ୍କୁ ଯେ ଆରାଧନା କରିବାରେ ନିଯୁକ୍ତ ସେ ନିଜକୁ ଏପରି କିପରି କୁତ୍ସିତ କରିପାରେ ସେ ବିଶ୍ୱାସ କରି ପାରେନା। ଠିକ୍ ଏହି କାରଣରୁ ସେ ଅଧିକ ପସନ୍ଦ କରେ ରୋମାନ କ୍ୟାଥୋଲିକ ଚର୍ଚ୍ଚର ପରିବେଶ, ସୁନ୍ଦରୀ ସୁହାସିନୀ ସ୍ନେହମୟୀ ଭଗିନୀ ଓ ପ୍ରଶାନ୍ତବଦନ, ସୁପରିହିତ 'ପିତା'ର ଦଳକୁ

ମଧୁର ନନ୍ଦତ, ସୌନ୍ଦର୍ଯ୍ୟ ନେଇ ଆର୍ଟିଷ୍ଟର ତୂଳୀ ମାଧ୍ୟମରେ ଭଗବାନଙ୍କୁ କିପରି ସହଜରେ ଅନୁଭବକୁ ଅଣାଯାଇପାରେ ସେଥିପାଇଁ ସେ ଫରାସୀଶିଳ୍ପୀ ମିଲେରଙ୍କର ପ୍ରସିଦ୍ଧ ଚିତ୍ର ସାନ୍ଧ୍ୟ ପ୍ରାର୍ଥନାକୁ ଦେଖାଇଛନ୍ତି ।"

ସାଧାରଣ ଧର୍ମ ପ୍ରତି ବିଚାରଧାରା ହେଲା—"ବହୁପାପ, ବ୍ୟଭିଚାର, ରୋଗ ଓ ମୂର୍ଖତାର ପୀଠସ୍ଥଳୀ ହିନ୍ଦୁ ମନ୍ଦିର, ବହୁ ଅନ୍ଧ ଅସହିଷ୍ଣୁତା ଓ ବର୍ବରତାର ଜନ୍ମସ୍ଥାନ, ମୁସ୍‌ଲେମ ମସ୍କ, ବହୁ ଅନ୍ଧ ଅଧର୍ମିକା ଓ ଘୃଣାର କେନ୍ଦ୍ର ଖ୍ରୀଷ୍ଟିଆନ ଚର୍ଚ୍ଚ ଅପେକ୍ଷା ଶ୍ରୀକଣ୍ଠ ଏହି ଚିତ୍ରଟିକୁ ମହତ୍ତର ଓ ପବିତ୍ରତର ମନେ କରେ । ଗୀର୍ଜା, ମନ୍ଦିର ଓ ମସ୍କ ଠିଆ କରାଇ ଆସିଛନ୍ତି ରାଜା, ଜମିଦାର, ଧନୀ ଓ ବ୍ୟବସାୟୀର ଦଳ, ଯେଉଁମାନଙ୍କ ଦୁଇହାତ କହୁଣୀ ପର୍ଯ୍ୟନ୍ତ ନର ଲୁହରେ ଆର୍ଦ୍ର । ସେଠିକି ଭଗବାନ ଆସିବେ କିପରି ଓ କାହିଁକି ? ଭଗବାନ କ'ଣ ଏତେ ଓଲୁ ହୋଇ ପାରନ୍ତି" (ପୃ. ୬୦) ପୁନଶ୍ଚ ପୁରୋହିତ ଧର୍ମଯାଜକଙ୍କ ବିଷୟରେ ଲେଖିଛନ୍ତି—"ଈଶ୍ୱର ଉପଲବ୍‌ଧି ଏଠି ସହଜଲଭ୍ୟ ନ ହୋଇ ହେବ କି ସେଇଠି ଯେଉଁଠି ବ୍ୟଭିଚାରୀ ରାଜା ଗଢ଼ିଛି ଦେଉଳ ବା ମସ୍‌ଜିଦ୍‌ ଓ ଛାଡ଼ିଯାଇଛି ତା'ର ତତ୍ତ୍ୱାବଧାନ ସ୍ୱାର୍ଥସର୍ବସ୍ୱ, ପାଷଣ୍ଡ ପୁରୋହିତ ଦଳ ହାତରେ ?" (ପୃ. ୬୧)

ଧର୍ମ ଓ ସଂସ୍କୃତି ସମ୍ବନ୍ଧରେ ମାନସିଂହଙ୍କର ଅସଲ ସ୍ୱରୂପ ହେଉଛି—"ଯାହା ମନୋରମ ତାହା ପରମ ନୁହେଁ, ପରମ ସେହି ଯାହା ମନୁଷ୍ୟର ଚରମତମ ସ୍ୱପ୍ନସବୁକୁ ଜୀବନ୍ତ ଓ ସୁନ୍ଦର କରି ପ୍ରକାଶ କରେ, ସେହି ନର ଓ ନାରୀ ମାଧ୍ୟମରେ । ସେଇଥି ପାଇଁ ତ ରାମାୟଣ ଓ ମହାଭାରତ ଉପନିଷଦଠାରୁ ମହତ୍ତର କାରଣ ସେହି ବରେଣ୍ୟ ମହାକବି-ମାନଙ୍କର ଈଶ୍ୱର ଓ ଈଶ୍ୱରବାଣୀ ମନୁଷ୍ୟ ଓ ମନୁଷ୍ୟର ରକ୍ତମାଂସ ନେଇ ପ୍ରକାଶଲାଭ କରିଛନ୍ତି ।"

**ରାଜନୀତି :**—ଦେଶର ଅମଲା ଓ ଶାସକମାନଙ୍କ ଉପରେ ମାନସିଂହଙ୍କ ବିଚାରଧାରା ଆମେ ନିମ୍ନୋକ୍ତ ଉଦ୍ଧୃତିରୁ ପାଇବା — "ସହରରେ ଅଛନ୍ତି ଅବଶ୍ୟ ପ୍ରାଦେଶିକ ଗଭର୍ଣ୍ଣର, ଅଛନ୍ତି

ପ୍ରଧାନମନ୍ତ୍ରୀ, ଉପମନ୍ତ୍ରୀର ଦଳ, ଅଛନ୍ତି ମଧ୍ୟ ସେକ୍ରେଟାରୀ, ଅଣ୍ଡର-ସେକ୍ରେଟାରୀ, ଡିରେକ୍ଟର ପ୍ରଭୃତି ବ୍ୟୁରୋକ୍ରାଟ ଦଳ, ଯେଉଁମାନଙ୍କ ସଂସାର, ଖାନାପିନା, ପାର୍ଟିଫିଷ୍ଟ୍, ପରବାନା, ଫର୍ମାସ, ଡ୍ରଇଂରୁମ୍ ଡାଇନିଂରୁମ୍ ଓ ଚୁଗୁଲି ଗୁଗଲ, ଫୁସୁରଫାସର ସଂସାର; ସେ ସଂସାରରେ ପ୍ରତିମୁହୂର୍ତ୍ତରେ ପଦପଦକ କଥାରେ, କଲମର ଗାରେଗାରେ ସହସ୍ର ସହସ୍ର ଲୋକଙ୍କର ଭାଗ୍ୟର ଉତ୍‌ଥାନ ପତନ ହେଉଛି । କିନ୍ତୁ ଯେଉଁମାନେ ଗାର ମାରୁଛନ୍ତି, ସେମାନେ ତାହା କରୁଛନ୍ତି ଯେପରି ସିଗାରେଟ୍‌ଟା ଫୁଙ୍କି ଫୋପାଡ଼ି ଦେଲା ପରି । ମାନବିକ ସଭ୍ୟତାର ପାଞ୍ଚ ହଜାର ବର୍ଷର ଇତିହାସ ଏମାନଙ୍କ ଆଗରେ ଥୁଆ ହୋଇଥିଲେ ମଧ୍ୟ ଶାସନ ଓ ସିଂହାସନର ଉତ୍‌ଥାନ ପଛପଟେ ପତନ, ଦିନପରେ ରାତି ପରି ପ୍ରାକୃତିକ ନିୟମରେ ଲାଗି ରହିଥିଲେ ମଧ୍ୟ ଆଜି ଯେଉଁ ବ୍ୟୁରୋକ୍ରାଟ ଦଳକ ଆସନରେ ବସିଛନ୍ତି ସେମାନେ ମନେ କରନ୍ତି ଯେପରି, ସେମାନେ ଶାଶ୍ୱତ, ଶାସନ କରିବାପାଇଁ ସେମାନଙ୍କର ଯେପରି ଜନ୍ମାନ୍ତରର ଦାବୀ ଅଛି । ଦେଶର ବାହ୍ୟନେତ୍ର ଏହି ଦଳ ଆଡ଼କୁ ବାଧ୍ୟରେ ଟେକି ହୋଇ ରହିଥିଲେ ମଧ୍ୟ ଯୁଗେ ଯୁଗେ ଜାତିର ଅନ୍ତର୍ଦୃଷ୍ଟି ଖୁଜିଁ ରହିଥାଏ ଦେଶର କେଉଁ ଅଜ୍ଞାତ ଅପାଙ୍‌କ୍ତେୟ କୋଣରେ କେଉଁ କବି ଶିଳ୍ପୀ ବା କେଉଁ ଜ୍ଞାନତପସ୍ୱୀନିଜର ଜୀବନ ସାଧନା ଭିତରେ ଜାତିର ମର୍ମବାଣୀ ପ୍ରକାଶ କରୁଛି ।" (ପୃ ୭୧)

ଗଣତନ୍ତ୍ର ଉପରେ ମାନସିଂହଙ୍କ ମତାମତ—ଗଣତନ୍ତ୍ର ଏ ମାଟିରେ ଦେଖୁ ଦେଖୁ ପଣତନ୍ତ୍ରରେ ପରିଣତ ହେଲା । କୁରୁପାଣ୍ଡବଙ୍କ ପଣରେ ସମଗ୍ର ଆର୍ଯ୍ୟାବର୍ତ୍ତ ଧ୍ୱଂସ ହେଲାପରି ପାର୍ଟିପାର୍ଟିର ଦଳାଦଳିରେ ଦେଶର ଘରେ ଘରେ ହୁଏତ ତାଟି ପଡ଼ିଯିବ ପାଟି ବନ୍ଦ ହେବ । ( ପୃ-୭୬)

ଦେଶର ମନ୍ତ୍ରୀମଣ୍ଡଳର ଅସ୍ଥିର ଭାବ ବିଷୟରେ ଔପନ୍ୟାସିକ ବିଦ୍ରୂପ କରିଛନ୍ତି—"ଶ୍ରୀକଣ୍ଠ ରାଜନୀତିର ଘାଣ୍ଟିକଟରେ ନ ଥାଏ । ବସ୍ତୁତଃ ସେ ହୁଏତ କହିପାରିବନି ଏ ପ୍ରଦେଶର ବର୍ତ୍ତମାନ ଘରୋଇ ମନ୍ତ୍ରୀ କିଏ ? ଏହା ଭିତରେ ଏତେ ମନ୍ତ୍ରୀ ଗଲେଣି ଆସିଲେଣି ଯେ ସେମାନଙ୍କ ନାମ ମଧ୍ୟ ଆୟତ୍ତ କରିବା କେବଳ ପ୍ରାଇମେଟ୍ ସେକ୍ରେଟାରୀ ଗ୍ରୁପଙ୍କ

ପକ୍ଷରେ ହିଁ ସମ୍ଭବ । ହୁଏତ ଇନସ୍‌ପେକ୍‌ଟରଙ୍କ ପରବାନା ମାନ ଅନ୍ୟ ପାଠ ଛାଡ଼ି ସେମାନେ ବର୍ତ୍ତମାନ ଘନ ଘନ ପରିବର୍ତ୍ତିତ ଏହି ମନ୍ତ୍ରୀ-ନାମାବଳୀ ମୁଖସ୍ଥ କରିବାରେ ହିଁ ବ୍ୟସ୍ତ” (ପୃ-୬୬) ଉପର୍ଯ୍ୟୁକ୍ତ ଉଦ୍ଧୃତା ବଳୀରୁ ମାନସିଂହଙ୍କର ରାଜନୀତି ଓ ରାଜନୀତିକ ନେତାମାନଙ୍କ ପ୍ରତି ବୀତସ୍ପୃହ ଭାବ ଜଣାପଡେ ।

**ଓଡ଼ିଶୀ ଚଳଣୀ** :—ଓଡ଼ିଆ କବି ଓ ଲେଖକମାନଙ୍କର ଓଡ଼ିଶାର ପରିବେଶକୁ ଦୃଷ୍ଟି ନ ଦେଇ, ଓଡ଼ିଆ ଖାଦ୍ୟ ନ ଖାଇ, ପଡ଼ଶା ପ୍ରଦେଶକୁ ଦୃଷ୍ଟି ଦେଉଥିବାରୁ ମାନସିଂହ 'ପରଧର୍ମ' ଓ 'କୁଟୁମ୍ବ' ପ୍ରବନ୍ଧରେ କ୍ଷୋଭ ପ୍ରକାଶ କରିଛନ୍ତି । ସେ ତାଙ୍କର କାବ୍ୟନାୟିକାମାନଙ୍କୁ ଓଡ଼ିଶୀବେଶରେ ମଣ୍ଡିତ କରିଛନ୍ତି । 'ଅନ୍ୱେଷଣ' ଉପନ୍ୟାସରେ ଚେଣ୍ଡି ନାୟିକାକୁ ନାୟକ ହେନା ଚମେଲି ଫୁଲ ନ ଦେଇ ଦେଇଛି ରଙ୍ଗଣୀ ଫୁଲ ଓ ପାଇଛି କଇଆ ଫୁଲ ।

ଉପନ୍ୟାସରେ ପ୍ରଦତ୍ତ ଅନ୍ୟ ବର୍ଣ୍ଣର ଧାରା ବର୍ତ୍ତମାନ ଦେଖିବାକୁ ହେବ । ଓଡ଼ିଆ ଖାଦ୍ୟ ବିଷୟରେ ତାଙ୍କର ଗୋଟିଏ ଚରିତ୍ର କହୁଛି— “କଟକର ଚିରାଭ୍ୟସ୍ତ ସେହି ପୁରା ତରକାରୀ ପରିବର୍ତ୍ତରେ ଚୂଡ଼ାଭଜା କନ୍ଦ, ଘିଅ, ନଡ଼ିଆ, ପାଚିଲକଦଳୀର ଚକଟା ପରମ ପରିତୋଷରେ ଖାଇ ପ୍ରଭୁପାଦ ଓ ଶ୍ରୀକଣ୍ଠ ଡୋଟାମାଳ ଓ ସମୁଦ୍ରକୂଳଆଡ଼େ ବୁଲାଗଲେ ।”

ପ୍ରଭୁପାଦର ମା'ଙ୍କର ରୋଷେଇ ବିଷୟରେ ଶ୍ରୀକଣ୍ଠ କହୁଛି— “ଆହା, ସେଇତ ମାଉସୀ ତମର କଦର । ବିନା ଗରମ ମସଲା, ବିନା ତେଲରେ ଖାଲି ବେଶର ମରିଚ ଦେଇ ଏତେ ସୁନ୍ଦର ତରକାରୀ ରାନ୍ଧି ପାରୁଛ, ଯ୍ୱାତ ତାଜବ୍ ବ୍ୟାପାର । କଟକରେ ସେହି ତେଲଆ, ମସଲଆ ବଙ୍ଗାଳଆ ଭଜାତରକାରୀସବୁ ଖାଇ ଖାଇ ଆମର ପେଟ, ଆମର ରୁଚି ଖରାପ ହୋଇଗଲଣି । ଏବେ ଭୋଜକଟାଏ ହେଲେ କଟକୀ ବାବୁ-ମାନଙ୍କର ମହଣେଖଣ୍ଡେ ମସଲା ଆଗ ଦରକାର । ଅଥଚ ସେହି ବାବୁଙ୍କ ଗୋସେଇଁ ବାପେ ଖାଲି ପଖାଳ ଭାତ ଆଉ ଶାଗ ଖାଇ ମଣିଷ ହୋଇଥିଲେ (ପୃ-୧୧୮)

ନନ୍ଦଗାଁରୁ ଫେରିଲାବେଳେ ଶ୍ରୀ କଣ୍ଠ ପ୍ରଭୁପାଦର ମା'ଙ୍କ ନିକଟରୁ କେତେକ ଓଡ଼ିଆ ଖାଦ୍ୟର ପ୍ରସ୍ତୁତପ୍ରଣାଳୀ ଟିପିଆଣିଥିଲା, ଯେଉଁଗୁଡ଼ିକ ସେ ଗୁରୁଦେବଙ୍କ ନିକଟରେ କହୁଛି—"କଙ୍କଡ଼ାର ମହୁର, ଗୁଣ୍ଡଲିଆ ପାଖୁଆର ଖଟା, ମାଛ ମଞ୍ଜିର ବରା, ନଡ଼ିଆ ଖିରି, ପୁରକାକରା ଓ ଛେନାପୁଳି ଇତ୍ୟାଦି। ଗୁରୁଦେବ କହିଲେ ଏ ତ ଖାଣ୍ଟି ଓଡ଼ିଆ ଖାଦ୍ୟ। ଯାହାହେଉ ଏ ପର୍ଯ୍ୟନ୍ତ ଗାଁମାନଙ୍କରେ ସେ କଳା ବଞ୍ଚି ରହିଛି। ଶ୍ରୀକଣ୍ଠ ତୁମେ ଏ ସବୁ ପ୍ରତି ନଜର ଦେଇ ପ୍ରକୃତରେ ଜାତିର କର୍ମ କରିଛ। କଲିକତା ଅନୁକରଣରେ ଦରିଦ୍ର ଓଡ଼ିଆ କ୍ରମେ ଦେହ ଓ ମନରେ ଧ୍ୱଂସ ହେବାକୁ ବସିଲାଣି। ମୁଁ ସେଦିନ ଗୋଟାଏ ଗାଁକୁ ଯାଇଥିଲି, ଯେଉଁଠିକି ଏପର୍ଯ୍ୟନ୍ତ ଗୋଟାଏ ମାତ୍ରି କ୍ୟୁଲେଟ ବାହାରିନି କିନ୍ତୁ ମତେ ଗୁଇନା କପରେ ଚା ଆଣି ଦେଲେ। ଶୁଣିଲି ଲୋକେ ପୂର୍ବର ଦୁଧ ଦହି ଚହ୍ଲା ଖିଆର ଅଭ୍ୟାସ ଛାଡ଼ି ଚା'ରେ ଏବେ ବୁଡ଼ି ରହିବାକୁ ଚାହୁଁଛନ୍ତି। ଗୁଡ, ଚୁଡ଼ା, ନଡ଼ିଆର ପୁଷ୍ଟିକର ସେ ନିର୍ଦ୍ଦୋଷ ଜଳଖିଆ କୁଆଡ଼େ ଗଲା! ବର୍ତ୍ତମାନ ଗାଁଏ ଗାଁଏ ମିଶାତେଲ ବା ଡାଲଡାରେ ଭଜା ପୁରି, ତରକାରି, ପଟୋଡ଼ିର ଦୋକାନ। ଦେଶଟାର ସ୍ୱାସ୍ଥ୍ୟ ସଙ୍ଗେ ସଙ୍ଗେ ରୁଚିର କି ବିକାରଗ୍ରସ୍ତ ଧ୍ୱଂସ ଦେଖ"!

(ପୃ-୧୩୭)

ଏ ସମସ୍ତ ଉଦ୍ଧୃତି ଓ ବିଚାର ବିମର୍ଷରୁ ସ୍ପଷ୍ଟହୁଏ ଯେ ମାନସିଂହଙ୍କ 'ଅନ୍ୱେଷଣ' ଉପନ୍ୟାସ କେବଳ ସାଧାରଣ ଏକ ଗଦ୍ୟକାବ୍ୟ ନୁହେଁ। ଏଥିରେ ତାଙ୍କର ଭାବପ୍ରବଣ ହୃଦୟର, ଜାତୀୟ ଚେତନାରେ ଉଦ୍‌ବୁଦ୍ଧ, ସ୍ୱଦେଶପ୍ରେମୀର ଜୀବନ ସଙ୍ଘର୍ଷରେ ବ୍ୟଥିତ କରୁଣା ଓ ସହାନୁଭୂତିପୂର୍ଣ୍ଣ ମାନବିକତାର ପରିପ୍ରକାଶ ଘଟିଛି। କବି ମାନସିଂହ ଶିକ୍ଷାବିତ୍ ମାନସିଂହ ଐତିହାସିକ ମାନସିଂହ, ପ୍ରାବନ୍ଧିକ ମାନସିଂହ, ନାଟ୍ୟକାର ମାନସିଂହଙ୍କୁ ଆମେ ଯେଉଁ ରୂପରେ ଉପଲବ୍ଧି କରୁ, ଔପନ୍ୟାସିକ ମାନସିଂହ ସେ ସବୁ ଦୃଷ୍ଟିରୁ ଭିନ୍ନ ନୁହନ୍ତି। ସେ ନିଜର ପ୍ରତିଷ୍ଠିତ ବିଚାରକୁ ଯଥାର୍ଥ ଓ ଯୁକ୍ତିପୂର୍ଣ୍ଣ ଭାବରେ ସର୍ବଦା ଏକ ରୂପରେ ଅଭିବ୍ୟକ୍ତ କରିଯାଇଅଛନ୍ତି। ଡଃ ମାନସିଂହଙ୍କୁ ଚିହ୍ନିବାପାଇଁ ଏ ମଧ୍ୟରୁ ଯେକୌଣସି ସୃଷ୍ଟି ପର୍ଯ୍ୟାପ୍ତ ମନେହୁଏ। ଏହି କ୍ଷୁଦ୍ରାବୟବ 'ଅନ୍ୱେଷଣ' ଉପନ୍ୟାସ ବହୁ ଦୃଷ୍ଟିରୁ ଏକ ସାର୍ଥକ ଓ ପ୍ରଭାବଶାଳୀ ଉପନ୍ୟାସ କହିଲେ ଅତ୍ୟୁକ୍ତି ହେବନାହିଁ।

ଅବଶ୍ୟ ଉପନ୍ୟାସର ଭାଷା ଓ ପ୍ରକାଶଭଙ୍ଗୀରେ ଫକୀରମୋହନଙ୍କ ସମୟର ପରବର୍ତ୍ତିତ ରୂପ ନେଇଥିଲେ ମଧ୍ୟ ମାନସିଂହ ସ୍ୱତନ୍ତ୍ର ଭାବରେ ଏହି ଉପନ୍ୟାସ ରଚନା କରିଅଛନ୍ତି । ମାନସିଂହଙ୍କର ଏହି ସ୍ୱାତନ୍ତ୍ର୍ୟ ତାଙ୍କର କାବ୍ୟ, ନାଟକ, ପ୍ରବନ୍ଧ ଓ ଓଡ଼ିଆ ସାହିତ୍ୟର ଇତିହାସରେ ସମାନ ଭାବରେ ପ୍ରକଟିତ ହୋଇଅଛି । ତେଣୁ ସେ କୌଣସି ସାହିତ୍ୟିକ ଗୋଷ୍ଠୀରେ ଆବଦ୍ଧ ନ ହୋଇ ନିଜର ସ୍ୱକୀୟତା ସବୁବେଳେ ଫୁଟାଇ ପାରିଛନ୍ତି । କବି, ନାଟ୍ୟକାର, ପ୍ରାବନ୍ଧିକ, ଔପନ୍ୟାସିକ, ମାନସିଂହଙ୍କ ସୃଷ୍ଟି ବିଭିନ୍ନତା ମଧ୍ୟରେ କବି ମାନସିଂହ ବହୁ ଭାବରେ ପାଠକମାନଙ୍କର ଦୃଷ୍ଟି ଆକର୍ଷଣ କରନ୍ତି । ଏହି ଉପନ୍ୟାସର ବିଶ୍ଳେଷଣରୁ ତାଙ୍କର ଚିନ୍ତା ଚେତନା ବା ବ୍ୟକ୍ତିମାନସକୁ ଯେପରି ଭାବରେ ଉଦ୍‌ଘାଟନ କରାଯାଇଅଛି ସେପରି ଭାବରେ କବି ହୃଦୟର ବିଶ୍ଳେଷଣ ମଧ୍ୟ ଏହି ଉପନ୍ୟାସ ମାଧ୍ୟମରେ କରାଯାଇପାରେ ।



# ସହାୟକ ଗ୍ରନ୍ଥସୂଚୀ


1. Citizen Education (1942) Dr. M. Mansingh
2. Dreams in Education By Dr M. Mansingh.
Orissa Book Store—Cuttack-2
3. Fakirmohan Senapati (1976) by Dr. M. Mansingh.
Sahitya Akademi, New Delhi.
4. History of Oriya Literature (1962) by Dr. M Mansingh.
Sahitya Akademi, New Delhi.
5. History of Sanskrit Poetics by S. K. De.
6. Kalidas and Shakespeare(1969) by Dr. M. Mansingh.
Motilal Banarsidass, Delhi, Varanasi, Patna.
7. Ripples of the Mahanadi (1971) by Dr M. Mansingh
The Minerva Associate. Calcutta—29
8. The Saga of the Land of Jagannath by Dr. M. Mansingh J. Mahapatra & Co-Cuttack-2
9. The Theory of Literature by Rene'Welleck and Austin Warren.
10. The Orissa Historical Research Journal.
Vol. I No. 3 (1952)

୧୧ । ଅଚ୍ୟୁତାନନ୍ଦ ଓ ପଞ୍ଚସଖା ଧର୍ମ (୧୯୫୧) ଶ୍ରୀ ଚିତ୍ତରଞ୍ଜନ ଦାସ
ବିଶ୍ୱଭାରତୀ ଓଡ଼ିଆ ଗବେଷଣା ବିଭାଗ, ଶାନ୍ତିନିକେତନ

୧୨ । ଅଳଙ୍କାର ଶାସ୍ତ୍ର ପରିଚିତି—ଡଃ ଭବଗ୍ରାହୀ ମିଶ୍ର ଓ ଅଧ୍ୟାପିକା ଶାନ୍ତିଲତା ମିଶ୍ର
ଫ୍ରେଣ୍ଡସ୍ ପବ୍ଲିଶର୍ସ କଟକ-୨

୧୩ । ଅଶ୍ଳୀଳତା ବିପକ୍ଷରେ (୧୯୬୬) ଶ୍ରୀ କୃଷ୍ଣଚରଣ ବେହେରା
ଜଗନ୍ନାଥ ରଥ, କଟକ-୨

୧୪ । ଆଧୁନିକ ଓଡ଼ିଆ କାବ୍ୟଧାରା (ଆଦ୍ୟଯୁଗ) ୧୯୬୪
ଡଃ. ନରେନ୍ଦ୍ରନାଥ ମିଶ୍ର

୧୫ । ଆଧୁନିକ ଓଡ଼ିଆ କାବ୍ୟଧାରା (ନବଜାଗରଣ ଯୁଗ)
ଡଃ ନରେନ୍ଦ୍ରନାଥ ମିଶ୍ର, ବିଶ୍ୱଭାରତୀ ଗବେଷଣା ଗ୍ରନ୍ଥମାଳା ।
ଶାନ୍ତିନିକେତନ

୧୬ । ଆଧୁନିକ ଓଡ଼ିଆ ସାହିତ୍ୟ (୧୯୭୧) ଡଃ ଜାନକୀବଲ୍ଲଭ ମହାନ୍ତି
ଗ୍ରନ୍ଥମନ୍ଦିର—କଟକ-୨

୧୭ । ଆଧୁନିକ ଓଡ଼ିଆ ସାହିତ୍ୟର ଭୂମି ଓ ଭୂମିକା (୧୯୬୨)
ସମ୍ପାଦନା—ଡଃ କୁଞ୍ଜବିହାରୀ ଦାଶ, ଓଡ଼ିଶା ସାହିତ୍ୟ ଏକାଡେମୀ

୧୮ । ଆଧୁନିକ ଓଡ଼ିଆ ସାହିତ୍ୟର ଇତିହାସ (୧୮୦୩-୧୯୨୦)-(୧୯୭୪)
ଡଃ. ନଟବର ସାମନ୍ତରାୟ

୧୯ । ଆଧୁନିକ ଓଡ଼ିଆ ସାହିତ୍ୟର ଦିଗ୍‌ଦର୍ଶନ— ଡଃ ନଟବର ସାମନ୍ତରାୟ

୨୦ । ଆଧୁନିକତାର କ, ଖ, ଓ ଅନ୍ୟାନ୍ୟ ଆଲୋଚନା (୧୯୭୩)
ଅଧ୍ୟାପକ ଚନ୍ଦ୍ରମଣି ବେହେରା, ଫ୍ରେଣ୍ଡସ୍ ପବ୍ଲିଶର୍ସ, କଟକ-୨

୨୧ । ଆଧୁନିକ ପ୍ରେମ କବିତା—ସମ୍ପାଦନା—କୈଳାସଚନ୍ଦ୍ର ପଣ୍ଡା

୨୨ । ଆଧୁନିକ ବାଂଲା କାବ୍ୟ ପରିଚୟ (ବଙ୍ଗଳା) (୧୯୭୪)
ଡଃ ଦୀପ୍ତି ତ୍ରିପାଠୀ ଦେ'ଜ ପବ୍ଲିକେଶନ, କଲିକତା

୨୩ । ଆଧୁନିକ ଭାରତୀୟ ସାହିତ୍ୟ— ଡଃ ଜାନକୀବଲ୍ଲଭ ମହାନ୍ତି (ଭରଦ୍ୱାଜ)
ଫ୍ରେଣ୍ଡସ୍ ପବ୍ଲିଶର୍ସ— କଟକ-୨

୨୪ । ଆରିଷ୍ଟୋଟଲଙ୍କ କାବ୍ୟତତ୍ତ୍ୱ—ଅନୁବାଦ ଶ୍ରୀ ଅନନ୍ତ ଚରଣ ଶୁକ୍ଳ
ଫ୍ରେଣ୍ଡସ୍ ପବ୍ଲିଶର୍ସ— କଟକ-୨

୨୫ । ଆତ୍ମଜୀବନୀ ଚର୍ଯ୍ୟାଚର୍ଯ୍ୟ- ଡଃ କରୁଣାକର କର
ଓଡ଼ିଶା ସାହିତ୍ୟ ଏକାଡ଼େମୀ, ଭୁବନେଶ୍ୱର

୨୬ । ଓଡ଼ିଆ ଗୀତିକାବ୍ୟ (୧୯୭୬) ଡଃ ଜାନକୀବଲ୍ଲଭ ମହାନ୍ତି (ଭରଦ୍ୱାଜ)
ଗ୍ରନ୍ଥମନ୍ଦିର—କଟକ-୨

୨୭ । ଓଡ଼ିଆ ପ୍ରେମ କବିତା (୧୯୬୦) ସମ୍ପାଦନା—ଅଧ୍ୟାପକ ଜାନକୀବଲ୍ଲଭ ମହାନ୍ତି—ନାରାୟଣ ପାଠାଗାର ନିମାପଡ଼ା

୨୮ । ଓଡ଼ିଆ ଜ୍ଞାନକୋଷ (ନମୁନାଖଣ୍ଡ) (୧୯୫୫) ସମ୍ପାଦନା
ଡଃ ମାୟାଧର ମାନସିଂହ—ନିଉଷ୍ଟୁଡେଣ୍ଟ ଷ୍ଟୋର, କଟକ

୨୯ । ଓଡ଼ିଆ ଲୋକଗୀତ ଓ କାହାଣୀ (୧୯୫୮)
ଡଃ କୁଞ୍ଜବିହାରୀ ଦାଶ— ବିଶ୍ୱଭାରତୀ ଓଡ଼ିଆ ଗବେଷଣା ବିଭାଗ,
ଶାନ୍ତିନିକେତନ

୩୦ । ଓଡ଼ିଆ ସମାଜ ଓ ସାହିତ୍ୟ (୧୯୭୩, ଡଃ ମାୟାଧର ମାନସିଂହ
ଗ୍ରନ୍ଥମନ୍ଦିର—କଟକ-୨

୩୧ । ଓଡ଼ିଆ ସାହିତ୍ୟ ଓ ସମାଲୋଚନା (୧୯୭୨) ଅଧ୍ୟାପକ ସଚ୍ଚିଦାନନ୍ଦ ମିଶ୍ର
ଜେ. ମହାପାତ୍ର ଏଣ୍ଡକୋ—କଟକ-୨

୩୨ । ଓଡ଼ିଆ ସାହିତ୍ୟର ଇତିହାସ (୧୯୬୭) ଡଃ ମାୟାଧର ମାନସିଂହ
ଗ୍ରନ୍ଥମନ୍ଦିର କଟକ-୨

୩୩ । ଓଡ଼ିଆ ସାହିତ୍ୟର କ୍ରମ ପରିଣାମ—ପଣ୍ଡିତ ନୀଳକଣ୍ଠ ଦାସ

୩୪ । ଓଡ଼ିଆ ସାହିତ୍ୟର ଧର୍ଷଣ (୧୯୬୯) ରବୀନ୍ଦ୍ରନାଥ ସିଂହ
ରାଜାବଗିଚା—କଟକ-୧

୩୫ । ଓଡ଼ିଆ ସାହିତ୍ୟର ମଧ୍ୟପର୍ବ (୧୯୭୩) ଶ୍ରୀ ସୁରେନ୍ଦ୍ର ମହାନ୍ତି
କଟକ ଷ୍ଟୁଡେଣ୍ଟସ ଷ୍ଟୋର—କଟକ-୨
୩୬ । ଓମର ଗୀତିକା (୧୯୬୧) ଅନୁବାଦ ଶ୍ରୀ ଜାନକୀବଲ୍ଲଭ ମହାନ୍ତି
ରାଜହଂସ ସାହିତ୍ୟ ମନ୍ଦିର
୩୭ । କବି ଓ କବିତା (୧୯୭୩)·ଡଃ ମାୟାଧର ମାନସିଂହ
ଗ୍ରନ୍ଥମନ୍ଦିର—କଟକ-୨
୩୮ । କବି ଲିପି (୧୯୫୭) ଅଧ୍ୟାପକ ଦେବୀପ୍ରସନ୍ନ ପଟ୍ଟନାୟକ
ବିଶ୍ୱଭାରତୀ ଓଡ଼ିଆ ଗବେଷଣା ଗ୍ରନ୍ଥମାଳା, ଶାନ୍ତିନିକେତନ
୩୯ । କାବ୍ୟ ଓ କଳାକାର (୧୯୬୬) ଅଧ୍ୟାପକ ଚିନ୍ତାମଣି ବେହେରା
ଆଲୋକ ସାହିତ୍ୟ ପ୍ରତିଷ୍ଠାନ—କଟକ ।
୪୦ । କାବ୍ୟ ସମ୍ବାଦ (୧୯୭୩) ଅଧ୍ୟାପକ ଦାଶରଥି ଦାସ
ଫ୍ରେଣ୍ଡସ୍ ପବ୍ଲିଶର୍ସ, କଟକ-୨
୪୧ । ଗଙ୍ଗାଧର ସାହିତ୍ୟ ସମୀକ୍ଷା (୧୯୬୦) ନଟବର ସାମନ୍ତରାୟ
ନିଉ ଷ୍ଟୁଡେଣ୍ଟସ ଷ୍ଟୋର୍-କଟକ
୪୨ । ଗୀତା ମାହାତ୍ମ୍ୟ (୧୯୬୯) ଡଃ ମାୟାଧର ମାନସିଂହ
ଜେ. ମହାପାତ୍ର ଏଣ୍ଡ-କୋ-କଟକ
୪୩ । ଗୁରୁ ନାନକ ବାଣୀ (୧୯୭୩) ଅନୁବାଦ—ଡଃ ମାୟାଧର ମାନସିଂହ
ନ୍ୟାସନାଲ ବୁକ୍ ଟ୍ରଷ୍ଟ-ଇଣ୍ଡିଆ ଦିଲ୍ଲୀ
୪୪ । ଗୋପାଳକୃଷ୍ଣ ପଦ୍ୟାବଳୀ (୧୯୫୯) ସମ୍ପାଦନା-ଶ୍ରୀ କାଳିଚରଣ ପଟ୍ଟନାୟକ
ଓଡ଼ିଶା ଜଗନ୍ନାଥ କମ୍ପାନୀ-କଟକ
୪୫ । ଗ୍ରାମୋନ୍ନତିର ରୋମାଞ୍ଚକର କାହାଣୀ (୧୯୫୬) ·
ଡଃ. ମାୟାଧର ମାନସିଂହ, ନିଉଷ୍ଟୁଡେଣ୍ଟଷ୍ଟୋର, ବ୍ରହ୍ମପୁର
୪୬ । ଚର୍ଯ୍ୟାଗୀତିକା – ଡଃ. ଖଗେଶ୍ୱର ମହାପାତ୍ର
ଫ୍ରେଣ୍ଡସ୍ ପବ୍ଲିଶର୍ସ୍ -କଟକ
୪୭ । ଜୀବନ ପଥ (୧୯୪୯) ଡଃ. ମାୟାଧର ମାନସିଂହ
ଷ୍ଟୁଡେଣ୍ଟସ ଷ୍ଟୋର-କଟକ
୪୮ । ଜୀବନ ଚିତା (୧୯୪୭) ଡଃ ମାୟାଧର ମାନସିଂହ
ଷ୍ଟୁଡେଣ୍ଟସ୍ ଷ୍ଟୋର—କଟକ-୨
୪୯ । ଜୀବନୀ ଓ ପ୍ରବନ୍ଧ (୧୯୫୮) ଡକ୍ଟର ମାୟାଧର ମାନସିଂହ
ନିଉ ଷ୍ଟୁଡେଣ୍ଟସ୍ ଷ୍ଟୋର୍-କଟକ-୨
୫୦ । ଦୁର୍ଭିକ୍ଷ (୧୯୫୫) ଡକ୍ଟର ମାୟାଧର ମାନସିଂହ
ନିଉ ଷ୍ଟୁଡେଣ୍ଟସ୍ ଷ୍ଟୋର୍-କଟକ-୨

୫୧ । ଧ୍ୱନ୍ୟାଲୋକ—ଆନନ୍ଦ ବର୍ଦ୍ଧନ
ପ୍ରକାଶକ—ଓଡ଼ିଶା ସାହିତ୍ୟ ଏକାଡ଼େମୀ-ଭୁବନେଶ୍ୱର
୫୨ । ନାଟ୍ୟଶାସ୍ତ୍ରମ୍—ଭରତମୁନି
ପ୍ରକାଶକ—ଓଡ଼ିଶା ସାହିତ୍ୟ ଏକାଡ଼େମୀ-ଭୁବନେଶ୍ୱର
୫୩ । ନୂତନ ସମୀକ୍ଷା (୧୯୬୬) ଅଧ୍ୟାପକ ଚାର୍ଣ୍ଣୀ ଚରଣ ଦାସ
ପ୍ରକାଶକ-ଜଗନ୍ନାଥ ରଥ-କଟକ
୫୪ । ପଶ୍ଚିମ ପଥିକ (୧୯୬୪) ଡଃ. ମାୟାଧର ମାନସିଂହ
ନଉଷ୍ଟୁଡ଼େଣ୍ଟସ ଷ୍ଟୋର—କଟକ-୨
୫୫ । ପୁଷ୍ପିତା (ତୃତୀୟ ମୁଦ୍ରଣ) ଡଃ. ମାୟାଧର ମାନସିଂହ
ନଉ ଷ୍ଟୁଡ଼େଣ୍ଟସ ଷ୍ଟୋର—ବ୍ରହ୍ମପୁର
୫୬ । ପୂଜାରଣୀ (୧୯୬୦) ଡଃ. ମାୟାଧର ମାନସିଂହ
ନଉ ଷ୍ଟୁଡ଼େଣ୍ଟସ ଷ୍ଟୋର—ବ୍ରହ୍ମପୁର
୫୭ । ପ୍ରାଚୀନ ସାହିତ୍ୟ (ବଙ୍ଗଳା) ରବୀନ୍ଦ୍ରନାଥ ଠାକୁର
ବିଶ୍ୱଭାରତୀ ଗ୍ରନ୍ଥନ ବିଭାଗ-ଶାନ୍ତିନିକେତନ
୫୮ । ଫକୀର ମୋହନ ସମୀକ୍ଷା (୧୯୫୫) ଶ୍ରୀ ସୁରେନ୍ଦ୍ର ମହାନ୍ତି
ନଉ ଷ୍ଟୁଡ଼େଣ୍ଟସ ଷ୍ଟୋର—କଟକ
୫୯ । ବିଦଗ୍ଧ ପାଠକ—ଅଧ୍ୟାପକ ଚନ୍ଦ୍ରାମଣି ବେହେରା
ପ୍ରକାଶକ-ଜଗନ୍ନାଥ ରଥ, ବିନୋଦବିହାରୀ କଟକ-୨
୬୦ । ବିଦ୍ୟାପତି ପଦ୍ୟାବଳୀ (୧୯୬୫) ଅନୁବାଦ—ପଣ୍ଡିତ ଲକ୍ଷ୍ମୀନାରାୟଣ ମିଶ୍ର
ଓଡ଼ିଶା ସାହିତ୍ୟ ଏକାଡ଼େମୀ-ଭୁବନେଶ୍ୱର
୬୧ । ମହତ୍ତବାଣୀ— ସମ୍ପାଦନା ଡଃ. ମାୟାଧର ମାନସିଂହ
ଜେ. ମହାପାତ୍ର ଏଣ୍ଡ-କୋ, କଟକ-୨
୬୨ । ମାଟିର ମହାକବି ସାରଳା ଦାସ (୧୯୭୧) ଡଃ. ମାୟାଧର ମାନସିଂହ
ଦାସ ବ୍ରଦର୍ସ-କଟକ
୬୩ । ମାନସିଂହ ଗ୍ରନ୍ଥାବଳୀ ୧ମ ଖଣ୍ଡ (୧୯୬୦) ୨ୟ ଖଣ୍ଡ (୧୯୬୪)
ଗ୍ରନ୍ଥମନ୍ଦିର କଟକ-୨
୬୪ । ମାନସିଂହ ଚୟନ ୧ମ ଭାଗ-୨ୟ ଭାଗ (୧୯୬୩) -ମାନସିଂହ
ନଉ ଷ୍ଟୁଡ଼େଣ୍ଟସ ଷ୍ଟୋର-ବ୍ରହ୍ମପୁର
୬୫ । ମାନସିଂହ ପରିକ୍ରମା (୧୯୭୯) ସମ୍ପାଦକ-ଡକ୍ଟର ନିତ୍ୟାନନ୍ଦ ଶତପଥୀ
ଓଡ଼ିଶା ପୁଜ୍ୟପୂଜା ସଂସଦ, କଟକ
୬୬ । ମାନସିଂହ ସ୍ମରଣିକା (୧୯୭୩) ସମ୍ପାଦକ ଶ୍ରୀ ରମେଶଚନ୍ଦ୍ର ଧଳ
ଏକାମ୍ର ଥିଏଟର୍ସ ଭୁବନେଶ୍ୱର

୬୭ । ମାନସିଂହ ସୃଷ୍ଟି ଓ ସମୀକ୍ଷା (୧୯୬୮)
ସମ୍ପାଦନା—ଅଧ୍ୟାପକ ରାଧାଶ୍ୟାମ ବେହୁରା

୬୮ । ମେହେର ସାହିତ୍ୟ—ଶ୍ରୀ କେଶବ ମେହେର

୬୯ । ମୋ କାହାଣୀ (୧୯୭୬) ଲୋକରତ୍ନ ଡଃ. କୁଞ୍ଜବିହାରୀ ଦାଶ

୭୦ । ଶଶି ସେଣା—ପ୍ରତାପରାୟ—ସମ୍ପାଦନା-ଡଃ. ଆର୍ତ୍ତବଲ୍ଲଭ ମହାନ୍ତି
ପ୍ରାଚୀଗ୍ରନ୍ଥମାଳା-୨୨ ଉତ୍କଳ ବିଶ୍ୱବିଦ୍ୟାଳୟ

୭୧ । ଶିକ୍ଷାବିତ୍‌ର ଗାଥା (୧୯୬୫) ଡଃ. ମାୟାଧର ମାନସିଂହ

୭୨ । ଶିକ୍ଷା, ଶିକ୍ଷକ ଓ ଶିକ୍ଷାୟତନ (୧୯୫୭)ଡଃ. ମାୟାଧର ମାନସିଂହ
ନଉ ଷ୍ଟୁଡେଣ୍ଟସ୍ ଷ୍ଟୋର, କଟକ

୭୩ । ସବୁଜ ଅକ୍ଷର (୧୯୬୬) ଶ୍ରୀ ଅନ୍ନଦା ଶଙ୍କର ରାୟ—ଦାସବ୍ରଦର୍ସ

୭୪ । ସବୁଜ କବିତା (୧୯୩୧) ସମ୍ପାଦନା-ଶ୍ରୀ କାଳିନ୍ଦୀ ଚରଣ ପାଣିଗ୍ରାହୀ
ସବୁଜ ସାହିତ୍ୟ ସମିତି, କଟକ

୭୫ । ସବୁଜରୁ ସାଂପ୍ରତିକ – ଡଃ. ନିତ୍ୟାନନ୍ଦ ଶତପଥୀ—ଗ୍ରନ୍ଥମନ୍ଦିର-କଟକ

୭୬ । ସମସାମୟିକ ଓଡ଼ିଆ ପ୍ରେମ କବିତା—ସମ୍ପାଦନା-ରବୀନ୍ଦ୍ରନାଥ ସିଂହ ଓ ବ୍ରଜନାଥ ରଥ—ଦାସବ୍ରଦର୍ସ-କଟକ

୭୭ । ସମାଲୋଚନା ଦୃଷ୍ଟିରୁ—ଅଧ୍ୟାପକ ନୀଳାଦ୍ରି ଭୂଷଣ ହରିଚନ୍ଦନ
ଜେ. ମହାପାତ୍ର ଏଣ୍ଡ କୋ-କଟକ

୭୮ । ସରସ୍ୱତୀ ଫକୀର ମୋହନ (୧୯୭୨) ଡଃ. ମାୟାଧର ମାନସିଂହ

୭୯ । ସାର୍ବଜନୀନ ଗୀତା-୧ମ, ୨ୟ, ୩ୟ, ଡଃ. ମାୟାଧର ମାନସିଂହ

୮୦ । ସାମ୍ପ୍ରତିକ ସାହିତ୍ୟ (୨୯୬୮) ଅଧ୍ୟାପକ ବିଭୂତି ପଟ୍ଟନାୟକ

୮୧ । ସାରଳା ମହାଭାରତରେ ସାମାଜିକ ଜୀବନ—ଡଃ. ଦୀନବନ୍ଧୁ ମିଶ୍ର

୮୨ । ସାରସ୍ୱତ ସମୀକ୍ଷା -- ଶ୍ରୀ ବୀରକିଶୋର ଦାସ

୮୩ । ସାହିତ୍ୟ (ବଙ୍ଗଳା)-ରବୀନ୍ଦ୍ରନାଥ ଠାକୁର
ବିଶ୍ୱଭାରତୀ ଗ୍ରନ୍ଥନ ବିଭାଗ, ଶାନ୍ତିନିକେତନ

୮୪ । ସାହିତ୍ୟ କଥା (୧୯୬୭) ଡଃ, ଶ୍ରୀନିବାସ ମିଶ୍ର
କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର-କଟକ

୮୫ । ସାହିତ୍ୟ ଦର୍ପଣ—ବିଶ୍ୱନାଥ କବିରାଜ, ଓଡ଼ିଆ ସାହିତ୍ୟ ଏକାଡେମୀ

୮୬ । ସାହିତ୍ୟ ପାଠେର ଭୂମିକା (ବଙ୍ଗଳା) ସୁବୋଧଚନ୍ଦ୍ର ସେନ୍‌ଗୁପ୍ତ
ବିଶ୍ୱବିଦ୍ୟା ସଂଗ୍ରହ, ବିଶ୍ୱଭାରତୀ ଗ୍ରନ୍ଥନବିଭାଗ

୮୭ । ସାହିତ୍ୟ ମୀମାଂସା (ବଙ୍ଗଳା) ବିଷ୍ଣୁପଦ ଭଟ୍ଟାଚାର୍ଯ୍ୟ
ବିଶ୍ୱବିଦ୍ୟା ସଂଗ୍ରହ—ବିଶ୍ୱଭାରତୀ ଗ୍ରନ୍ଥନବିଭାଗ

୮୮ । ସାହିତ୍ୟେର ସ୍ୱରୂପ (ବଙ୍ଗଳା) ରବୀନ୍ଦ୍ରନାଥ ଠାକୁର
ବିଶ୍ୱଭାରତୀ ଗ୍ରନ୍ଥନବିଭାଗ-ଶାନ୍ତିନିକେତନ

## ସହାୟକ ପତ୍ରପତ୍ରିକା

୮୯ । ଇଙ୍ଗ-ଭାରତୀୟ ସାହିତ୍ୟ—ଡଃ ମାୟାଧର ମାନସିଂହ
ନବରବି ପୂଜାସଂଖ୍ୟା, ଅକ୍ଟୋବର ୧୯୭୨
୯୦ ।ଓଡ଼ିଆମାନେ ପଛୁଆ ଓ ଦରିଦ୍ର କାହିଁକି ? ଡଃ ମାୟାଧର ମାନସିଂହ
ନବରବି ଡିସେମ୍ବର ୧୯୭୨
୯୧ । କବି ମାନସିଂହଙ୍କ ପନ୍ଦର ବର୍ଷ ରଚନାର କାଳନିରୂପଣ
ନଟବର ସାମନ୍ତରାୟ ଡଗର ୩୧ଶ ବର୍ଷ ୭ମ ସଂଖ୍ୟା୧୯୬୮
୯୨ । କବି ମାୟାଧର ମାନସିଂହ : ଏକ ସ୍ୱପ୍ନପ୍ରୟାଣ
ଶ୍ରୀ ସଚ୍ଚିଦାନନ୍ଦ ରାଉତରାୟ ଝଙ୍କାର ୨୫ ଶ ବର୍ଷ ୧୨ଶ ସଂଖ୍ୟା
୯୩। ଜୀବନର ଚରମ ପ୍ରଶଂସନୀୟତା କେଉଁଠି ? ଡଃ. ମାୟାଧର ମାନସିଂହ
ନବରବି ୩ୟ ବର୍ଷ ୫ମ ସଂଖ୍ୟା
୯୪ । ହେମାକାବ୍ୟ : ଏକ ଅଧ୍ୟୟନ—ଅଧ୍ୟାପକ ନଶାମଣି ମିଶ୍ର
ଝଙ୍କାର ୨୫ଶ ବର୍ଷ ୧୨ଶ ସଂଖ୍ୟା
୯୫ । ଧୂପଦାନ –ଅଧ୍ୟାପକ ଚନ୍ଦ୍ରମଣି ବେହେରା
ଝଙ୍କାର ୨୫ଶ ବର୍ଷ ୨୨ଶ ସଂଖ୍ୟା
୯୬ । ପାଇକ ଖେଦା ଏକ ଜବାବ—ଡଃ. କୁଞ୍ଜବିହାରୀ ଦାଶ
ନବରବି ୩ୟ ବର୍ଷ ୧୨ଶ ସଂଖ୍ୟା ଜୁନ୍ ୧୯୭୩
୯୭ । ବ୍ୟକ୍ତ ବଚନା । (୧) ଲେ-ବଭୂଦତ୍ତ ମିଶ୍ର
ବାଇଶ ପାହାଚ ପ୍ରଥମ ବର୍ଷ ୪ର୍ଥ-୫ମ ସଂଖ୍ୟା ଜାନୁୟାରୀ ୧୯୭୭
୯୮ ଭାରତରେ କର୍ତ୍ତବ୍ୟବୋଧ-ଡଃ. ମାୟାଧର ମାନସିଂହ
ନବରବି ୨ୟ ବର୍ଷ ୧୧ଶ ସଂଖ୍ୟା
୯୯ । ମାନସିଂହ ଓ ଓଡ଼ିଆ ସାହିତ୍ୟ—ଅଧ୍ୟାପକ ଗୋଲକ ବିହାରୀ ଧଳ
ନବରବି ୪ର୍ଥ ବର୍ଷ ୫ମ ସଂଖ୍ୟା ୧୯୭୧
୧୦୦ । ମାନସିଂହଙ୍କ କବିତା 'ଧୂପ'—ଅଧ୍ୟାପକ ତାରିଣୀ ଚରଣ ଦାସ
ଡଗର ୨୬ଶ ବର୍ଷ ୧ମ ସଂଖ୍ୟା ଜୁଲାଇ ୧୯୬୨

—୦—

**ସମାପ୍ତ**

---

ମୁଦ୍ରାକର—ଶ୍ରୀ ରାମଚନ୍ଦ୍ର ମିଶ୍ର ଡଗର ପ୍ରେସ୍ ପିଠାପୁର କଟକ-୧